# ଚଉତିଶା ବିଚିତ୍ରା



ସଂପାଦକ :
ସଚ୍ଚିଦାନନ୍ଦ ମିଶ୍ର

# ଚଉତିଶା ବିଚିତ୍ରା

*

ସଂପାଦନା

**ସଚ୍ଚିଦାନନ୍ଦ ମିଶ୍ର**
ଆଇନ ବିଭାଗ
ଭୁବନେଶ୍ୱର

ପ୍ରକାଶକ
**ନିତ୍ୟାନନ୍ଦ ଦାଶ**
ପୁସ୍ତକ ଭଣ୍ଡାର
ବ୍ରହ୍ମପୁର—୧, ଗଞ୍ଜାମ

ମୁଦ୍ରଣ
**ନିଉ ଷ୍ଟୋର୍ସ ପ୍ରେସ୍**
ବ୍ରହ୍ମପୁର—୨, ଗଞ୍ଜାମ

*

ପ୍ରଥମ ମୁଦ୍ରଣ
୧୯୭୧

**Chautisa Bichitra**

*Compiled & Edited by*

**Satchidananda Misra**

ମୂଲ୍ୟ—ପାଞ୍ଚ ଟଙ୍କା ପଚିଶ ପଇସା ମାତ୍ର
ବୋର୍ଡ ବନ୍ଧେଇ ଛ ଟଙ୍କା ପଚିଶ ପଇସା

# ସୂଚୀ





# ମୁଖବନ୍ଧ

ଭାରତୀୟ ବିଚାରଧାରାରେ କାଳର ଧ୍ୱଂସକାରୀ ପ୍ରଭାବ ଉପରେ ଯଥେଷ୍ଟ ଗୁରୁତ୍ୱ ଦିଆଯାଇଛି । ଅଥଚ କାଳ କୃତାନ୍ତ ଭାବରେ ଯେତିକି ଧ୍ୱଂସ କରେ ତାହାଠାରୁ କମ୍ ସୃଷ୍ଟି କରେ ନାହିଁ । କାଳର ବଶ ହୋଇ ସୃଷ୍ଟି, ସ୍ଥିତି, ଲୟ ରୂପ ପରିବର୍ତ୍ତନ ମଧ୍ୟଦେଇ ସତତ ଗତି କରେ ବୋଲି ଏହି ବିଶ୍ୱର ଅନ୍ୟନାମ ଜଗତ୍ । ଜଗତର ମୂର୍ତ୍ତ ଅମୂର୍ତ୍ତ ସବୁ କିଛି ପରିବର୍ତ୍ତନ ସାପେକ୍ଷ । କାଳର ଆନୁପୂର୍ବିକତା ବିଚାରରୁ ଏହି ପରିବର୍ତ୍ତନ ପରିପାଟୀକୁ କୁହାଯାଏ ବିବର୍ତ୍ତନ । ମୂର୍ତ୍ତ ଜଗତ୍‌ରେ ଯାହା ବିବର୍ତ୍ତନ ତାହାହିଁ ଅମୂର୍ତ୍ତ ଭାବ ଜଗତରେ ବିଶେଷ କରି ଆଜିର ବ୍ୟବହାର ଆଉ ଚଳଣି କ୍ଷେତ୍ରରେ ପରମ୍ପରା ନାମରେ କଥିତ ହୁଏ । ସବୁ ଭାଷା, ସବୁ ସାହିତ୍ୟ, ସବୁ କଳା, ବ୍ୟାପକ ଭାବରେ କହିବାକୁ ଗଲେ ସବୁ ପ୍ରକାର ଅଭିବ୍ୟକ୍ତି ନିର୍ଦ୍ଦିଷ୍ଟ ପରମ୍ପରା ଉପରେ ଆଧାରିତ ହେବା କଥା । ଶବ୍ଦ ସହ ଅର୍ଥର ସମ୍ବନ୍ଧ, କଥା ସହ ଭାବର ସମ୍ବନ୍ଧ କି କବିତା ସହ କବିଙ୍କର ସମ୍ବନ୍ଧ ପରମ୍ପରା କ୍ରମେ ସ୍ଥାପିତ ହୁଏ । ଦେବମୂର୍ତ୍ତିର ଆୟୁଧ କି ଅଭିନୟର ମୁଦ୍ରା ପଛରେ ମଧ୍ୟ ସ୍ୱତନ୍ତ୍ର ସ୍ୱତନ୍ତ୍ର ପରମ୍ପରା ରହିଥାଏ । ପରମ୍ପରାକୁ ବିଚାରକୁ ନ ନେଲେ ଏସବୁ ଚଳଣିର ମୂଲ୍ୟବୋଧ ସହଜ ନୁହେଁ । ଏହି ଦୃଷ୍ଟିରୁ ବର୍ତ୍ତମାନରେ ଚିହ୍ନିବା ଲାଗି ଅଷ୍ଟଚଟା ଏକ ପ୍ରାସଙ୍ଗିକ ଆଗ୍ରହ । ତେଣୁ ଆଧୁନିକ ଓଡ଼ିଆ କବିତାକୁ ବୁଝିବା ଲାଗି ତାହାର ପରମ୍ପରା ସହ ପରିଚିତ ହେବା ଆବଶ୍ୟକ ହୁଏ । ଚଉତିଶା ଓଡ଼ିଆ କବିତା ରଚନା କ୍ଷେତ୍ରରେ ଏକ ବିଶିଷ୍ଟ ପରମ୍ପରା । ପ୍ରାଚୀନ ଓଡ଼ିଆ ସାହିତ୍ୟ ପ୍ରତି ପରାଙ୍ମୁଖ ପାଠକମାନେ ଏହି କାରଣରୁ ଏହି ପ୍ରକାଶନଟିକୁ ଚଉତିଶାର ଶବମାଇନା ରିପୋର୍ଟ (Postmortem Report) ବୋଲି ବିଚାର ନ କରି ଓଡ଼ିଆ କବିତାର ପ୍ରୋଗ୍ରେସ୍ ରିପୋର୍ଟ ବୋଲି ଗ୍ରହଣ କରିବେ ବୋଲି ଆଶା କରୁଛି ।

ପରଂପରାକୁ ପରୀକ୍ଷା କରିବା ଲାଗି ଏକମାତ୍ର କଷଟି ହେଉଛି ଲୋକ ପ୍ରତିଷ୍ଠା । ଯେକୌଣସି ରଚନା ବହୁକାଳ ଧରି ବହୁଜନସମାଦୃତ ହେଲେ ଯାଇ ତାହା ଲୋକରେ ପ୍ରତିଷ୍ଠିତ ବୋଲି କହିହେବ । ଚଉତିଶା ରଚନା ରୀତି ଓଡ଼ିଆ କବିତା ମଧ୍ୟକୁ ଛଧ ପ୍ରବେଶ କରିବା ସମୟରୁ ଆଜିସୁଦ୍ଧା ଅନୁସୃତ ହୋଇ ଆସୁଛି । (ଏ କଥା ଲେଖିଲା ବେଳକୁ ଏହି ସପ୍ତାହ ମଧ୍ୟରେ ମୁଦ୍ରିତ ଜଣେ ଯୁବକ କବିଙ୍କର ଦୁଇଗୋଟି ଚଉତିଶା 'ବନ୍ଧୁ ଜଣାଣ' ଓ 'ମା ଭଗବତୀ' ମୋ ଟେବୁଲ ଉପରେ ପଡ଼ିଛି) । ଗତ ପାଞ୍ଚଶହ ବର୍ଷ ଧରି ଖ୍ୟାତ ଅଖ୍ୟାତ ସକଳ ପ୍ରକାର କବି ଚଉତିଶା ରୀତିରେ କବିତା ରଚନା କରିଥିବା ଦୃଷ୍ଟ ଚଉତିଶାର ଲୋକରେ ଆଦର କଳନୀୟ । କେତେକେତେ ପୁରାଣକାରଙ୍କୁ ଛାଡ଼ିଲେ ସବୁ ପ୍ରାଚୀନ କବି ଚଉତିଶା ଲେଖିଯାଇଛନ୍ତି । କବି ଭାବରେ ପ୍ରତିଷ୍ଠା ପାଇବାକୁ ଜମାରୁ ଆଗ୍ରହୀ ନ ଥିବା ଅନେକ 'ଅକବିଗୋଧ' ସରଳ ପ୍ରାଣ ବ୍ୟକ୍ତି ମଧ୍ୟ ଚଉତିଶା ଗାଇ ଯାଇଛନ୍ତି; ଗାଇ ଯାଉଛନ୍ତି କାରଣ ସେମାନଙ୍କ ମଧ୍ୟରୁ ଅନେକଙ୍କର ଅକ୍ଷର ପରିଚୟ ନଥିବା ସମ୍ଭବ । ପଲ୍ଲୀର ନୈସର୍ଗିକ ପରିବେଶ ମଧ୍ୟରେ ମୁଖ୍ୟତଃ ଅଶିକ୍ଷିତ ନିମ୍ନଗଣଙ୍କ ଦ୍ୱାରା ରଚିତ ହୋଇ ଅଦ୍ୟାବଧି ଲେଖନୀ ମୁଖକୁ ଆଶ୍ରୟ ନ କରି ତୁଣ୍ଡରୁ କାନ, କାନରୁ ମନ, ମନରୁ ତୁଣ୍ଡ ହୋଇ ଗଡ଼ି ଆସୁଥିବା ଏହି ରଚନାଗୁଡ଼ିକୁ ପ୍ରକାଶିତ କରାଇ ଡାଃ. କୁଞ୍ଜବିହାରୀ ଦାସ ଯଥାର୍ଥରେ ଗୋଟିଏ ବଡ଼ କୀର୍ତ୍ତି କରିଛନ୍ତି । ତାଙ୍କର 'ପଲ୍ଲୀଗୀତ ସଞ୍ଚୟନ' ଭୁକ୍ତ ହୋଇ ସାରିଥିବା, ତଥା ବର୍ତ୍ତମାନ ସୁଦ୍ଧା ପ୍ରକାଶ ପାଇ ନଥିବା, ପଲ୍ଲୀଗୀତି ଚଉତିଶା ଗୁଡ଼ିକ ଏକ ସାହିତ୍ୟିକ ରଚନା ରୀତି ଭାବରେ ଚଉତିଶାର ଜନ-ସମାଦରର ଉତ୍କୃଷ୍ଟ ପ୍ରମାଣ । ଲେଖନୀ ମୁନ ଦେଇ ଯେତେଯେତେ ଚଉତିଶା ଗଢ଼ି ଆସିଛି ତାହା ମଧ୍ୟ ଚଉତିଶାର ଜନ-ସମାଦରର ଅନ୍ୟତର ବଳିଷ୍ଠ ପ୍ରମାଣ । ଏତେ ସଂଖ୍ୟାରେ ଚଉତିଶା ମିଳୁଛି ଯେ ସେ ସବୁକୁ ଏକତ୍ର କଲେ ତାହା ଆକାରରେ ଦଶହଜାର ପୃଷ୍ଠାବ୍ୟାପୀ ହେବା ବିଚିତ୍ର ନୁହେଁ । ଏଥିରେ ଜମାରୁ ଅତିରଞ୍ଜନ ନାହିଁ । ହୁଏତ ଦଶହଜାର ପୃଷ୍ଠାରୁ ବେଶି ବଳି ପଡ଼ିବ । ଏଣୁ ଚଉତିଶା ଯେ ଓଡ଼ିଆ କବିତାର ଏକ ବିଶିଷ୍ଟ ପରଂପରା, ଏହା ନିଃସନ୍ଦେହ ।

ବର୍ଣ୍ଣମାଳାକୁ କ୍ରମାନୁଯ଼ୀ ଭାବରେ କବିତାର ପଦର ଆଦିରେ ବ୍ୟବହାର କରି ରଚନା କରିବା ରୀତି ଓଡ଼ିଆ ଭିନ୍ନ ଅନ୍ୟ ଭାଷାରେ ନାହିଁ, ଏପରି ନୁହେଁ । କିନ୍ତୁ କେତେ କେହି ଏପରି ମତ ବ୍ୟକ୍ତ କରିଛନ୍ତି । ଚଉତିଶା ସମ୍ପର୍କରେ ଆଲୋଚନା କରିବା ମଧ୍ୟରେ ଶ୍ରୀ ବିଜୟ ଚନ୍ଦ୍ର ମଜୁମଦାର ଏପରି କହିଛନ୍ତି—"It is in Orissa only that this form has been adopted in general literature" (ସାଧାରଣ ସାହିତ୍ୟରେ ଏହି ପଦ୍ଧତି ଓଡ଼ିଶାରେ ହିଁ ଅନୁସୃତ ହୋଇଛି ) । (୧) ଓଡ଼ିଆ ସାହିତ୍ୟର ଇତିହାସ ଗ୍ରନ୍ଥରେ ପଣ୍ଡିତ ବିନାୟକ ମିଶ୍ର ମଧ୍ୟ ଅନୁରୂପ ମତ ପ୍ରକାଶ କରି ଲେଖିଥିଲେ —"ଚଉତିଶା ରଚନା ଓଡ଼ିଆ ସାହିତ୍ୟର ଗୋଟିଏ ବିଶିଷ୍ଟତା । ଭାରତର ଅନ୍ୟ କୌଣସି ଭାଷାରେ ଚଉତିଶା ରଚନା ଦେଖାଯାଏ ନାହିଁ ।" (୨) ପରେ ପଣ୍ଡିତ ବିନାୟକ ଆଚାର୍ଯ୍ୟ ପ୍ରମୁଖ ଏହି ମତର ଅସାରତା ଦର୍ଶାଇଛନ୍ତି । ପଣ୍ଡିତ ଆଚାର୍ଯ୍ୟ ଦର୍ଶାଇଛନ୍ତି କି "ଆସାମୀ ଓ ହିନ୍ଦୀ ଭାଷାରେ ମଧ୍ୟ ଚଉତିଶାର ପ୍ରଚଳନ ଅଛି । କବୀର 'ଚଉତିଶ' ରୀତିରେ ଅନେକ କବିତା ଲେଖିଛନ୍ତି । ଆସାମର ବୈଷ୍ଣବ କବି ଶଙ୍କର ଦେବ କବୀରଙ୍କୁ ଅନୁସରଣ କରି ଆସାମୀ ଭାଷାରେ ଚଉତିଶା ରୀତିରେ ଲେଖା ଆରମ୍ଭ କରିଥିଲେ । ଆସାମୀ ଭାଷାରେ ଏହା 'ଚଣ୍ଡିହା' ନାମରେ ପ୍ରସିଦ୍ଧ । ଇଂରେଜ କବି ଚସର ମଧ୍ୟ ଲାଟିନ୍ ବର୍ଣ୍ଣମାଳାକୁ ପ୍ରଥମରେ ରଖି କବିତା ରଚନା କରିଛନ୍ତି" । (୩) ପଣ୍ଡିତ ବିନାୟକ ମିଶ୍ର 'ଓଡ଼ିଆ ସାହିତ୍ୟର ଇତିହାସ'ର ନୂତନ ସଂସ୍କରଣରେ ତାଙ୍କର ପୂର୍ବ ମତକୁ ଉଲ୍ଲେଖ କରି ନ ଥିବା ହେତୁ ଜଣାଯାଏ ଯେ ସେ ପୂର୍ବ ମତ ଆଉ ପୋଷଣ କରୁନାହାନ୍ତି । କବି, ଯେ କୌଣସି ଭାଷାର କବି, କବିତା ରଚନା କଲାବେଳେ ଅନେକଗୁଡ଼ିଏ ନିୟମ ବା ଶୃଙ୍ଖଳାକୁ ମାନି ନେଇଥାଏ । ସେହି ସେହି ଭାଷାର ବର୍ଣ୍ଣମାଳା ମଧ୍ୟ ତନ୍ମଧ୍ୟରୁ ଗୋଟିଏ ଶୃଙ୍ଖଳା ହେବାରେ କିଛି ଆଶ୍ଚର୍ଯ୍ୟର କଥା ନାହିଁ । ଇଂରେଜୀ ଭାଷାରେ ଚସରଙ୍କ

---

(୧) Typical selection of Oriya literature, Introduction P. 21

(୨) ଓଡ଼ିଆ ସାହିତ୍ୟର ଇତିହାସ (ପ୍ରଥମ ପ୍ରକାଶନ) ପୃ-୧୫

(୩) ମାସିକ ପତ୍ର "ନବଭାରତ" ୨ୟ ବର୍ଷ ୫ମ ସଂଖ୍ୟା ପୃ-୧୬୦

ପରି ଆଉ ଜଣେଅଧେ କବି ମଧ୍ୟ ଏପ୍ରକାର ଶୃଙ୍ଖଳା ମାନିଛନ୍ତି । ଏହାର ଚରମ ଦୃଷ୍ଟାନ୍ତ ରୂପେ ଏ. ଏ. ଓ୍ୱାଟ୍‌ସଙ୍କ "ଦ ସିଜ୍ ଅଫ୍ ବେଲ୍‌ଗ୍ରାଡ୍" ଶୀର୍ଷକ କବିତାଟିକୁ ଉଲ୍ଲେଖ କରାଯାଇପାରେ । ଏଥିରେ ୨୬ଟି ଧାଡ଼ିର ଶବ୍ଦ ଗୁଡ଼ିକର ଆଦ୍ୟାକ୍ଷର ଇଂରେଜୀ ବର୍ଣ୍ଣମାଳା କ୍ରମେ ରହିଛି । ପ୍ରଥମ ଚାରିଧାଡ଼ି ଉଦ୍ଧାର କରୁଛି, ଅନ୍ୟ ଧାଡ଼ିଗୁଡ଼ିକ ଏହି ପ୍ରକାରେ ରହିଛି—

An Austrian army, awfully arrayed,
Boldly by battery besieged Belgrade;
Cossack commanders cannonading come,
Dealing destruction's devastating doom;
( Etc, to the letter Z. )

—*A. A. Watts, the Siege of Belgrade*

କିନ୍ତୁ ଏପ୍ରକାର ରଚନାରୀତି ଇଂରେଜୀ ଭାଷାରେ ସଂଖ୍ୟାରେ ଏତେ କମ୍ ଯେ ଏହାର ଏକ ସ୍ୱତନ୍ତ୍ର ନାମ କରଣ ହୋଇଥିବା ପରି ଜଣା ଯାଉନାହିଁ । ହିନ୍ଦୀ ଭାଷାରେ 'ଚଉତିଶ' ଓ ଅସମିଆରେ 'ଚଉତିହା' ( ତହିଁ ଅନାଦ୍ୟ 'ଶ' ସ୍ଥଳେ 'ହ' ଉଚ୍ଚାରଣ ସାହଜିକ ) ନାମକରଣ ହୋଇ-ଥିବାରୁ ସ୍ଥିର କରିହେବ ଯେ ଚଉତିଶା ରୀତି ସେହି ସେହି ଭାଷାରେ କିଛି ପ୍ରତିଷ୍ଠା ପାଇଥିଲା । କବୀର, ଶଙ୍କର ଦେବଙ୍କ ଭଳି ବରିଷ୍ଠ ପୃଷ୍ଠପୋଷକ ଲାଭ କରି ମଧ୍ୟ ଚଉତିଶା ସେହି ସବୁ ଭାଷାରେ ଉଧେଇ ପାରିଲା ନାହିଁ । ଅନ୍ୟାନ୍ୟ ଭାଷାରେ ଚଉତିଶା ଢଙ୍ଗର ରଚନା ସଂଖ୍ୟା ନିତାନ୍ତ ନଗଣ୍ୟ । ତେଣୁ ଚଉତିଶା ରଚନା ଅନ୍ୟ ଭାଷାରେ ଅଛି, ସତ୍ୟ କିନ୍ତୁ ସାହିତ୍ୟିକ ପରଂପରା ଭାବେ ଚଉତିଶା ତହିଂ ପ୍ରତିଷ୍ଠିତ ହୋଇ ପାରିନାହିଁ ଯେପରି ଓଡ଼ିଆରେ ହୋଇଛି । ଏଥିରୁ ଗୋଟିଏ ସମ୍ଭାବନା ପ୍ରଶ୍ନ ମନକୁ ଆସୁଛି । ହୁଏତ ଶଙ୍କରଦେବ ଓ କବୀର ଅସମିଆ ଓ ହିନ୍ଦୀ ଭାଷାରେ ଏହାକୁ ରୋପଣ କରିଥିଲେ ଏବଂ ଏହା ସ୍ୱଦେଶୀୟ ନ ହୋଇଥିବା କାରଣରୁ ଜନସମାଦର ଲାଭ କରି ପାରିଲା ନାହିଁ । ଏବେ ଏହା ପ୍ରମାଣ କରାଗଲାଣି ଯେ ଶଙ୍କର-ଦେବଙ୍କର ଓଡ଼ିଶା ସହ ଘନିଷ୍ଠ ସମ୍ପର୍କ ଥିଲା । କବୀର ମଧ୍ୟ ଓଡ଼ିଶାରେ ବହୁକାଳ କଟାଇଥିବା କଥା ବହୁ ପ୍ରାଚୀନ ଐତିହାସିକ ଉପାଦାନ ଦ୍ୱାରା ସମର୍ଥନ ଲାଭ କରୁଛି । ତେଣୁ ସେମାନେ ଚଉତିଶା ରୀତିଟିକୁ ଓଡ଼ିଶାରୁ

ଯାଇ ଥାଇ ପାରନ୍ତି । କିନ୍ତୁ ସେହି ଭାଷାରେ ମୋର ଜ୍ଞାନର ଅଭାବ ହେତୁ ଏପରି ସମ୍ଭାବନା ନେଇ ଅଧିକ କହିବା ଉଚିତ ହେବ ନାହିଁ । ଭାବ ପ୍ରବଣତାକୁ ପ୍ରଶ୍ରୟ ନ ଦେଇ ହିନ୍ଦୀ ଓ ଅସମିଆ ଭାଷାରେ ଚଉତିଶା କାହିଁକି ସୃଷ୍ଟି ପାରିଲା ନାହିଁ ତାହାର କାରଣ ଖୋଜିବାକୁ ଭବିଷ୍ୟତର କେହି ଆଗ୍ରହୀ ହୋଇ ପାରନ୍ତି ବୋଲି ମୁଁ ଏତିକି ଲେଖିବାକୁ ଗଲି ।

ଇଂରାଜୀ ପ୍ରଭୃତି ଇଉରୋପୀୟ ବର୍ଣ୍ଣମାଳାର ବର୍ଣ୍ଣ ସହ ଧ୍ୱନିର ସଂପର୍କ ସୁନିର୍ଦ୍ଦିଷ୍ଟ ନୁହେ । ଉଦାହରଣ ରୂପେ ଉଲ୍ଲେଖ କରାଯାଇପାରେ ଯେ ଇଂରେଜୀ ସ୍ୱରବର୍ଣ୍ଣର ସଂଖ୍ୟା ମାତ୍ର ୫ ହେଲେ ମଧ୍ୟ ସ୍ୱର ଉଚ୍ଚାରଣ ଅନ୍ୟୂନ ୨୦ ପ୍ରକାର ହୁଏ । ଏହି ୨୦ ପ୍ରକାର ସ୍ୱର ଉଚ୍ଚାରଣ ସୂଚିତ କରିବା ଲାଗି ୧୯୧ ପ୍ରକାର ବନାନ ହୁଏ । ସେହିପରି ବ୍ୟଞ୍ଜନ ବର୍ଣ୍ଣର ସଂଖ୍ୟା ୨୧ ହେଲେ ମଧ୍ୟ ତନ୍ମଧ୍ୟରୁ ୪ଟିର ମୌଳିକ ଉଚ୍ଚାରଣ ନାହିଁ ଅବଶିଷ୍ଟ ୧୭ଟି ବର୍ଣ୍ଣ ୨୫ ପ୍ରକାର ଉଚ୍ଚାରଣର ପ୍ରତିନିଧିତ୍ୱ କରେ । ଦେଖାଯାଇଛି ଯେ ଏହି ୨୫ ପ୍ରକାର ବ୍ୟଞ୍ଜନ ଉଚ୍ଚାରଣକୁ ସୂଚାଇବାପାଇଁ ୧୬୬ ପ୍ରକାର ବନାନର ବ୍ୟବହାର ଇଂରାଜୀ ଭାଷାରେ ରହିଛି । ଯେଉଁ ଭାଷାରେ ଧ୍ୱନି ସହ ବର୍ଣ୍ଣର ସଂପର୍କ ନିର୍ଦ୍ଦିଷ୍ଟ ନୁହେ ସେଠାରେ କବିତା ସହ ବର୍ଣ୍ଣର ସଂପର୍କ ଏବଂ ପରିଣାମରେ ବର୍ଣ୍ଣମାଳାର କ୍ରମର ସଂପର୍କ ସ୍ଥାପିତ ହୋଇ ପାରିବ ନାହିଁ କାରଣ କବିତାର ସଂପର୍କ ଧ୍ୱନି ସହ, ବର୍ଣ୍ଣସହ ନୁହେ । ଲିପି ବଦଳିଗଲେ, ଗତ ୫ ଶହ ବର୍ଷ ମଧ୍ୟରେ ଢେର ବଦଳିଛି ମଧ୍ୟ, କବିତା ବଦଳିବ ନାହିଁ । ଇଉରୋପୀୟ ବର୍ଣ୍ଣମାଳାର ଏହି ସ୍ୱାତନ୍ତ୍ର୍ୟ ଦୃଷ୍ଟିରୁ ତହିଁରେ କବିତା ରଚନା ସହ ବର୍ଣ୍ଣମାଳାଟି ପ୍ରାସଙ୍ଗିକ ନୁହେ । ସେହିପରି ସଂସ୍କୃତ ବର୍ଣ୍ଣର ଉଚ୍ଚାରଣ ଢଙ୍ଗ ତଥା ସଂସ୍କୃତ ଛନ୍ଦର ନିୟମର ସ୍ୱାତନ୍ତ୍ର୍ୟ ହେତୁରୁ ସଂସ୍କୃତ କବିତା ମଧ୍ୟକୁ ଚଉତିଶା ପ୍ରବେଶ କରିପାରିବା କଥା ନୁହେ । ସଂସ୍କୃତରେ ଅକ୍ଷର ବିଶେଷର ସଂପର୍କ ଧ୍ୱନି ସହ ନିର୍ଦ୍ଦିଷ୍ଟ ହେଲେ ମଧ୍ୟ ଉଦାତ୍ତ, ସ୍ୱରିତ ଓ ଅନୁଦାତ୍ତ ଭେଦରେ ଧ୍ୱନିର ଉଚ୍ଚାରଣରେ ଭିନ୍ନତା ଦେଖାଯାଏ । ଏପରି ବଳାଘାତ ଓଡ଼ିଆ ସମେତ ନବଭାରତୀୟ ଭାଷା ମଧ୍ୟରୁ ଅଧିକାଂଶରେ ନାହିଁ । ପୁଣି ସଂସ୍କୃତ ଛନ୍ଦର ନିୟମକୁ ଭେଦ କରି ଚଉତିଶା ଗୀତ ସେହି ଭାଷାର କବିତାକୁ ସ୍ପର୍ଶ କରିବା ସମ୍ଭବ ନୁହେ । ସଂସ୍କୃତରେ ସବୁ ବର୍ଣ୍ଣର ଉଚ୍ଚାରଣରେ ଶ୍ୱାସାଘାତ ସମାନ ନୁହେ, ଏଥିରେ କେତେକର ଉଚ୍ଚାରଣ ଗୁରୁ ଓ କେତେକର ଲଘୁ । ଧ୍ୱନି ବହୁରଙ୍ଗ

ପ୍ରତ୍ୟେକ ବର୍ଣ୍ଣର ମୂଲ୍ୟ ଭିନ୍ନ ଭିନ୍ନ ହେଁଣୁ ସଂସ୍କୃତ ଉଚ୍ଚାରଣରେ ସଙ୍ଗୀତର ଶ୍ରବଣାନୁଭୂତ ମିଳିଥାଏ । ବର୍ଣ୍ଣ ବର୍ଣ୍ଣ ମଧ୍ୟରେ ଉଚ୍ଚାରଣ ଗତ ତାରତମ୍ୟ ଥିବାରୁ ସଂସ୍କୃତ ଛନ୍ଦ ଗୁରୁ ଲଘୁ ନିୟମ ଉପରେ ଆଧାରିତ । ଯେକୌଣସି ଛନ୍ଦରେ ଗୀତ ରଚିତ ହେଲେ ସଂସ୍କୃତରେ ଚଉତିଶା ନିୟମ ପାଳିତ ହୋଇ ପାରିବ ନାହିଁ । ସଂସ୍କୃତ ଗୁରୁ ଲଘୁ ନିୟମାନୁସାରୀ ତେଲୁଗୁ ଆଦି ଭାଷାରେ ମଧ୍ୟ ସେହି କଥା । ଅଥଚ ଓଡ଼ିଆର ଧ୍ୱନିର ଢଙ୍ଗ ସ୍ୱତନ୍ତ୍ର । ଓଡ଼ିଆରେ ଉଦାତ୍ତ, ଅନୁଦାତ୍ତ, ସ୍ୱରିତ ପ୍ରଶ୍ନ ନାହିଁ, ଉଚ୍ଚାରଣରେ ଗୁରୁ ଲଘୁ ନାହିଁ । ଶୁଦ୍ଧ ଭାବରେ ଉଚ୍ଚାରଣ କରିବାକୁ ଗଲେ ଓଡ଼ିଆ କଥାରେ ଲହରୀ ଉଠିବ ନାହିଁ, ଦେହପ୍ରାଣକୁ ହସନ୍ତ ରହିବ ନାହିଁ । ଏଣୁ ଓଡ଼ିଆରେ ଉଚ୍ଚାରଣ ସହ ବର୍ଣ୍ଣର ସମ୍ବନ୍ଧ ବଡ଼ ନିବିଡ଼ । ଗୋଟିଏ ବର୍ଣ୍ଣ ଓଡ଼ିଆରେ ଗୋଟିଏ ମାତ୍ର ଉଚ୍ଚାରଣକୁ ସୂଚାଏ । ବର୍ଗ୍ୟ ଓ ଅବର୍ଗ୍ୟ 'ବ', ଜ ଓ ଯ ଏବଂ ସ, ଶ, ଷ ସ୍ଥଳେ ଏକାଧିକ ବର୍ଣ୍ଣ ଏକା ଉଚ୍ଚାରଣକୁ ସୂଚାଇ ଥାଏ କିନ୍ତୁ ଗୋଟିଏ ବର୍ଣ୍ଣର ଏକାଧିକ ଉଚ୍ଚାରଣ ଓଡ଼ିଆରେ ନାହିଁ । ଧ୍ୱନି ଓ ବର୍ଣ୍ଣ ମଧ୍ୟର ଏପରି ଅଚ୍ଛେଦ୍ୟ ସମ୍ପର୍କ ହେତୁରୁ ଓଡ଼ିଆ କବିତା ଧ୍ୱନିକୁ ଅଗ୍ରସ୍ଥ କରୁ କରୁ ବର୍ଣ୍ଣମାଳାକୁ ଆଶ୍ରୟ କରିଥିବା ସମ୍ଭବ ଜଣା ପଡ଼ୁଛି ।

ଶ୍ରୀ ବିଜୟଚନ୍ଦ୍ର ମଜୁମ୍‌ଦାର୍ ଚଉତିଶାର ଜନ୍ମ ସମ୍ପର୍କରେ ଭିନ୍ନ ପ୍ରକାର ମତ ଦେଇଛନ୍ତି । ସେ ଲେଖିଛନ୍ତି କି, "The Origin of Chautisa form is easy to trace. In the literature of tantric system a mystic religious value was assigned and Stotra verses (hymns) were composed according to the aforenamed Chautisa Successions of letters, for special efficacy in the prayer or incantation. It is in Orissa only that this form has been adopted in general literature. (୪) (ଅର୍ଥାତ୍—ଚଉତିଶା ସୃଷ୍ଟିର ମୂଳ ନିରୂପଣ ସହଜସାଧ୍ୟ । ତନ୍ତ୍ର ସାହିତ୍ୟରେ ପ୍ରତ୍ୟେକ ଅକ୍ଷରର ଗୂଢ଼ ଆଧ୍ୟାତ୍ମିକ ମୂଲ୍ୟ ସ୍ଥିର କରାଯାଇ

(୪) Typical Selection of Oriya Literature, Introduction, P. 21

ପ୍ରାର୍ଥନା ବା ଭଜନରେ ବିଶେଷ ଫଳ ମିଳିବା ପାଇଁ ଚଉତିଶାର ଅକ୍ଷର କ୍ରମାନୁସାରେ ସ୍ତୋତ୍ରମାନ ରଚିତ ହେଉଥିଲା । ସାଧାରଣ ସାହିତ୍ୟକ୍ଷେତ୍ରରେ ଏହି ରୀତିଟି ଓଡ଼ିଶାରେହିଁ ଅନୁସୃତ ହୋଇଛି । ) ପ୍ରାଚୀନ ଯୁଗରେ, ଏହା ଭାରତରେ ନୁହେଁ, ସବୁ ଦେଶରେ ଶବ୍ଦ ଓ ତାହାର ଅର୍ଥ ମଧ୍ୟରେ ଅଭେଦ କଳ୍ପନା କରାଯାଉଥିଲା । କାହାର ନାମକୁ ଲେଖି ଲେଖାକୁ ପୋଡ଼ିଦେଲେ ଲୋକଟି ନଷ୍ଟ ହୋଇଯିବ; ଏପରି ବିଦ୍ୟା ଅଛି ବୋଲି ବିଶ୍ୱାସ କରାଯାଉଥିଲା । ଭାରତୀୟ ଦର୍ଶନର ଶବ୍ଦବ୍ରହ୍ମ ଆଦି ମତବାଦରେ ମଧ୍ୟ ଶବ୍ଦକୁ ଏକ ପ୍ରତୀକ ରୂପେ ଗ୍ରହଣ କରା ନ ଯାଇ ତାହାକୁ ସ୍ୱୟଂପ୍ରମାଣ ଭାବରେ ମୌଳିକସତ୍ତା ବୋଲି କଳ୍ପନା କରଯାଇଛି । ବ୍ୟାକୃତ ଦର୍ଶନବାଦୀଙ୍କର ଶବ୍ଦବ୍ରହ୍ମ କଳ୍ପନା ପରି ସଙ୍ଗୀତ ଦର୍ଶନର ନାଦବ୍ରହ୍ମ କଳ୍ପନା ମଧ୍ୟ ରହିଛି । ତନ୍ତ୍ରରେ ଯନ୍ତ୍ରନାମକ ବିଭିନ୍ନ ଆକୃତି ଏବଂ ବର୍ଣ୍ଣ ଉପରେ ବିଶେଷ ଗୁରୁତ୍ୱ ଦିଆଯାଇଛି । କିନ୍ତୁ ସେହିଠାରେ କେବଳମାତ୍ର ବ୍ୟଞ୍ଜନ ବର୍ଣ୍ଣକୁ ପ୍ରାଧାନ୍ୟ ଦିଆ ନ ଯାଇ ସ୍ୱରବ୍ୟଞ୍ଜନ ନିର୍ବିଶେଷରେ ସବୁ ବର୍ଣ୍ଣର ଆଧ୍ୟାତ୍ମିକ ମୂଲ୍ୟାଙ୍କନ କରଯାଇଛି । ତନ୍ତ୍ର ପ୍ରଭାବରୁ ଓଡ଼ିଶାରେ ବର୍ତ୍ତମାନ ସୁଦ୍ଧା ପ୍ରଚଳିତ ବ୍ରହ୍ମଜ୍ଞାନରେ ମଧ୍ୟ ବର୍ଣ୍ଣର ଆଧ୍ୟାତ୍ମିକ ମୂଲ୍ୟ ସ୍ୱୀକୃତ ହୁଏ ଏବଂ ଶରୀରର ଷଡ଼୍‌ଚକ୍ରରେ ସ୍ୱରବ୍ୟଞ୍ଜନ ୫୦ ଗୋଟି ଅକ୍ଷରର ସ୍ଥାନ ନିର୍ଦ୍ଧାରିତ କରଯାଏ । ଚଉତିଶାର ଜନ୍ମ ମୂଳରେ ଧାର୍ମିକ ବିଶ୍ୱାସ ଯଦି ଥାଆନ୍ତା ତାହାହେଲେ ସ୍ୱରବର୍ଣ୍ଣଗୁଡ଼ିକ ଚଉତିଶାରେ ଉପେକ୍ଷିତ ହୋଇ ପାରନ୍ତା ନାହିଁ । ପୁଣି ଲକ୍ଷ୍ୟକରିବାର କଥା ଯେ ମିଳୁଥିବା ସବୁ ପ୍ରାଚୀନ ଚଉତିଶା ଗୁଡ଼ିକ ପ୍ରାର୍ଥନା ଓ ଭଜନମୂଳକ ନୁହେଁ । ଧର୍ମ ସହ ନିବିଡ଼ ସମ୍ପର୍କ ନ ଥିବା ଯେଉଁସବୁ ପ୍ରାଚୀନ ରଚନା ମିଳୁଛି ତନ୍ମଧ୍ୟରୁ ଅଧିକ ସଂଖ୍ୟକ ଯଦି ଚଉତିଶା ରୀତିର ରଚନା ହୋଇଥାଏ ତେବେ ଚଉତିଶା ସହ ଧର୍ମକୁ ଯୋଡ଼ିଦେବାର ଯଥାର୍ଥତା କାହିଁ ? ଏଣୁ ଶ୍ରୀ ମଜୁମ୍ଦାରଙ୍କ ସିଦ୍ଧାନ୍ତଟି ଆପାତ ରୁଚ୍ୟ ହେଲେ ମଧ୍ୟ ଯୁକ୍ତିସମ୍ମତ ନୁହେଁ ।

ଓଡ଼ିଆରେ ପ୍ରତ୍ୟେକ ଅକ୍ଷରର ଉଚ୍ଚାରଣର ଧ୍ୱନିମାନ, ଉଚ୍ଚାରଣର ଗୁରୁତା ତଥା କାଳ, ଅନ୍ୟାନ୍ୟ ଅକ୍ଷର ସଙ୍ଗେ ସମାନ । ସାରଳା ଦାସଙ୍କ ମହାଭାରତ ଆଦି ପ୍ରାଚୀନ ପୁରାଣଗୁଡ଼ିକରେ ବ୍ୟବହୃତ 'ଦାଣ୍ଡିବୃତ୍ତ' କିନ୍ତୁ ଏହି ନିୟମ ଉପରେ ପ୍ରତିଷ୍ଠିତ ନୁହେଁ । 'ଦାଣ୍ଡିବୃତ୍ତ' ଯଥାର୍ଥରେ ବୃତ୍ତ ନୁହେଁ;

ଏହା ଏକ ପ୍ରକାର ଗାୟନ କୌଶଳ ମାତ୍ର । ଯେଉଁମାନେ ପ୍ରାଚୀନ ଢଙ୍ଗର ପଦ୍ୟ ପାଠ ଶୁଣିଥିବେ ସେମାନେ ଗଦ୍ୟକୁ ମଧ୍ୟ କଣ୍ଠର ଲହରି ଦେଇ ଗାନ କରାଯାଉଥିଲା ବୁଝୁଥିବେ । ଏବେ ମଧ୍ୟ ପୁରୋହିତମାନେ କେତେ କେତେ ଶ୍ରୁତ କଥାଗୁଡ଼ିକୁ ଏ ଢଙ୍ଗରେ ବୋଲନ୍ତି । 'ଦାଣ୍ଡି ବୃତ୍ତ'ର ରଚନା ନିର୍ଣ୍ଣ-ବେଳେ କେଉଁଠି ଧଡ଼ସଇଁ, କେଉଁଠି ଲମ୍ବାଇ, କେଉଁଠି କେବଳ ମାତ୍ର ଅନୁନାସିକ ଲହରି ଦେଇ (ପୁରୁଣା ପୋଥିରେ ଏଥିଲାଗି ଠାଏଁ ଠାଏଁ ଅନୁସ୍ୱାର ଦିଆଯାଉଥିଲା) ଶ୍ରୋତାର କର୍ଣ୍ଣୋତ୍ସବ ସାଧନ କରିବାକୁ ହେଉଥିଲା । କିନ୍ତୁ ଏଥିରେ କୌଣସି ନିର୍ଦ୍ଦିଷ୍ଟ ରାଗ ନଥିଲା । ଫଳରେ 'ଦାଣ୍ଡି ବୃତ୍ତ'ର ରଚନାର ସୁଶ୍ରାବ୍ୟତା ଗାୟକର ନିଜସ୍ୱ କୌଶଳ ମାତ୍ର ଥିଲା । ଏହି କାରଣରୁ ଆଜିବି 'ପୁରାଣ ଗାଇବା' ନ କହି 'ପୁରାଣ ପଢ଼ିବା' କୁହାଯାଏ । ସାରଳା ଦାସଙ୍କ 'ମହାଭାରତ' ଓ ବଳରାମ ଦାସଙ୍କ 'ରାମାୟଣ' ରଚିତ ହେବା ଫଳରେ ଓଡ଼ିଆ 'ପୁରାଣ ପଢ଼ିବା' ଅନୁଷ୍ଠାନ ଗ୍ରାମେ ଗ୍ରାମେ ବ୍ୟାପିଗଲା । ସେତିକିବେଳେ ଏହା ଅନୁଭୂତ ହୋଇଥିବ ଯେ ଓଡ଼ିଆ କବିତା ଭିତରୁ ରାଗକୁ ଟାଣି ନ ଆଣିଲେ ପୁରାଣ ପାଠକମାନେ ଗାୟନ ସ୍ୱତ୍ୱ ନେଇ ନିରଙ୍କୁଶ ହୋଇ ପଡ଼ିବେ । ଏତେବେଳକୁ ଶ୍ରେଷ୍ଠଶ୍ରେଷ୍ଠ କବିତାମାନ ନିର୍ଦ୍ଦିଷ୍ଟ ରାଗରେ ଗାଇବାପାଇଁ ରଚିତ ହୋଇଥାଏ (ଯେପରି କପିଳେଶ୍ୱର ଦେବଙ୍କ 'ପର୍ଶୁରାମ ବିଜୟ'ରେ ସ୍ଥାନ ପାଇଥିବା ଓଡ଼ିଆ ଗୀତ) କିନ୍ତୁ ବୃହତ୍କାୟ ରଚନାରେ ରାଗ ପଶିବା ଲାଗି କିଛି ସମୟ ଲାଗିଲା । ରାଗାଶ୍ରିତ ରଚନାକୁ କୁହାଗଲା ଛାନ୍ଦ—ଯାହା ଛନ୍ଦ ଦେହରୁ ଆସିଛି । ଓଡ଼ିଆ ଅକ୍ଷରର ଧ୍ୱନିମୂଲ୍ୟ ସମାନ ଥିବା କାରଣରୁ ଛାନ୍ଦର ସ୍ୱରୂପ ତାହାର ପାଦସଂଖ୍ୟା ତଥା ପାଦଭୁକ୍ତ ପଦଗୁଡ଼ିକରେ ସଂବନ୍ଧିତ ଅକ୍ଷରର ସଂଖ୍ୟା ଉପରେ ନିର୍ଭର କରିବା ସ୍ୱାଭାବିକ । ପ୍ରାଥମିକ ଅବସ୍ଥାରେ ଓଡ଼ିଆ ଛାନ୍ଦର ପଦଗୁଡ଼ିକର ଅକ୍ଷର ସଂଖ୍ୟାରେ ଯେଉଁ ଅସମାନତା ଦୃଷ୍ଟ ହେଉଥିଲା ସେଥିରୁ ସ୍ପଷ୍ଟ ହୁଏ ଯେ 'ଦାଣ୍ଡି'ର ପ୍ରଭାବକୁ ସଂପୂର୍ଣ୍ଣ ପ୍ରତିହତ କରି ଛାନ୍ଦ ପ୍ରତିଷ୍ଠିତ ହେବାକୁ ବହୁ ସମୟ ନେଇଥିଲା । (ଏହି ସଂଚୟନର ଆଦ୍ୟ କେତୋଟି ଚଉତିଶାରେ ଛାନ୍ଦର ଏପରି 'ଦୋଷ' ପାଠକେ ଲକ୍ଷ୍ୟକରିବେ) । ସାହିତ୍ୟ ଓ କଳାକ୍ଷେତ୍ରରେ ଗୋଟିଏ ସାଧାରଣ ନିୟମ ଏହି ଯେ ଯେ କୌଣସି ଆଙ୍ଗିକ ବା ପ୍ରାରୂପର କାର୍ଯ୍ୟକାରିତା ନିଃଶେଷ ହୋଇଗଲେ ମଧ୍ୟ ତାହାର ପୋଷକ ବା ସମର୍ଥକମାନେ ଏକାବେଳକେ ଉଭେଇ

ଯାଆନ୍ତି ନାହିଁ । ଆଜିକି ଉପେନ୍ଦ୍ରଙ୍କ ଗ୍ରନ୍ଥରେ କାବ୍ୟ ଲେଖା ଚାଲୁଛି । ଅନ୍ତତଃ ବଂଶଗତାର୍ଥର କୌଣସି ଅଭିଧାନକାର 'ହ' ପରେ 'କ୍ଷ'କୁ ସ୍ଥାନ ଦେଇ ନଥିଲେ ମଧ୍ୟ ଚଉତିଶା ଉଭେଇ ନାହିଁ । ତେଣୁ ଛନ୍ଦ ହିଁଠାରୁ ପଛିଯାଇ ସାହିତ୍ୟ ରାଜ୍ୟରୁ ଦାଣ୍ଡିକୁ ବିତାଡ଼ିତ କରିବାକଥା ନୁହେଁ ।

ଚଉତିଶା ହେଉଛି ଓଡ଼ିଆ ଛାନ୍ଦର ଏକ ଭେଦ ମାତ୍ର । ଉପେନ୍ଦ୍ର ଭଞ୍ଜଙ୍କର 'ଚଟାଳ ଚଉତିଶା'ଟି ପୂର୍ବେ 'ଚଟାଳ ଛାନ୍ଦ' ନାମରେ ପରିଚିତ ଥିଲା । ପ୍ରାଚୀନ ପୋଥିରେ ଠଏଁ ଠାଏଁ ସୂଚୀପତ୍ରରେ ଛାନ୍ଦ ବୋଲି ସୂଚିତ ହୋଇ ସୂଚିତ ପତ୍ରଠାରେ ଚଉତିଶା ଲେଖା ହୋଇଥିବା କଥା ଦେଖାଯାଉଛି । ଚଉତିଶା ଭଳି 'ପୋଇ' ମଧ୍ୟ ଛାନ୍ଦର ଏକ ଭେଦ । ପୋଇକୁ ସଂଖ୍ୟା ଶୃଙ୍ଖଳରେ ଆବଦ୍ଧ ଛାନ୍ଦ ବୋଲି କୁହାଯାଇ ପାରେ [ ପୋଇଗୁଡ଼ିକ ଯେ ସଂଖ୍ୟା ଉପରେ ଆଶ୍ରିତ, ଏହାପୋଇ ଗୁଡ଼ିକର ନାମରୁ ହିଁ ଜଣାପଡ଼େ; ଏଗୁଡ଼ିକରେ ଯେତୋଟି ଭାଗ ଥାଏ ପ୍ରତ୍ୟେକ ଭାଗରେ ସେତିକ ସଂଖ୍ୟକ ପଦ ଥାଏ ଏବଂ ସମଗ୍ର ପୋଇଟି ଗୋଟିଏ ମାତ୍ର ଛାନ୍ଦରେ ରଚିତ ହୁଏ] । ଚଉତିଶା ଉଭୟ ବ୍ୟଞ୍ଜନବର୍ଣ୍ଣର କ୍ରମ ଏବଂ ୩୪ ସଂଖ୍ୟା ଉପରେ ଆଶ୍ରିତ । ସଂସ୍କୃତ ଚତୁସ୍ତ୍ରିଂଶ ଶବ୍ଦରୁ ଚଉତିଶ ହୋଇ ଚଉତିଶ ହୋଇ ଆକାର ଯୋଗରେ ଚଉତିଶା ହୋଇଥିବା ଜଣାପଡୁଛି । ପ୍ରଥମ ଅବସ୍ଥାରେ ଚଉତିଶାଗୁଡ଼ିକରେ ପଦସଂଖ୍ୟା ୩୪ ହିଁ ନିର୍ଦ୍ଦିଷ୍ଟ ଥିଲା । ଏଥିରେ ପ୍ରତ୍ୟେକ ପଦର ସବୁ ଚରଣ ଆଦ୍ୟରେ ଏକ ଏକ ବର୍ଣ୍ଣ ଅର୍ଥାତ୍ କ ଠାରୁ କ୍ଷ ଯାଏଁ ୩୪ଟି ଯାକ ବର୍ଣ୍ଣ, ବର୍ଣ୍ଣମାଳାର କ୍ରମାନୁସାରେ ବ୍ୟବହୃତ ହେଉଥିଲା [ଜ୍ଞାନ ଭେଦେ ଚଉତିଶାରେ ନିର୍ଦ୍ଦିଷ୍ଟବର୍ଣ୍ଣଟି ପ୍ରତି ଚରଣ ଆଦ୍ୟରେ ବ୍ୟବହୃତ ନ ହୋଇ କେବଳ ପଦ ଆଦ୍ୟରେ ଥରେ ବ୍ୟବହୃତ ହୋଇଛି; ହୁଏତ ନିୟମଟି ସୁପ୍ରତିଷ୍ଠିତ ହୋଇ ନଥିବା ହେତୁରୁ ତାହା ସମ୍ଭବ ହୋଇଛି—ସ: ୨] । କ୍ରମେ ବିଭିନ୍ନ କବିଙ୍କ ଦ୍ୱାରା ମୋଟ ପଦ ସଂଖ୍ୟା, ବର୍ଣ୍ଣର କ୍ରମ ଏବଂ ବ୍ୟବହୃତ ବର୍ଣ୍ଣର ସ୍ଥାନ ପରିବର୍ତ୍ତନ କରାଯାଇଛି । ଚଉତିଶାର ପଦସଂଖ୍ୟା ୩୪ ନହୋଇ ୧୭ ହେଲେ ମଧ୍ୟ ଅଥବା ୬୮ ହେଲେ ମଧ୍ୟ ରଚନାଟିକୁ ପୋଥିରେ ଚଉତିଶା ବୋଲି କୁହାଯାଇଛି । ଅନ୍ୟାନ୍ୟ ସଂଖ୍ୟକ ପଦବିଶିଷ୍ଟ ରଚନାରେ ୩୪ଟି ବର୍ଣ୍ଣ କ୍ରମାନୁସାରେ ବ୍ୟବହୃତ ହୋଇଥିଲେ ମଧ୍ୟ ପୋଥିରେ ରଚନାଟିକୁ ଚଉତିଶା ବୋଲି ଅଭିହିତ କରାଯାଇ ନାହିଁ । କିନ୍ତୁ

ଯେ ଗୁଡ଼ିକୁ ଚଉତିଶା ବୋଲି ଅଭିହିତ କରିବା ଯଥାର୍ଥ ହେବ ଭାବି ମୁଁ ଏହି ସଂଗ୍ରହରେ ସେ ପ୍ରକାର ରଚନାକୁ ଅନ୍ତର୍ଭୁକ୍ତ କରିଛି ।

ହରିଦାସଙ୍କର ଏକ ଚଉତିଶାର ପଦ ସଂଖ୍ୟା ୧୭ ଏଥିରେ ପଦକେ ଦୁଇ ପାଦ । ତେଣୁ ପାଦାଦ୍ୟରେ ଗୋଟିଏ ଗୋଟିଏ ବର୍ଣ୍ଣକରି ୩୪ଟି ବର୍ଣ୍ଣ ବ୍ୟବହୃତ ହୋଇଛି । ଏହାର ଶେଷ କେତେକ ପଦ ଉଦ୍ଧାର କଲେ ଯଥେଷ୍ଟ ହେବ:—

"ଲ, ଲ, ରସିକ ବନ୍ଧୁ । ଳ, ଳ, ଲାବଣ୍ୟ ସିନ୍ଧୁ ॥
ବ, ବ, ବଂଶିଧାରିଆ । ଶ, ଶ, ଶ୍ୟାମଘନିଆ ॥
ଷ, ଷ, ସାରଙ୍ଗପାଣି । ସ, ସ, ସୁନ୍ଦରମଣି ॥
ହ, ହ, ହରିଦାସିଆ । କ୍ଷ, କ୍ଷ, କ୍ଷମାକାରିଆ ॥

ଏହି ରଚନାଟି ଚଉତିଶା ନାମରେ ପରିଚୟ ଲାଭ କରିବା ହେତୁରୁ ଗୋଟିଏ ପଦରେ ଏକାଧିକ ବର୍ଣ୍ଣ ବ୍ୟବହୃତ ହେଲେ ତାହା ଚଉତିଶା ନ ବୋଲାଇବ ବା କାହିଁକି ? ପୁଣି ଯେଉଁ ଛନ୍ଦର ପାଦ ସଂଖ୍ୟା ଦୁଇରୁ ଅଧିକ ହୁଏ ସେଠି ରଚନାର ମୋଟ ପଦସଂଖ୍ୟା ଆନୁପାତିକ ଭାବେ କମିଗଲେ ମଧ୍ୟ ତାହା ଚଉତିଶା ବୋଲାଇବା କଥା । ଏ ଭାବେ ସ୍ଥିର କରାଯାଇପାରେ ଯେ ଚଉତିଶାର ସମ୍ପର୍କ ପଦରେ ୩୪ ପଦ ସହ ଥିଲେ ମଧ୍ୟ ପରେ ତାହା ୩୪ ଅକ୍ଷର ସହିତ ରହିଲା ।

ଚଉତିଶା ରଚନାରେ କ୍ରମେ ବିଭିନ୍ନ ପ୍ରକାର ବୈଚିତ୍ର୍ୟ ପ୍ରକାଶ ପାଇଲା । ଭିନ୍ନ ଭିନ୍ନ ପ୍ରକାରର ଚଉତିଶାର ଏକତ୍ର ସମାବେଶ କରି ଚଉତିଶାର ବୈଚିତ୍ର୍ୟକୁ ପ୍ରକଟିତ କରାଇବାରେ ମୁଁ କେତେଦୂର ସଫଳକାମ ହୋଇଛି କହିପାରୁନାହିଁ କିନ୍ତୁ ମୋର ସୀମାବଦ୍ଧ ପରିସର ମଧ୍ୟରେ ସେ

---

(୫) 'ରାଧାକୃଷ୍ଣ ପଦ୍ୟାବଳୀ'ରେ ଗୋପାଳକୃଷ୍ଣଙ୍କର 'ଜଳଦ ଚଉତିଶା' ନାମକ ୯ ପଦ ବିଶିଷ୍ଟ ଚଉତିଶା ସ୍ଥାନ ପାଇଛି । ଏହି ନାମଟି ପୋଥିରେ ମଧ୍ୟ ଥିବା ଅନୁମାନ ହୁଏ ।

(୬) ଶ୍ୟାମସୁନ୍ଦର ରାଜଗୁରୁ—"ପ୍ରବନ୍ଧାବଳୀ" (୧୯୬୪) ପୃ.୪

ବିଗରେ ଚେଷ୍ଟା କରିବାରେ ଅବହେଳା କରିନାହିଁ । ଚଉତିଶା ରଚନାରେ ପଦସଂଖ୍ୟା, ଉପଜୀବ୍ୟ ଭାବ, ଭଣିତ ସ୍ଥାନ, ରାଗସଂଖ୍ୟା, ରଚୟିତାଙ୍କ ସଂଖ୍ୟା, ଅକ୍ଷରକ୍ରମ ନେଇ କେତେ କେତେ ପ୍ରକାର ଭିନ୍ନତା ଦୃଷ୍ଟହୁଏ ତାହାର ସାମାନ୍ୟ ସୂଚନା ଦେଲେ ଏହି ସଙ୍କଳନ ସ୍ୱରୂପ ସ୍ପଷ୍ଟତର ହେବ ।

ସାଧାରଣ ଚଉତିଶାର ପଦସଂଖ୍ୟା ୩୪. ହରିଦାସଙ୍କ ୧୭ ପଦ ବିଶିଷ୍ଟ ଏକ ଚଉତିଶା ପୂର୍ବେ ଗୃହଶାଳୀରେ ପଠିତ ହେଉଥିଲା ଯାହାର ଶେଷ ଗୀତିପଦର ଉଦ୍ଧାର ପୂର୍ବେ କରିଛୁ [ଏହାକୁ ମୁଁ ସଂଗ୍ରହ କରିବାକୁ ଅକ୍ଷମହେବାରୁ ଏଠାରେ ପ୍ରକାଶିତ କରାଇ ନପାରି ବିଶେଷ ଦୁଃଖିତ, କେହି ମୋତେ ଯୋଗାଇ ପାରିଲେ ଅନନ୍ଦିତ ହେବି] । ଏହାର ପ୍ରଥମ ପଦଟି ହେଲା "କ, କ, କାଳନ୍ଦୀ ତୀରେ । ଖ, ଖ, ଖେଳନ୍ତି ଧୀରେ । ଦୀନାଇ ଦାସଙ୍କର 'ଭଲମନ୍ଦ ଚଉତିଶା ( ସଂ. ୧୭ )ର ପଦ ସଂଖ୍ୟା ୭୮ ( ଏଠାରେ ଦୁଇଟି ପଦର ସବୁଗୁଡିକ ପାଦର ଆଦ୍ୟରେ ଗୋଟିଏ କରି ବର୍ଣ୍ଣ ବ୍ୟବହୃତ ହୁଏ ) । ପଦ୍ମନାଭ ଦେବଙ୍କ 'ଶ୍ରୀ ବ୍ରଜରାଜଙ୍କ ଜଣାଣ' ( ସଂ. ୨୦ ) ଏକ ୨୦ ପଦ ବିଶିଷ୍ଟ ଚଉତିଶା ( ଏଥିରେ ବର୍ଗର ପଞ୍ଚମ ବର୍ଣ୍ଣ ଓ କ୍ଷ ପାଇଁ ଏକ ଏକ ପଦ ଏବଂ ଅନ୍ୟ ଦୁଇ ଦୁଇ ବର୍ଣ୍ଣ ପାଇଁ ଗୋଟିଏ କରି ପଦ) । ଚଉତିଶା ଗୀତର ଅନେକ ଚଉପଦୀ ମିଳୁଛି—ଏହି ସଙ୍କଳନରେ ୭ପଦ ବିଶିଷ୍ଟ ଦ୍ୱାରକା ଦାସଙ୍କର ଏକ ଭଜନ (ସଂ. ୧୦) ଏବଂ ୭ ପଦ ବିଶିଷ୍ଟ ଅଚ୍ୟୁତାନନ୍ଦଙ୍କର ଜଣାଣ (ସଂ. ୧୫) ଅନ୍ତର୍ଭୁକ୍ତ ହୋଇଛି । ଉପେନ୍ଦ୍ର ଭଞ୍ଜ ଆଦିଙ୍କର ମଧ୍ୟ ଏପ୍ରକାର ରଚନା ରହିଛି ।

ଚଉତିଶାର ସାଧାରଣ ଅକ୍ଷରକ୍ରମ କ ଠାରୁ କ୍ଷ । କିନ୍ତୁ ଏହା ଭିନ୍ନ ଅନ୍ୟ ନିର୍ଦ୍ଦିଷ୍ଟ କ୍ରମରେ ମଧ୍ୟ ଚଉତିଶା ରଚିତ ହୋଇଛି । କ୍ଷ ଠାରୁ କ କ୍ରମରେ ଚଉତିଶା ରଚିତ ହେଲେ ତାହାକୁ ଓଲଟ ଚଉତିଶା କୁହାଯାଏ । ଶ୍ୟାମସୁନ୍ଦରଙ୍କର ହଂସ ଚଉତିଶା ଏବଂ ଭୀମ ଭୋଇଙ୍କର ଏକ ଭଜନ ଚଉତିଶା ଏପରି ଓଲଟ କ୍ରମରେ ରଚିତ । ଗତ ଶହେ ବର୍ଷ ମଧ୍ୟର ରଚନାକୁ ସଙ୍କଳନ ମଧ୍ୟକୁ ନ ଆଣିବାକୁ ସ୍ଥିର କରିଥିବା ହେତୁରୁ ଭୀମ ଭୋଇଙ୍କ ରଚନାଟି ଏଥିରେ ସଂଯୁକ୍ତ କରି ନାହିଁ । ହଂସ ଚଉତିଶାଟି ୭୦ ବର୍ଷ ତଳେ ଥରେ ପ୍ରକାଶ ପାଇଥିଲେ ମଧ୍ୟ ଏଠି ବାଧ୍ୟ ହୋଇ ଯୁକ୍ତ କଲି । (ସଂ. ୧୭) ଅକ୍ଷର କ୍ରମ କ୍ଷ ଠରୁ କ ହୋଇ ପୁଣି କ ଠାରୁ କ୍ଷ ଏପରି ଓଲଟ ସିଧା ଗୀତ ଅନୁସୃତ ହେବା ରଚନାର ଦୃଷ୍ଟାନ୍ତ ଚଉତିଶା (ସଂ. ୨୧) ।

ବର୍ଣ୍ଣମାଳାର ଆଗରୁ କ, ତାପରେ ପଛରୁ କ୍ଷ, ତାପରେ ପୁଣି ଆଗରୁ ଖ ଏବଂ ପର ଭାବରେ ଙ, ଗ, ସ, ଘ ଅକ୍ଷର କ୍ରମ ଥିବା ବପ୍ରସିଂଘା ଚଉତିଶା (ସଂ. ୮) ରଚନାର କ୍ରମ ନେଇ ନୂତନ ପ୍ରକାର ବୈଚିତ୍ର୍ୟ ପ୍ରକାଶ କରେ ।

ଚଉତିଶାରେ ସାଧାରଣତଃ ପଦର ପ୍ରତିପାଦର ଆଦ୍ୟାକ୍ଷରରେ ଅକ୍ଷରକ୍ରମ ରକ୍ଷିତ ହୁଏ । ହରିଦାସଙ୍କ ଚଉତିଶାରେ କେବଳ ମାତ୍ର ପଦାଦ୍ୟରେ ଏବଂ ଦ୍ୱାରିକା ଦାସଙ୍କ ଭଜନରେ ପ୍ରତି ପଦର ଆଦ୍ୟରେ ଏହିକ୍ରମ ପାଳିତ ହୋଇଥିବା ଜଣାଯାଉଛି । ଅଚ୍ୟୁତାନନ୍ଦ ଦାସଙ୍କ ଜଣାଣ (ସଂ. ୧୫) ମଧ୍ୟରେ ଅକ୍ଷରର ସ୍ଥାନ ସୁନିର୍ଦ୍ଦିଷ୍ଟ ନୁହେଁ । ପଦର ପ୍ରତି ପାଦର ଶେଷରେ ଅକ୍ଷର କ୍ରମ ରକ୍ଷିତ ହେଲେ ମଧ୍ୟ ତାହା ଚଉତିଶା ନାମ ଗ୍ରହଣ କରିଥାଏ । ଉପେନ୍ଦ୍ର ଭଞ୍ଜଙ୍କର 'ରସପଞ୍ଚକ' ମଧ୍ୟରେ ଏହିପରି ୫ଟି ଚଉତିଶା ରହିଛି ଯେଉଁ ଚଉତିଶାଗୁଡ଼ିକର ପ୍ରତିଟି ଚରଣର ଆଦ୍ୟାକ୍ଷର ଯଥାକ୍ରମେ ର, ସ, ପ, ଚ, ଓ କ, ତନ୍ମଧ୍ୟରୁ ଚକାର ଚଉତିଶା (ସଂ. ୧୩) ଏହି ସଂଚୟନ ଭୁକ୍ତ ହୋଇଛି । ଏ ପ୍ରକାର ଅନ୍ୟ ଅପ୍ରକାଶିତ ରଚନା ମୋ ଦୃଷ୍ଟିରେ ପଡ଼ିନାହିଁ ।

ଚଉତିଶାର ଶେଷ ପଦଟି ସାଧାରଣତଃ ଭଣିତା ସ୍ଥାନ କିନ୍ତୁ ୧୨, ୨୪ ଏବଂ ୩୪ ପଦରେ ତିନୋଟି ଭଣିତା ଥିବା ବହୁତ ଚଉତିଶା ମିଳୁଛି । ଏହି ସଂଚୟନରେ ଜ୍ଞାନ ଜଗେ ଚଉତିଶା (ସଂ. ୨), ଯୋଗୀ ଚଉତିଶା (ସଂ. ୭), ଷସ୍ପୂରାଗୀ ଚଉତିଶା (ସଂ. ୧୦)ରେ ଏପରି ଭଣିତା ରହିଛି । ବିଷ୍ଣୁଦାସଙ୍କ କ୍ଷେତ୍ରବରହ ଚଉତିଶା (ସଂ. ୫) ଓ କୃଷ୍ଣଦାସଙ୍କ ସ୍ନାନ ଉତ୍ସବ ଚଉତିଶାର ପ୍ରଥମ ପଦରେ ମଧ୍ୟ ଭଣିତା ଥିବା ଜଣାଯାଏ । ସପ୍ତରାଗୀ ଚଉତିଶାଗୁଡ଼ିକରେ ପ୍ରତ୍ୟେକ ରାଗର ରଚନା ପରେ ଅର୍ଥାତ୍ ଚଉତିଶାର ୫, ୧୦, ୧୫, ୨୦, ୨୫, ୩୦ ଓ ଶେଷ ପଦରେ ଭଣିତି ଥାଏ । ବପ୍ରସିଂଘା ଚଉତିଶାର ପ୍ରତ୍ୟେକ ପଦରେ ଭଣିତି ରହିବା ଏକ ଅଦ୍ଭୁତ କଥା ( ସଂ. ୮ ) ।

ସାଧାରଣତଃ ଗୋଟିଏ ଚଉତିଶା ଗୋଟିଏ ନିର୍ଦ୍ଦିଷ୍ଟ ଛନ୍ଦ ବିଶିଷ୍ଟ । କିନ୍ତୁ ଷସ୍ପୂରାଗୀ, ସପ୍ତରାଗୀ ଆଦି ନାମରେ ଏକାଧିକ ଛନ୍ଦ ବିଶିଷ୍ଟ ଚଉତିଶା

ମଧ୍ୟ ମିଳୁଛି । କ୍ଷେତ୍ରବର ଭଞ୍ଜ ( ଘନ ଭଞ୍ଜ ? ) ଭଣିତ ସପ୍ତବର୍ଗୀ ଚଉତିଶା (୨) ଓ କୁଞ୍ଜବିହାରୀ ଭଞ୍ଜଙ୍କର ସଂଗୀତ ଗ୍ରନ୍ଥରେ ରଚିତ ଚଉତିଶା ଢଙ୍ଗର ରଚନା ମିଳୁଛି । ଗୋକୁଳ ନରେନ୍ଦ୍ର, ବାମଦେବ, ଉପେନ୍ଦ୍ର ଭଞ୍ଜ ଆଦିଙ୍କର ସପ୍ତବର୍ଗୀ ଚଉତିଶା ରହିଛି । ଗୋକୁଳ ନରେନ୍ଦ୍ରଙ୍କ ଚଉତିଶାଟି ଏଥି ଅନ୍ତର୍ଭୁକ୍ତ ( ସଂ. ୧୪ ) । ଉପେନ୍ଦ୍ରଙ୍କ ଉପଗ୍ରନ୍ଥରେ ଏକାଧିକ ସପ୍ତବର୍ଗୀ ଚଉତିଶା ରହିଛି । ଧନଞ୍ଜୟ ଭଞ୍ଜଙ୍କର 'ଚୌପଦୀ ଭୂଷଣ', ଉପେନ୍ଦ୍ର-ଭଞ୍ଜଙ୍କର 'ଚୌପଦୀ ଭୂଷଣ', କବିସୂର୍ଯ୍ୟଙ୍କର 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' ଓ 'ଚୌପଦୀ ଚନ୍ଦ୍ରିକା' ଆଦିରେ ଚଉତିଶାର କ୍ରମ ରକ୍ଷା କରାଯାଇଛି କିନ୍ତୁ ଗୋଟିଏ ଗୋଟିଏ ବର୍ଣ୍ଣକୁ ନେଇ ଗୋଟିଏ ଗୋଟିଏ ଚୌପଦୀ ରଚିତ ହୋଇଛି ।

ଚଉତିଶାର ରଚୟିତା ସାଧାରଣତଃ ଜଣେ ମାତ୍ର କବି । କିନ୍ତୁ 'ଜ୍ଞାନୋଦୟ ଚଉତିଶା'ଟି ତିନି ଜଣ କବିଙ୍କର କୃତ (ସଂ ୨) । ଏତେ କ୍ଷୁଦ୍ର ରଚନାକୁ ବିଭିନ୍ନ ବ୍ୟକ୍ତି ରଚନା କରିବା ଦୃଷ୍ଟାନ୍ତ ପ୍ରାଚୀନ ସାହିତ୍ୟରେ ଏକାନ୍ତ ବିରଳ । ଏକାଧିକ ବନ୍ଧୁ କବି ପୁରାଣ ଓ କାବ୍ୟ ରଚନା କରିବା ଜଣାପଡ଼ିଲାଣି । 'ବିଜୟ ଗୀତା' କୃଷ୍ଣଦାସ (କ) ଏବଂ ଗୋପୀନାଥ ଦାସଙ୍କର ଏବଂ 'ଅନୁରାଗବଲ୍ଲୀ' ଗ୍ରନ୍ଥଟି କବି ରାମଚନ୍ଦ୍ର ପଟ୍ଟନାୟକ ଓ ବିଷ୍ଣୁ ପଟ୍ଟନାୟକଙ୍କର ମିଳିତ ପ୍ରଚେଷ୍ଟାର ଫଳ ।

ବିଭିନ୍ନ ଚଉତିଶା ଛନ୍ଦରେ ମଧ୍ୟ ବୈଚିତ୍ର୍ୟ ଦୃଷ୍ଟ ହୁଏ । ପ୍ରାୟ ସକଳ ପ୍ରକାର ଓଡ଼ିଆ ଛନ୍ଦ ବିଶିଷ୍ଟ ଚଉତିଶା ଦୃଷ୍ଟ ହୁଏ । ଓଡ଼ିଶାର ପଲ୍ଲୀ ଅଞ୍ଚଳରେ ଉଦ୍ଭୂତ 'ଡେମାଳିଆ' (ସଂ ୯) ଓ 'ଡମାଳ' (ସଂ ୭) ଠାରୁ ଉଚ୍ଚାଙ୍ଗ ରାଗରାଗିଣୀ ପର୍ଯ୍ୟନ୍ତ ବିଭିନ୍ନ ରାଗର ଚଉତିଶା ରହିଛି । କେତେକ ଚଉତିଶାର ଛନ୍ଦ ସାଧାରଣ ପ୍ରଚଳିତ ନୁହେଁ (ସଂ ୨) ।

---

୨ । ଏହା ଚଉତିଶା ମଧୁଚକ୍ର ୨ୟ ଖଣ୍ଡରେ ସ୍ଥାନ ପାଇଛି । କିନ୍ତୁ ମୋର ସନ୍ଦେହ ହୁଏ କି ଚଉତିଶା ନାମଟି ସମ୍ପାଦକଙ୍କ କଳ୍ପନା ପ୍ରସୂତ, ମୂଳରେ ତାହା ନ ଥିଲା । ଏହା ଗୋଟିଏ ରଚନା ନ ହୋଇ ସାତଟି ଅଲଗା ଅଲଗା ଚଉପଦୀର ଏକ ସମାବେଶ ମାତ୍ର । ପୁଣି ସମ୍ପାଦକ ଭୁଲକ୍ରମେ ଅନ୍ୟ ଜଣେ କବି ଶ୍ୟାମସୁନ୍ଦରଙ୍କର ଚଉପଦୀଟିଏ ଆଣି ଏଥିରେ ଜବରଦସ୍ତରେ ଯୋଡ଼ି ଦେଇଛନ୍ତି ।

ଅପ୍ରଚଳିତ ଛନ୍ଦରେ ଚଉତିଶା ରଚିତ ହେବା ପରେ ସେହି ଚଉତିଶା ନାମରେ ସେହି ଛନ୍ଦଟି ପରିଚିତ ହେବା ଓଡ଼ିଆରେ ବହୁତ । 'କେଶବ କୋଇଲି ବାଣୀ' 'ଅକ୍ରୂର କୋଇଲି ବାଣୀ' 'ଉଦ୍ଧବ ଚଉତିଶା ବାଣୀ' 'କୃଷ୍ଣ କଳସା ବାଣୀ' 'ଗନ୍ଧ ଚଉତିଶା ବାଣୀ' ବା 'ଚଉତିଶା ବାଣୀ' 'ବିପ୍ରସିଂହା ଚଉତିଶା ବାଣୀ' 'ବିମ୍ବାଧର ଚଉତିଶା ବାଣୀ' 'ମଧୁପ ଚଉତିଶା ବାଣୀ' 'ହରି ଚଉତିଶା ବାଣୀ' ଆଦି ନାମରେ ପରିଚୟ ପାଇଥିବା ଛନ୍ଦଗୁଡ଼ିକ ସେହି ସେହି ଚଉତିଶାରୁ ଜନ୍ମିଛି । ତନ୍ମଧ୍ୟରୁ ବିଚିତ୍ର ରାମାୟଣ, ମଥୁରାମଙ୍ଗଳ ଆଦି ବହୁ ଗ୍ରନ୍ଥଗ୍ରନ୍ଥରେ ଉଲ୍ଲେଖଥିବା ବିପ୍ରସିଂହା ବାଣୀର ମୂଳ ଚଉତିଶା (ସଂ ୮) ଏଥି ସହ ସଂଯୁକ୍ତ । ବନମାଳି ଦାସଙ୍କର ଭଲମନ୍ଦ ଚଉତିଶା (ସଂ ୧୬) କୌଣସି ନିର୍ଦ୍ଦିଷ୍ଟ ଛନ୍ଦକୁ ଅନୁସରଣ ନକରି ଓଡ଼ିଆ ଢ଼ଗ ଢ଼ଙ୍ଗରେ ରଚିତ ହେବା ଆଉ ଏକ ବୈଚିତ୍ର୍ୟ । ସବୁଗୁଡ଼ିକ ଚଉତିଶା ଯେ କବିତାକାରର ଏହା ମଧ୍ୟ ନୁହେଁ । ନାରାୟଣ ଅବଧୂତ ସ୍ୱାମୀଙ୍କର ଚୁଦ୍ରସୁଧାନିଧି ମଧ୍ୟରେ ଏପରି ଚଉତିଶା ଢ଼ଙ୍ଗର ରଚନା ରହିଛି ।

ପାଠକଙ୍କ ଅବଗତି ପାଇଁ ଏଠାରେ ଓଡ଼ିଆର କ୍ଷୁଦ୍ରତମ ଚଉତିଶା ବିଷୟ ଲେଖୁଛୁ । କଥିତ ହୁଏ ଯେ ଉପେନ୍ଦ୍ର ଭଞ୍ଜ ଏକଦା କୌଣସି ରାଜଧାନୀକୁ ଭ୍ରମଣାର୍ଥେ ଯାଇଥିଲେ । ସେଠାର ରାଜା ତାଙ୍କ ଲାଗି ବସା-ସଞ୍ଜାର ଯୋଗାଡ଼ କରାଇଲେ । ତାଙ୍କ ବସାଘର ଆଗରେ ବଢ଼ିଥିବା ଘାସ ବୁଦା ସଫା କରିବା ଲାଗି ଜଣେ ମୂଲିଆ ନିଯୁକ୍ତ ହୋଇଥାଏ ଏବଂ ଉପେନ୍ଦ୍ର ଭଞ୍ଜ ପିଣ୍ଡାରେ ବସି ମୂଲିଆର କାର୍ଯ୍ୟ ଦେଖୁଥାନ୍ତି । ଏତିକି ବେଳକୁ ସ୍ଥାନୀୟ କେତେ ଜଣ ପଣ୍ଡିତ ଉପେନ୍ଦ୍ରଙ୍କ ପାଣ୍ଡିତ୍ୟ କଳନା କରିବା ଉଦ୍ଦେଶ୍ୟରେ ସେଠାକୁ ଆସିଲେ । ଆଗନ୍ତୁକମାନଙ୍କ ଆଗମନର ଉଦ୍ଦେଶ୍ୟ ଠଉରାଇ ନେଇ ଉପେନ୍ଦ୍ର ମୂଲିଆକୁ ଲକ୍ଷ୍ୟକରି କହିଲେ "କ, ଖଗା, ଘନେ ଙ୍ଗୁଛ, ଜେଝା ଞାଟ; ଠା ଡଢ଼ଣ ତଥି ଦଧି ନେ ପା, ଫାବେ ଭାମ ଜୋର, ଲବେ ଶଶା ସିଂହକ୍ଷ" । ମୂଲିଆଟା ବା ହାଣ୍ଡିଆ ଲୋକ ଥିଲା । ଏପରି ଲୋକଙ୍କୁ ଦକ୍ଷିଣ ଓଡ଼ିଶାରେ ଖଗା କହନ୍ତି । ଉପେନ୍ଦ୍ରଙ୍କ ବକ୍ତବ୍ୟର ମର୍ମ ହେଲା:— କରେ (କ), ଖଗା, ବଦଳ କରି ବୃକ୍ଷ ପ୍ରକା, ସଂସାର ରଙ୍ଗମଞ୍ଚରେ ଯାହାର ଯେଉଁ (ଜେଝା) ଅଭିନୟ (ଞାଟ), ଉଦ୍ଧତ୍ତ

(ଝ୍ଡ଼) ଝୋଳ (ଅଣ) ମିଶା ଭୋଜନ (ଠାଁ) ସାଙ୍ଗକୁ (ଛଥି) ଦହି (ଦଧି) ନେଇ (ନେଂ) ଲୁଭକର୍ (ପା ; ଖାଦ୍ୟ ପାଇଲେ ଖିଏର ଚାକର୍ (ଜୋର) ଲଭ୍ୟ ହେବ (ଫାବେ) ଏବଂ ସହଜରେ (ଲ୍ଭେ) ଶଶା ମଧ ସିଂହର ହନନକାରୀ (କ୍ଷ) ହେବ ।

ପୂର୍ବୋକ୍ତ ଚଉତିଶା ଉଙ୍ଗର ବକ୍ତବ୍ୟରେ ବର୍ଣ୍ଣମାଳାର କ ଠାରୁ କ୍ଷ ଯାଏ କ୍ରମାନୁସାରେ ରହିଛି କିନ୍ତୁ 'ଣ' ସ୍ଥଳେ 'ଅଣ' ଥିବା ପାଠକେ ଲକ୍ଷ୍ୟ କରିଥିବେ । 'ଣ' ଅକ୍ଷରଟି ଆଗରେ ରହି କୌଣସି ଅସମ୍ଭବ ହେତୁରୁ ଅତି ପ୍ରାଚୀନ ଚଉତିଶା ଗୁଡ଼ିକରେ 'ଣ' ଶବ୍ଦର ପ୍ରଥମାକ୍ଷର ନହୋଇ ଦ୍ୱିତୀୟାକ୍ଷର ହେଉଥିଲା ଏବଂ ସେଠାରେ ପ୍ରଥମ ଅକ୍ଷରର ସ୍ଥାନ କୌଣସି ସ୍ୱରବର୍ଣ୍ଣ ପାଇଁ ନିର୍ଦ୍ଦିଷ୍ଟ ରହୁଥିଲା । ଏହି ସଙ୍କଳନର ସଂ. ୧ ଠାରୁ ୫ ପର୍ଯ୍ୟନ୍ତ ଚଉତିଶାରେ ଏହି ପ୍ରବୃତ୍ତି ଲକ୍ଷ୍ୟକରାଯାଇପାରେ । ପରେ କିନ୍ତୁ 'ଣ' ଅକ୍ଷର ସ୍ଥଳେ କେବଳମାତ୍ର ସ୍ୱରବର୍ଣ୍ଣ ବା ବିକଳ୍ପେ 'ନ' ରହିଲେ ଚଳେ ବୋଲି ଧରାଗଲା । 'ଣ' ପରି 'ଙ' ସ୍ଥଳେ 'ନ' ବା 'ଙ' ବା 'ଅ' ଏବଂ 'ଞ' ସ୍ଥଳେ 'ନ' ବର୍ଣ୍ଣ ବ୍ୟବହୃତ ହେଉଥିଲା । ପୂର୍ବେ ଜ କାର ଓ ଯକାର ମଧ୍ୟରେ ତଥା ଶକାର, ଷକାର ମଧ୍ୟରେ କୌଣସି ଭେଦ ଧରାଯାଉ ନଥିଲା । ପ୍ରାଚୀନ କାଳରେ କ୍ଷ କାରରେ ଉଚ୍ଚାରଣ ଛକାର ପ୍ରାୟ ବୋଲି ଗ୍ରହଣ କରାଯାଉଥିବା ହେତୁରୁ ଏହି ଦୁଇ ବର୍ଣ୍ଣମଧ୍ୟରେ ମଧ୍ୟ ଭେଦ ସ୍ୱୀକୃତ ହୋଇନାହିଁ । କ୍ରମେ କ୍ଷ କାରର ଉଚ୍ଚାରଣ ପରିବର୍ତ୍ତିତ ହୋଇ 'ଖ୍ୟ' ଭଳି ହୋଇଯିବା ୧୭ ଶତାବ୍ଦୀର ମଧ୍ୟଭାଗର ପରେ ରଚିତ ଚଉତିଶା ଗୁଡ଼ିକରୁ ବାରି ହୋଇପାଏ । ଓଡ଼ିଆ ବର୍ଣ୍ଣର ଧ୍ୱନିତତ୍ତ୍ୱ ବିଷୟରରୁ ଚଉତିଶା ଗୁଡ଼ିକ ବହୁ ଉପାଦେୟ ତଥ୍ୟ ଯୋଗାଇପାରେ । ସେ ସବୁ ପୂର୍ଣ୍ଣାଙ୍ଗ ଆଲୋଚନା ପାଇଁ ଏଠାରେ ସ୍ଥାନ ନାହିଁ ।

ଏତ ଗଲା ଚଉତିଶାର ରୂପ ସମ୍ପର୍କରେ । ଚଉତିଶାର ଉପଜୀବ୍ୟ ସମ୍ପର୍କରେ ଆଲୋଚନା କଲେ ମଧ୍ୟ ଅନୁରୂପ ବୈଚିତ୍ର୍ୟ ଦେଖିବାକୁ ମିଳେ । ସର୍ବାଧିକ ସଂଖ୍ୟକ ଚଉତିଶା ଆଦି ରସାତ୍ମକ । ଏହି ଆଦିରସାତ୍ମକ ଚଉତିଶା ଗୁଡ଼ିକରୁ ଅଧିକାଂଶରେ ନାୟିକା ନାୟକ ଭାବରେ ଗୋପୀ ଓ ଗୋପୀନାଥ କିମ୍ବା ରାଧା ଓ ରାଧାକାନ୍ତ କିମ୍ବା ସୀତା ଓ ରାମ ଭଳି ପୌରାଣିକ ଚରିତ୍ର ସ୍ଥାନ ପାଇଥିଲେ ସୁଦ୍ଧା ରସପରିବେଷଣ

ବିଷୟରରୁ ସେ ସବୁ ଅନ୍ୟ ଆଦିରସାତ୍ମକ ଚଉତିଶାଠାରୁ ଭିନ୍ନନୁହେଁ । ପୌରାଣିକ ଚରିତ୍ରର ନାମୋଲ୍ଲେଖ ସେଠାରେ ଏକ ଅଙ୍ଗ ମାତ୍ର ଅଥଚ ତହିଁ ରୂପାୟିତ ମିଳନର ଉଲ୍ଲାସ, ବିଚ୍ଛେଦର ବ୍ୟଥା, ମାନସିକ ଚିନ୍ତାର ବିଶ୍ଳେଷଣ, ଅଭିସାରର ଆବେଗ କମ୍ବା ପ୍ରକୃତି ଚିତ୍ରଣ ବା ଅଙ୍ଗସୌଷ୍ଠବ ବର୍ଣ୍ଣନା ସେ ଯୁଗର ପ୍ରେମକବିତାର ସବୁ ଲକ୍ଷଣରେ ପୁଷ୍ଟିତ । ଏହି ଶ୍ରେଣୀର୍ ଚଉତିଶା ମଧ୍ୟରେ ଅଧିକାଂଶ ଗୋପୀକୃଷ୍ଣ ବା ରାଧାକୃଷ୍ଣ ସମ୍ପର୍କିତ ଓ ମିଳନ ଅପେକ୍ଷା ବିଚ୍ଛେଦ କାଳକୁ ନେଇ ରଚିତ । କୃଷ୍ଣ ମଥୁରାକୁ ଯିବା ପର ଅବସ୍ଥା ଚଉତିଶାଗୁଡ଼ିକର ପ୍ରଧାନ ଅବଲମ୍ବନ— କୃଷ୍ଣ ଉଦ୍ଧବଙ୍କୁ ଦୂତ ରୂପେ ଗୋପକୁ ପଠାଇବା, ଉଦ୍ଧବ ସହ ଗୋପୀ-ମାନଙ୍କର କଥୋପକଥନ ଏବଂ ଗୋପୀମାନଙ୍କ ବାର୍ତ୍ତା ନେଇ ଉଦ୍ଧବର ମଥୁରା ପ୍ରତ୍ୟାବର୍ତ୍ତନ ସମ୍ପର୍କରେ ୩୦ ରୁ ଉର୍ଦ୍ଧ୍ୱ ଚଉତିଶା ମିଳିବ [ଏ ସଞ୍ଚୟନର ସଂ. ୮] । ଏହି ବିଚ୍ଛେଦ କାଳରେ ଗୋପୀ ବା କୃଷ୍ଣ କାମପୀଡ଼ା ଜନିତ ନିଜର ମନର ଆବେଗ ଅନ୍ୟକୁ ଚନ୍ଦ୍ର, ମେଘ, ହଂସ ଭଳି କାଳ୍ପନିକ ଦୂତ ମାଧ୍ୟମରେ ଜଣାଇବା ଲାଗି ଯାହା ସବୁ ପ୍ରକାଶ କରନ୍ତି ତାହା ମଧ୍ୟ ବହୁ ସଂଖ୍ୟକ ଚଉତିଶାର ମୂଳ ବିଷୟ ହୋଇଛି [ଏ ସଞ୍ଚୟନର ସଂ. ୬, ୧୭] । ଅଳ୍ପ ସଂଖ୍ୟକ ଚଉତିଶାରେ ଗୋପଲୀଳା କାଳମଧ୍ୟରେ ମଧ୍ୟ ଘଟିଥିବା ସାମୟିକ ବିରହ ଆଧାର ହୋଇଛି । [ଏ ସଞ୍ଚୟନର ସଂ. ୧୧] । ରାଧାକୃଷ୍ଣ ବା ଗୋପୀକୃଷ୍ଣଙ୍କ ମିଳନ ବର୍ଣ୍ଣନା କରୁଥିବା ଚଉତିଶା ସଂଖ୍ୟାରେ ଅଳ୍ପ । ସୀତା ରାମ ସମ୍ପର୍କିତ ଚଉତିଶା ମଧ୍ୟ ସଂଖ୍ୟାରେ କମ୍ [ଏ ସଞ୍ଚୟନର ସଂ. ୧୨] ଏବଂ ଏହା କେବଳ ବିରହକାଳୀନ ଅବସ୍ଥାକୁ ଚିତ୍ରଣ କରେ । ସାଧାରଣ ଆଦି-ରସାତ୍ମକ ଚଉତିଶାରେ ମଧ୍ୟ ବିରହକାଳ ମୁଖ୍ୟ ଆଧାର ଏବଂ ଏଠାରେ ମଧ୍ୟ ଚନ୍ଦ୍ର, ମେଘ, ପବନ, ହଂସ ପ୍ରଭୃତି କଳ୍ପିତ ଦୂତ ସାଙ୍ଗକୁ

(୮) କେତେକ ପଲ୍ଲୀଗୀତରେ କୋଇଲିକୁ ଦୂତ ରୂପେ କଳ୍ପନା କରାଯାଇଛି ଯଥା କେଶବ କୋଇଲି, କାହ୍ନୁ କୋଇଲି, କାନ୍ତକୋଇଲି, କୋଇଲି ଚଉତିଶା ଆଦିରେ କୋଇଲିର ଦୂତପଣ ସ୍ପଷ୍ଟ ନୁହେଁ । ସେହିପରି ଜ୍ଞାନ ଉଦୟ କୋଇଲିରେ କୋଇଲି ଏକ ମୂକ ଶ୍ରୋତା ମାତ୍ର । ଜାଇଫୁଲ ବଉଳ ଆଦି ମଧ୍ୟ ମୂକ ଶ୍ରୋତା ଥାଇ ଅନେକ ଚଉତିଶାରେ ଭାବ ବ୍ୟକ୍ତ ହୋଇଛି ।

ଓଟାଇ ଏକ ମାଧ୍ୟମ ରୂପେ ବ୍ୟବହୃତ ହୁଏ (୮) [ଏ ସଙ୍କଳନର ୨୧] । କୌଣସି ଦୂତପ୍ରେରଣର ଆଶ୍ରୟ ନ ନେଇ ମନୋକଥା ପ୍ରକାଶ କରୁଥିବା [ସଂ. ୧୯] ତଥା କେତେକାଂଶରେ ଆଖ୍ୟାନ ମୂଳକ ହୋଇଥିବା [ସଂ. ୧୪] ଚଉତିଶା ଅଛନ୍ତି । କିନ୍ତୁ ମିଳନ ବର୍ଣ୍ଣନା କରିବା ଚଉତିଶା ମଧ୍ୟରେ ପ୍ରେମିକର ଘୃଣ୍ଟୁକ୍ତି ବହୁ ଚଉତିଶାର ବିଷୟବସ୍ତୁ ହୋଇଛି [୧୮] ।

ଆଦିରସାତ୍ମକ ଚଉତିଶା ପଛକୁ ଭକ୍ତି ମୂଳକ ଚଉତିଶା ସଂଖ୍ୟା ବହୁଳ । ଏହା ମଧ୍ୟରୁ କେତେକ ବ୍ରହ୍ମଙ୍କୁ ଉପରେ ଆଶ୍ରିତ [ସଂ. ୨, ୩, ୬, ୧୦], ଜଗନ୍ନାଥଙ୍କୁ କେନ୍ଦ୍ରକରି ଅନେକ ବିଖ୍ୟାତ ଚଉତିଶା ରଚିତ ହୋଇଛି [ସଂ. ୫], ଶିବ, ଦୁର୍ଗା, ବିଷ୍ଣୁ, କୃଷ୍ଣ ଆଦିଙ୍କୁ ସ୍ତୁତି ରୂପରେ ଅଥବା ସବୁ ଦେବା ଦେବୀଙ୍କୁ ଭକ୍ତର ଦୁଃଖ ନିବେଦନ ଭାବରେ ମଧ୍ୟ ବହୁ ସଂଖ୍ୟକ ଚଉତିଶା ମିଳେ [ସଂ. ୧୫,୨୦],

ଆଖ୍ୟାନ ମୂଳକ ଚଉତିଶା ସଂଖ୍ୟାରେ ଅଳ୍ପ ହେଲେ ମଧ୍ୟ ଚଉତିଶାର ଏକ ମୁଖ୍ୟ ବିଭାଗ । ଷୋଡ଼ଶ ଶତାବ୍ଦୀର 'ମଥୁରା ବିଜେ' ଚଉତିଶା, ଭକ୍ତଚରଣ ଦାସଙ୍କର 'କଳାକଳେବର ଚଉତିଶା' ଭଳି କେତେକ ଚଉତିଶାରେ କୃଷ୍ଣଚରିତ ସ୍ଥାନ ପାଇଥିବା ହେତୁ ସେଥିରେ ଆଦିରସର ପୁଟ ଦିଆଯାଇଛି । 'ଶକୁନ୍ତଳା ଚଉତିଶା'ରେ ଶକୁନ୍ତଳା ଦୁଷ୍ମନ୍ତ ବିବାହ ଉପାଖ୍ୟାନ ସ୍ଥାନ ପାଇଛି ଏବଂ ଆଦିରସର ମାତ୍ରା ଏଠାରେ ଅତି କମ୍ [ସଂ. ୧], 'ଗଉରୀ କଳସା' ରଚନାଟି ଓଡ଼ିଆ ସାହିତ୍ୟର ଏକ ଅନବଦ୍ୟ ସୃଷ୍ଟି; ଏଥିରେ ଆଦିରସର ସ୍ଥାନ ନାହିଁ [ସଂ. ୪], 'ମାୟାମୃଗ ଚଉତିଶା' ଆଦି ଏହି ଶ୍ରେଣୀୟ ଆଉ କେତେକ ଚଉତିଶା ରହିଛି ।

ଉପେନ୍ଦ୍ର ଭଞ୍ଜଙ୍କର ରସପଞ୍ଚକରେ ଅଳଙ୍କାର ଶାସ୍ତ୍ରୋକ୍ତ କେତେକ ଲକ୍ଷଣ ବର୍ଣ୍ଣନା କରୁଥିବା ଚଉତିଶା ରହିଛି । ତନ୍ମଧ୍ୟରୁ ବୃଷ ବୋହିଦ ବର୍ଣ୍ଣନା କରୁଥିବା ଚଉତିଶାଟି ଏହି ସଙ୍କଳନ ଭୁକ୍ତ ହୋଇଛି [ସଂ. ୧୩], ବନାଇ ଦାସଙ୍କର 'ଭଲମନ୍ଦ ଚଉତିଶା' ଭଳି କର୍ତ୍ତବ୍ୟା କର୍ତ୍ତବ୍ୟ ସୂଚନା ଦେଉଥିବା ରଚନା ପ୍ରାଚୀନ ସାହିତ୍ୟରେ ଏକାନ୍ତ ଦୁର୍ଲ୍ଲଭ [ସଂ. ୧୬], ଲୋକନାଥଙ୍କ 'କା ଚଉତିଶା'ଟି ଏକ ମାଳିକା ।

ନବରସ ମଧ୍ୟରୁ ଆଦ୍ୟରସ ଶୃଙ୍ଗାରକୁ ଛାଡିଲେ ଅନ୍ୟରସଗୁଡ଼ିକର ପ୍ରାଧାନ୍ୟ ଚଉତିଶାରେ ନାହିଁ । ବାତ୍ସଲ୍ୟ ରସକୁ ଅନ୍ୟତମ ରସ ଭାବରେ ସାଧାରଣତଃ ଗ୍ରହଣ କରାଯାଇ ନାହିଁ । ବାତ୍ସଲ୍ୟରସ ପରିବେଷଣ କରୁଥିବା ସୁପ୍ରସିଦ୍ଧ 'କେଶବ କୋଇଲି' ଭଳି ଅତିଅଳ୍ପ ସଂଖ୍ୟକ ଚଉତିଶା ମିଳୁଛି । ତନ୍ମଧ୍ୟରୁ ବନବାସ ଚଉତିଶା ଏଥିରେ ଅନ୍ତର୍ଭୁକ୍ତ ହୋଇଛି [ସଂ. ୯]

ପ୍ରାପ୍ତ ସବୁ ଚଉତିଶା ସ୍ୱୟଂସମ୍ପୂର୍ଣ୍ଣ ରଚନା, କିନ୍ତୁ ଏପରି କେତେକ ଚଉତିଶା ରହିଛି ଯାହାକି ଏକ ବୃହତ୍ତର ରଚନାର ଏକ ଭାଗ ମାତ୍ର । ଚଉତିଶା ରଚନାରେ ସିଦ୍ଧହସ୍ତ କୃଷ୍ଣଦାସ 'ରାସକେଳି' ମଧ୍ୟରେ ଏପରି ଏକ ଚଉତିଶା ମିଶାଇ ରଖିଛନ୍ତି । ଛାନ୍ଦକାବ୍ୟରେ ଚଉତିଶାକୁ ମିଶାଇ ଦେଲେ ଚଉତିଶାଟି ଏକ ସ୍ୱତନ୍ତ୍ର ଛାନ୍ଦ ହେବା କଥା । 'ବିଦଗ୍ଧ ଚିନ୍ତାମଣି', ଗୋପୀନାଥ ଦାସଙ୍କ 'ରାମଚନ୍ଦ୍ର ବିହାର'ର ଆଦି ଅନେକ ଛାନ୍ଦ ଗ୍ରନ୍ଥରେ ଚଉତିଶା ଏକ ଛାନ୍ଦ ରୂପ ନେଇଛି । ଏହି ସଞ୍ଚୟନ ଭୁକ୍ତ ସ୍ୱର୍ଗଗାମୀ ଚଉତିଶାଟି ମଧ୍ୟ କୌଣସି ବୃହତ୍ତର ରଚନାର ଅଙ୍ଗ ହେବା ଅନୁମେୟ କିନ୍ତୁ ଏଥିରେ ତିନୋଟି ରାଗ ବ୍ୟବହୃତ ହୋଇଥିବା ହେତୁରୁ ଏହାର ମୂଳଟି ଛାନ୍ଦଗ୍ରନ୍ଥ ନ ହୋଇ ଚଉପଦୀ ଆକାରର କାବ୍ୟ ହେବା ସନ୍ଦେହ ହୁଏ [ସଂ. ୧୪], କିନ୍ତୁ ମୂଳ ବୃହତ୍ତର ରଚନାଟି ସମ୍ପର୍କରେ ମୁଁ କିଛି ଜାଣି ନାହିଁ ।

ପରିଶେଷରେ ଏହି ସଞ୍ଚୟନର କ୍ଷେତ୍ର ନେଇ ଦୁଇପଦ ଏବଂ ସମ୍ପାଦନାର ରୀତି ନେଇ ଦୁଇପଦ ଲେଖିବା ଆବଶ୍ୟକ ମନେ କରୁଛି । ଚଉତିଶାର ରୂପଗତ ତଥା ଭାବଗତ ବୈଚିତ୍ର୍ୟକୁ ପ୍ରକାଶିତ କରାଇବା ଲାଗି ଏହାର ଯୋଜନା କଲି । ପୂର୍ବରୁ ପ୍ରକାଶିତ ରଚନାଗୁଡ଼ିକୁ ପୁଣି ଥରେ ପ୍ରକାଶିତ କରାଇବା ମୋର ଇଚ୍ଛା ନ ଥିଲା । ଏହି କାରଣରୁ 'କେଶବ କୋଇଲି' 'ଅଭିମାଣ ଚଉତିଶା' 'କଳାକଳେବର ଚଉତିଶା' 'କମଳଲୋଚନ ଚଉତିଶା' 'ମନବୋଧ ଚଉତିଶା' ଭଳି ମହାମୂଲ୍ୟ ରତ୍ନଗୁଡ଼ିକୁ ମୁଁ ଛୁଇଁ ପାରିଲି ନାହିଁ । ଏଥିପାଇଁ ମୁଁ ଦୁଃଖିତ । ଓଡ଼ିଆ ସାହିତ୍ୟରେ ନବଯୁଗର ପ୍ରବର୍ତ୍ତନ ପରେ ଏକ କବନ ରୂପ ଭାବେ ଚଉତିଶାର ସ୍ଥାନ ନାହିଁ ବୋଲି ମୋର ମତ ଯଦି ବା ମାନକଣ୍ଠଙ୍କ ପରି ଖ୍ୟାତନାମା ମଧ୍ୟ ସାଧୁଦେଶୀ କାବ୍ୟରେ ଚଉତିଶା ଲେଖି ଯାଇଛନ୍ତି ।

[ ଲକ୍ଷ୍ମୀକାନ୍ତଙ୍କ ସୁରଚିତ ଚଉତିଶାଗୁଡ଼ିକର ମୂଲ୍ୟ ସ୍ୱତନ୍ତ୍ର, କାରଣ ସେ ନିଜକୁ ରଚନା ପାଇଁ ଚଉତିଶାକୁ ପ୍ରାଚୀନଢଙ୍ଗ ରୂପରେ ଗ୍ରହଣ କରିଛନ୍ତି ସିନା ତାଙ୍କର ସାମସାମୟିକ ଗୁରୁତ୍ୱ ଅଛି ବୋଲି ବୁଝେ । ] ଏଣୁ ଗତ ଶହେ ବର୍ଷ ମଧ୍ୟରେ ରଚିତ କୌଣସି ରଚନାକୁ ସ୍ଥାନ ନ ଦେବା ଲାଗି ସ୍ଥିର କଲି । ସବୁ ପ୍ରକାର ଢଙ୍ଗର ତଥା ସବୁ ପ୍ରକାର ଭାବଦ୍ୟୋତକ ଚଉତିଶାରୁ ଅନ୍ତତଃ ଗୋଟିଏ ଜଣ ଦେବାପାଇଁ ଚେଷ୍ଟା କରିବା ଫଳରେ ବାଧ ହୋଇ 'ଚକାର ଚଉତିଶା' ଓ 'ଢଂଖ ଚଉତିଶା' ଭଳି ପ୍ରକାଶିତ ଚଉତିଶା ଏଥିମଧ୍ୟକୁ ଆସିଗଲା । ଭବିଷ୍ୟତର ଗବେଷକ ମାନଙ୍କୁ ସହାୟକ ହେବ ଭାବି ମୁଁ ପ୍ରକାଶିତ ପାଠକୁ ନଦେଇ ମୋ ପାଖରେ ଥିବା ପୋଥି ପାଠକୁ ଦେଲି । କିନ୍ତୁ 'ଗଉରୀ କଳସା'ଟି 'କଳସ ଚଉତିଶା' ନାମନେଇ ପ୍ରକାଶିତ ଓ ସୁପରିଚିତ ହୋଇଥିଲେ ମଧ୍ୟ ତାହାର ପ୍ରାଧାନ୍ୟ ଦୃଷ୍ଟିରୁ ତଥା ମିଳିଥିବା ପାଠର ସାର୍ଥକ୍ୟ ଦୃଷ୍ଟିରୁ ତାହାକୁ ଏଥିରେ ସ୍ଥାନ ଦେଲି; ଅନ୍ୟଥା ଏହି ସଙ୍କଳନ ହାସ୍ୟରସ ଶୂନ୍ୟ ହୋଇପଡ଼ନ୍ତା । [ 'ଗଉରୀ କଳସା' ପରି 'କୃଷ୍ଣ କଳସା' (ବିଚିତ୍ରରାମାୟଣ ଆଦି ବହୁଗ୍ରନ୍ଥରେ ଏହି ବାଣୀର ଉଲ୍ଲେଖ ଅଛି); 'ରୁକ୍ମିଣୀ କଳସା' (ଏହାର ପୋଥି ମ୍ୟୁଜିଅମ୍‌ରେ ଅଛି) ଆଦି 'କଳସା' ରଚନା ରହିଛି । 'କଳସା' ରଚନା ଗୁଡ଼ିକରେ ଦେବ-ଦେବୀଙ୍କ ବିବାହ ବର୍ଣ୍ଣିତ ହୁଏ ଏବଂ ବିବାହ ବେଳେ ଏହି 'କଳସା' ଗୀତ ପଢାଯିବା ରୀତି ଏବେ ବି କେତେକ ପ୍ରାଚୀନ ରାଜବଂଶରେ ଚଳୁଛି । ସାରଳା ମହାଭାରତର 'ବେଦ ମନ୍ତ୍ର ଯୁଗତେ' ସେ ପଢ଼ିଲେ କଳସା ସୂକ୍ତ ଅଛି ଯେ କଳସା ଗୀତ ବିବାହ ବେଳେ ପଢ଼ାଯିବା ରୀତିଟି ସୁପ୍ରାଚୀନ । ଏଥିରୁ ସ୍ପଷ୍ଟ ହେଉଛି ଯେ 'କଳସା ଚଉତିଶା'ର ମୌଳିକ ନାମ ଗଉରୀ କଳସା । 'କଳସା' ସମ୍ପର୍କରେ ସବିସ୍ତାର ଆଲୋଚନା ମୁଁ ଦିଗନ୍ତ ସାହିତ୍ୟପତ୍ରର ୯ମ ବର୍ଷ ୧-୩ ସଂଖ୍ୟା (ଫେବ୍ରୁଆରୀ ୧୯୬୮) ଅନ୍ତର୍ଗତ 'ସାରଳା ଦାସଙ୍କ କଳସା' ପ୍ରବନ୍ଧରେ କରିଅଛି । ] ଗଉରୀ କଳସା ଭିନ୍ନ ଅନ୍ୟ ସବୁ ଚଉତିଶାର ପୋଥି ମୋ ନିକଟରେ ଅଛି ।

ପ୍ରତ୍ୟେକ ଚଉତିଶାର ଆଦ୍ୟଭାଗରେ ସେହି ଚଉତିଶାର କବିଙ୍କ ସାମାନ୍ୟ ପରିଚୟ ଉଲ୍ଲେଖ କରିଛି । ଅଧ୍ୟୟନର ସୁବିଧାପାଇଁ ଚଉତିଶା-ଗୁଡ଼ିକୁ ରଚନା କାଳ ଅନୁକ୍ରମେ ସଜାଇ ରଖିବା ଚେଷ୍ଟା କରିଛି ।

ଏଥିରେ ସ୍ଥାନ ପାଇଥିବା କବିମାନଙ୍କ ମଧ୍ୟରୁ ଅଧିକାଂଶଙ୍କ କାଳ ସନ୍ଦେହ ଶୂନ୍ୟ ଭାବେ ନିରୂପଣ କରିବା ସହଜ ହୋଇନାହିଁ—ସେ ସ୍ଥଳେ ଭାଷା ଇତ୍ୟାଦିରୁ ତାହାର ମୋଟାମୋଟି କାଳର କଳ୍ପନା କରିଅଛୁ । ଏହି ସଞ୍ଚୟନର ଶେଷ ଉତନଟି ଚଉତିଶା ନ ହୋଇଥିଲେ ମଧ୍ୟ କ ଠାରୁ କ୍ଷ ଯାଏଁ ୩୦ଟି ବର୍ଣ୍ଣକୁ ନେଇ ଚଉତିଶା ଢଙ୍ଗରେ ରଚନା ମଧ୍ୟ କେମିତି ଥିଲା ତାହା ଜଣାଇବା ଲାଗି ତାକୁ ଅନ୍ତର୍ଭୁକ୍ତ କଲି [ସଂ. ୨୩.] । ଚଉତିଶା ଗୁଡ଼ିକ ମଧ୍ୟରେ ତାହା ସ୍ଥାନ ନ ପାଇ ଇଚ୍ଛାକରି ଜଣେ ଅପେକ୍ଷାକୃତ ଅର୍ବାଚୀନ କବିଙ୍କର ଏହି ରଚନାଟିକୁ ନିର୍ବାଚନ କରିଛି ।

ପାଠୋଦ୍ଧାର କଲାବେଳେ ଯେଉଁ ସବୁ ନିୟମ ଅନୁସରଣ କରିଛି ତାହା ଜଣାଇଦେବା ଆବଶ୍ୟକ । ପୋଥିରେ ଶବ୍ଦ ଶବ୍ଦ ମଧ୍ୟରେ ଫାଙ୍କ ସାଧାରଣତଃ ନଥାଏ । ଶବ୍ଦକୁ ଅଲଗା କରିବା ତଥା ପଦ ଓ ଚରଣ ଓ ପର୍ବକୁ ବର୍ତ୍ତମାନ ପ୍ରଚଳିତ ଢଙ୍ଗରେ ସଜାଇବା ମୋତେ କରିବାକୁ ହୋଇଛି । ପୋଥିରେ ପାଠରେ ଯଥାସମ୍ଭବ କମ୍ ହସ୍ତକ୍ଷେପ କରିବାକୁ ସଂକଳ୍ପବଦ୍ଧ ହୋଇ ମୁଁ ଏ କାର୍ଯ୍ୟରେ ହାତଦେଲି । କିନ୍ତୁ ପ୍ରାଚୀନ ଲେଖା ରୀତିର ଅବସ୍ଥା ବିଚାରରୁ ପାଠୋଦ୍ଧାର ପାଇଁ କେତେକ ସାଧାରଣ ନିୟମ ପାଳନ କରିବା ଆବଶ୍ୟକ ହୋଇଛି । ପୋଥିରେ ଇକାର ଓ ଈକାର (ଅକ୍ଷର, ମାତ୍ରା ଉଭୟ) ମଧ୍ୟରେ, ଉକାର ଓ ଊକାର (ଅକ୍ଷର, ମାତ୍ରା ଉଭୟ) ମଧ୍ୟରେ, ଋ ବା ୠ ବର୍ଣ୍ଣ ଓ 'ରୁ' ମଧ୍ୟରେ, ଌ ବା ୡ ଓ 'ଲୁ' ମଧ୍ୟରେ, ଏ ବର୍ଣ୍ଣ ଓ 'ଯେ' ମଧ୍ୟରେ, ଜ ବର୍ଣ୍ଣ ଓ ଯ ବର୍ଣ୍ଣ ମଧ୍ୟରେ, ଯ ଫଳା ଓ ବ ଫଳା ମଧ୍ୟରେ ଏବଂ ଶ, ଷ ଓ ସକାର ମଧ୍ୟରେ ଭେଦ ସ୍ୱୀକାର କରାଯାଏ ନାହିଁ । ପାଠୋଦ୍ଧାର ବେଳେ ଏହି ସବୁ ବର୍ଣ୍ଣ ମାତ୍ରା ବା ଫଳା ଆଧୁନିକ ଶୈଳୀରେ ନ ଲେଖିଲେ ଯାହା ହେବା କଥା ସେପରି ଲେଖିଛି । ତତ୍ସମ ଓ ତଦ୍ଭବ ଶବ୍ଦ ସ୍ଥଳେ ବାନାନ ରୂପ ସଂସ୍କୃତାନୁସାରୀ କରିଛି ଏବଂ ଅନ୍ୟ ଶବ୍ଦ ମୂଳେ ଓଡ଼ିଆ ଭାଷାର ପ୍ରକୃତି ଅନୁରୂପେ ଲେଖିଛି । ପୋଥିରେ ଅନୁସ୍ୱାରର ସ୍ଥାନ ଅନେକ ଗୋଟିଏ ବର୍ଣ୍ଣ ପରେ ରହିଥିଲା ଯେପରି ସମାସ ସ୍ଥଳେ ସଂସାର ମଧ୍ୟ ଲେଖା ହୋଇ-ଥିଲା । ବେଳେ ବେଳେ ବର୍ଗର ପଞ୍ଚମ ବର୍ଣ୍ଣ ସହ ସେହି ବର୍ଗର ଅନ୍ୟ ବର୍ଣ୍ଣ ଯୋଗବଶତଃ ସୃଷ୍ଟ ଯୁକ୍ତାକ୍ଷର ସ୍ଥଳେ ଯୁକ୍ତାକ୍ଷରର ପୂର୍ବବର୍ତ୍ତୀ ବର୍ଣ୍ଣରେ

ଅନାବଶ୍ୟକ ଭାବେ ଚନ୍ଦ୍ରବିନ୍ଦୁ ଦିଆଯାଉଥିଲା, ଯେପରି—ଚନ୍ଦ୍ର ସ୍ଥଳେ ଚଂନ୍ଦ୍ର, ଟଙ୍କ ସ୍ଥଳେ ଟଂଙ୍କ, ଲମ୍ବ ସ୍ଥଳେ ଲଂମ୍ବ । ଏହିସବୁକୁ ପାଠୋଦ୍ଧାର ବେଳେ ଯଥାସମ୍ଭବ ପରିବର୍ତ୍ତିତ କରିଛି । ଉଲ୍ଲିଖିତ ନିୟମାନ୍ତର୍ଗତ ପରିବର୍ତ୍ତନ ସ୍ଥଳେ ପୋଥିପାଠକୁ ପାଠକଙ୍କୁ ଜଣାଇବା ଆବଶ୍ୟକ ବୋଲି ମନେ କରିନାହିଁ । ଅଳ୍ପକେତୋଟି ଚଉତିଶାର ପାଠୋଦ୍ଧାର ଲାଗି କେତେକ ଅଧିକ ନିୟମର ବଶବର୍ତ୍ତୀ ହେବାକୁ ହୋଇଛି ଏବଂ ସେହି ଅଧିକା ନିୟମକୁ ସେହି ସେହି ଚଉତିଶାର ଟୀକାର ଆଦ୍ୟରେ ସୂଚିତ କରିଛି । ଏହାଭିନ୍ନ ପୋଥିପାଠରେ ସାମାନ୍ୟ ପରିବର୍ତ୍ତନ କଲେ ମଧ୍ୟ ତାହା ସେହି ପୃଷ୍ଠା ନମ୍ବର ପାଦଟୀକାରେ ଲେଖିଅଛି । ପାଦଟୀକାର ସଂଖ୍ୟାଟି ସେହି ଚଉତିଶାର କ୍ରମିକ ଧାଡ଼ି ସଂଖ୍ୟା (ପଦ ସଂଖ୍ୟା ନୁହେଁ) ଏବଂ ସଂଖ୍ୟା ପର ଶବ୍ଦଟି ମୁଁ ବଦଳାଇଥିବା ପାଠ ଓ ତା'ହାପରେ "—" ଚିହ୍ନପରେ ଥିବା ଶବ୍ଦଟି ପୋଥିପାଠ । ପ୍ରତି ପୃଷ୍ଠାର ବାମ ପାର୍ଶ୍ୱରେ ଲେଖାଥିବା ସଂଖ୍ୟାଟି ସେହି ଧାଡ଼ିର କ୍ରମିକ ସଂଖ୍ୟା ଯାହାର ଗଣନା ଚଉତିଶା ଆରମ୍ଭରୁ ଶେଷ ଯାଏଁ ଗଡ଼ିଛି ।

ସ୍ଥାନେ ସ୍ଥାନେ ପୋଥିର ପାଠ ଅଂଶଟି ନଷ୍ଟ ହେବା କାରଣରୁ ମୋତେ ଅନୁମାନ କରି ପାଠ ଯୋଗ କରିବାକୁ ହୋଇଛି । ଏହି ଅଂଶକୁ ଚନ୍ଦ୍ର ବନ୍ଧନୀ ମଧ୍ୟରେ ନିର୍ଦ୍ଦିଷ୍ଟ କରିଛି । କିନ୍ତୁ ଯେଉଁଠାରେ ଲେଖନକାର ଭୁଲବଶତଃ କିଛି ଛାଡ଼ି ଯାଇଥିବା ସ୍ଥିର କରି ପାଠଯୋଗ କରିଛି ସେହି ସ୍ଥଳେ ସେହି ଅଂଶକୁ ବର୍ଗ ବନ୍ଧନୀ ମଧ୍ୟରେ ସୀମିତ କରିଛି ।

ପ୍ରତ୍ୟେକ ଚଉତିଶା ଶେଷକୁ ଟୀକା ଯୋଗ କରିଛି କିନ୍ତୁ ମୋର ବିନୀତ ଅନୁରୋଧ ଏହି ଯେ ପାଠକେ ଟୀକାର ଆଶ୍ରୟ ନେବାଲାଗି ବ୍ୟଗ୍ର ହୁଅନ୍ତୁ ନାହିଁ । ଟୀକାକୁ ଆଶ୍ରୟ କଲେ ରସାସ୍ୱାଦନର ଆବେଗ ନିତାନ୍ତ ହ୍ରାସ ପାଏ, ଏହା ମୋର ସ୍ଥିର ମତ । ନିଜେ ନିଜେ ଗୋପନ ତଥ୍ୟ ଆବିଷ୍କାର କଲେ ମନରେ ଯେଉଁ ଆନନ୍ଦ ଜନ୍ମେ, ତାହା ଅନ୍ୟ ଜଣେ ବାଟ କଢ଼ାଇ ଚହ୍ନାଇଦେଲେ ମିଳେ ନାହିଁ । ମୁଁ ଅନୁଭବ କରୁଛି ଯେ ମୁଁ ଦେବ ଜମାରୁ ଟୀକା ଦିଅନ୍ତୁ ନାହିଁ ତାହାହେଲେ ପ୍ରାଚୀନ ସାହିତ୍ୟ କ୍ଷେତ୍ରରେ ମୋ' ପରି ଅଧ୍ୟୟନ ପାଗଳ ଆଉ କେତେ ଜଣ ବାହାରନ୍ତେ । କିନ୍ତୁ

ଓଡ଼ିଆରେ ଗୋଟିଏ ସୁଦ୍ଧା ପୂର୍ଣ୍ଣାଙ୍ଗ ଓଡ଼ିଆ ଅଭିଧାନ ନଥିବା ହେତୁରୁ ସାଧାରଣ ପାଠକଙ୍କ ପାଇଁ ଅର୍ଥ ବ୍ୟାଖ୍ୟା କରିବା ଆବଶ୍ୟକ ବୋଲି ମୋର ବନ୍ଧୁ ବର୍ଗ ଅନୁରୋଧ କରିବା ହେତୁରୁ ଅନିଚ୍ଛାସତ୍ତ୍ୱେ ଟୀକା ଦେଇଛି । ତେଣୁ ପ୍ରାଚୀନ ଓଡ଼ିଆ ଭାଷା ଓ ସାହିତ୍ୟ ନେଇ ଅଗ୍ରଣୀ ପାଠକଙ୍କୁ ମୁଁ ବାରଣ କରୁଛି ଯେ ସେମାନେ ଟୀକା ଉପରେ ନିର୍ଭର କରନ୍ତୁ ନାହିଁ । କାରଣ କେତୋଟି ଅଭିବ୍ୟକ୍ତି ଅବୋଧ ହେଲେ ବିଶେଷ କିଛି ଯାଏ ଆସେ ନାହିଁ କିନ୍ତୁ ତାହା ମନର ଉତ୍କଣ୍ଠାକୁ ବଢ଼ାଇଦେବ ଏବଂ ଅନ୍ୟ ପ୍ରାଚୀନ ରଚନା ପ୍ରତି ନିଜର ଅଜ୍ଞାନକୁ ଦୂର କରାଇବା ଲାଗି ଆଗ୍ରହ ଜନ୍ମିବ । ଅବଶ୍ୟ ମୁଁ ଆଶା କରୁଛି ଏହି ଶ୍ରେଣୀର ପାଠକଙ୍କ ପାଖରେ ଖଣ୍ଡିଏ ଓଡ଼ିଆ ଅଭିଧାନ (ଗୋପୀନାଥ ନନ୍ଦଙ୍କ ଅଭିଧାନଟି ହେଲେ ଭଲ) ଓ ଅମରକୋଷ ରହିଥିବ । ଚଉତିଶା ଶେଷର ଟୀକା ଅଂଶର ସଂଖ୍ୟାଟିମାନ ଚଉତିଶାଟିର ପଦ ସଂଖ୍ୟା (ଧାଡ଼ି ସଂଖ୍ୟା ନୁହେ) ଯାହାକି ପୃଷ୍ଠାର ଦକ୍ଷିଣ ଭାଗରେ ସେହି ପଦ ଶେଷକୁ ଲିଖିତ ଅଛି । ସଂଖ୍ୟାପର ଶବ୍ଦଟି ସେହି ସଂଖ୍ୟକ ପଦର ଏବଂ ଏହାପରେ '—' ଚିହ୍ନ ପରେ ତାହାର ଟୀକା ଦତ୍ତ ଅଛି । ଯେଉଁଠାରେ ଶବ୍ଦଟି ଅନ୍ୟ ରୂପରେ ପ୍ରାଚୀନ ସାହିତ୍ୟରେ ସମଧିକତଃ ବ୍ୟବହୃତ ହୋଇଥିବାର ସନ୍ଦେହ କରିଛି ସେଠାରେ ତୃତୀୟବନ୍ଧନୀ ମଧ୍ୟରେ ସେହି ରୂପାନ୍ତରକୁ ଦେଇଛି ।

ଗତ ପନ୍ଦର ବର୍ଷ ଧରି ପ୍ରାଚୀନ ରଚନା ସଂଗ୍ରହ କରିବା, ଅଧ୍ୟୟନ କରିବା, ତଥା ସେ ସବୁ ସମ୍ପର୍କରେ କିଛି କିଛି ଲେଖିବା ମୋର ଜୀବନ ହୋଇ ଯାଇଛି । ମୋର ପୋଥିଭଣ୍ଡାରରେ ଶତ ଶତ ପ୍ରାଚୀନ ପୋଥି ରହିଛି । ପ୍ରତାପରୁଦ୍ରଦେବଙ୍କ ସଭାକବି ନରସିଂହ ସେଣଙ୍କ 'ଗୋପକେଳି', ସାରଳା ମହାଭାରତ ପୂର୍ବବର୍ତ୍ତୀ ରଚନା 'ବିଚିତ୍ର ରାମାୟଣ' ଭଳି ବହୁ ଦୁର୍ଲ୍ଲଭ ରତ୍ନକୁ ମୁଁ ଆହରଣ କରି ପାଖରେ ରଖିଥିବା ମୋର ପରମ ସୌଭାଗ୍ୟ । କେତେକ ପ୍ରାଚୀନ ରଚନାକୁ ସମ୍ପାଦିତ କରି ପ୍ରକାଶିତ କରାଇବା ଇଚ୍ଛାରେ ଗୋପକେଳିକୁ ବହୁଶ୍ରମପୂର୍ବକ ସମ୍ପାଦିତକରି ପ୍ରକାଶନ ପାଇଁ ଓଡ଼ିଶା ସାହିତ୍ୟ ଆକାଡେମୀକୁ ବର୍ଷେତଳେ ଦେଲି । ଆକାଡେମି ତାକୁ ମୋ ଠାରୁ ମଗାଇ ନେଇ ଆଜସୁଦ୍ଧା ତାହା ନେଇ କୌଣସି ସିଦ୍ଧାନ୍ତ କରି ନଥିବା ହେତୁରୁ ମୁଁ ନିତାନ୍ତ ହତୋତ୍ସାହ ହୋଇଥିଲି ।

ଏପରିବେଳେ ମୋର ସହପାଠୀ ବନ୍ଧୁ ପ୍ରକାଶକ ଶ୍ରୀ ସତ୍ୟାନନ୍ଦ ଦାଶ ଏକ ଚଉତିଶା ସଙ୍କଳନ ପ୍ରକାଶ କରିବାଲାଗି ପ୍ରତିଶ୍ରୁତି ଦେବା ମୋତେ ବିଶେଷ ଉତ୍ସାହ ଦେଲା । ତାଙ୍କୁ ଏଥିଲାଗି ମୁଁ ଧନ୍ୟବାଦ ଦେଲେ ଯଥେଷ୍ଟ ହେବ ନାହିଁ ; ଏହା ସ୍ୱୀକାର କରୁଛି । ମୋର ଭ୍ରାତୃପ୍ରତିମ ସାହିତ୍ୟିକ ବନ୍ଧୁ ଏହି ପ୍ରକାଶନ ଲାଗି ବହୁ ଶ୍ରମ ସ୍ୱୀକାର କରିଥିବା ଶ୍ରୀ ରମାକାନ୍ତ ମିଶ୍ର ମୋତେ ଋଣୀ କରାଇଲେ—ଚିରଦିନ ପାଇଁ । ଏ ପ୍ରକାର ଋଣରୁ ମୁକ୍ତ ହେବା ଲାଗି ମୁଁ ଏହା ଲିପିବଦ୍ଧ କରୁନାହିଁ । ଅନେକଙ୍କଠାରୁ ଏପରି ଋଣ ଆଣି ଅନ୍ୟାନ୍ୟ ଅନେକଙ୍କୁ ଏପରି ଋଣ ଦେବା ଲାଗି ମୋର ଅଭିଳାଷ ଅଛି ବୋଲି ଜଣାଇବା ଲାଗି ଏତିକି ଲେଖିଲି ।

ପାଠକମାନେ ଏହି ପ୍ରକାଶନରେ ତ୍ରୁଟି ଦେଖିଲେ ଅଥବା ଏହାର କୌଣସି ଅଭାବ ଲକ୍ଷ୍ୟ କଲେ ଆଇନ ବିଭାଗ, ଭୁବନେଶ୍ୱର ଠିକଣାରେ ମୋତେ ଜଣାଇବେ ବୋଲି ଅନୁରୋଧ କରୁଛି । ମୋର ଜ୍ଞାନ ସୀମିତ କିନ୍ତୁ ଅଜ୍ଞାନ ଅସୀମ । ଏଣୁ ଏପରି ଚିଠି ମୋର ଜ୍ଞାନର ସୀମାକୁ ବଢ଼ାଇ ପରମ ଆନନ୍ଦ ଦେବ ।

ଭୁବନେଶ୍ୱର
୨୫—୮—୭୮

ସଚ୍ଚିଦାନନ୍ଦ ମିଶ୍ର

ସଂ: ୧

# ଶକୁନ୍ତଳା ଚଉତିଶା

( ପୋଥିରେ—ସୁକତଳା ଚଉତିସା )

ରଘୁ ଅରକ୍ଷିତ

[ ପାର୍ଶ୍ୱୀତା ଭକ୍ତରେ ପ୍ରତାପରୁଦ୍ର ଦେବଙ୍କ ସମସ୍ତର ଯେଉଁ ରଘୁ ଅରକ୍ଷିତଙ୍କ ଚରିତ ବର୍ଣ୍ଣିତ ହୋଇଛି ଏହି ଚଉତିଶାଟିର କର୍ତ୍ତା ସେ ହେବା ସମ୍ଭବ । ଭଣିତର 'ଅରକ୍ଷିତ ରଘୁ ଚୈତନ ସମ୍ମୁଖେ' ବଳରେ ମଧ୍ୟ କବି ଚୈତନ୍ୟଙ୍କ ଗୋଷ୍ଠୀର ଭକ୍ତ ବୋଲି ସ୍ଥିର କରି ହେବ । ଏହା ଉଲ୍ଲେଖଯୋଗ୍ୟ ଯେ ଚୈତନ୍ୟଙ୍କ ନାମ ସମସାମୟିକ ଅନ୍ୟ କୌଣସି ଓଡ଼ିଆ ଲେଖାରେ ସ୍ଥାନ ପାଇନାହିଁ । ମାଦଳା ପାଞ୍ଜିର ଗୋଟିଏ ଅର୍ବାଚୀନ ପାଠ ( 'ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶ'ରେ ପ୍ରକାଶିତ ଗୌଣ ପାଠ ) ମଧ୍ୟରେ ପ୍ରତାପରୁଦ୍ର ଦେବଙ୍କ କାଳର ଅନ୍ୟାନ୍ୟ ଓଡ଼ିଆ ଭକ୍ତମାନଙ୍କ ନାମ ମଧ୍ୟରେ 'ରଘୁ ଅର୍ଖିତେ ହରିଦାସ ଗୋସାଇଁ' ଲେଖା ରହିଛି । ବଳରାମ ଦାସ ଓ କାହ୍ନୁ ଦାସଙ୍କ ସହ ମିଶି ରଘୁ ଅରକ୍ଷିତ ଜ୍ଞାନୋଦୟ ଚଉତିଶା ( ସଂ: ୨ ) ଲେଖିଛନ୍ତି । ]

( ଦିଶ ବରାଡ଼ୀ—କଳସା ବାଣୀରେ ଗାଇବା )

କହଇ ମୁଁ କଉତୁକ ଶୁଣ ସୁଦ୍ୟଜନ ।
କୁରଙ୍ଗୀ ଗୋଡ଼ାଇ ଗଲେ ଦୁଷନ୍ତ ରାଜନ ॥
କଣ୍ୱ ମୁନି ଆଶ୍ରମ ପାରୁଶେ ଉପବନ ।
କଉତୁକ ପାଇ ରଜା ରୁହାଇଲେ ଯାନ ॥ ୧ ॥

୫ ଖଗର କରଣ ନାହିଁ ପଲ୍ଲବର ଛାଇ ।
ଖେଳ କରୁଛନ୍ତି ଶାରି ଶୁଆ ମେଳ ହୋଇ ॥
ଖେଳ ଖେଳ କୁରଙ୍ଗୀ କସ୍ତୁରୀ ଚରୁଛନ୍ତି ।
ଖୁଦ୍ରାଥ ଲଗିଲେ ଟେକୁ ପଦ ସେ ଚରନ୍ତି ॥ ୨ ॥

ଗଚ୍ଛେ ଗଚ୍ଛେ ଗନ୍ଧନ ସୁନ୍ଦର ଫଳଭର ।
୧୦ ଗଘନ କୁସୁମ ଶାଖା ଲାଗିଛି ଭୂମିର ॥
ଗନେକରି ମଦୁକଳର କରୁଛନ୍ତି ଗୋନ ।
ଗନ୍ଧନ ମଦୁପ ଦୁନ୍ଦ ଶୁଭଇ ଚନ୍ଦ୍ରଳ ॥ ୩ ॥

ଘଟଣ ପୋଖୋଶ୍ରି ପାଶେ [ ଘାଂଠ ] ସଟିକର ।
ଘଂଚପନ୍ତ ହୋଇ ତନ୍ତ୍ର ଲାଗିଛି ମନ୍ଦାର ॥
୧୫ ଘର ପ୍ରାପ୍ତେ ମାଳଣ୍ଠି ମାଧେବୀ ଲତାମାନ ।
ଘନ ଘନ ମଲ୍ଲୁଳ ମଜୁର ଦେନ୍ତ ସନ ॥ ୪ ॥

ନର୍ମଳ ଜଳରେ ଫୁଟି ଅଛଇ କମଳ ।
ନରନ୍ତରେ ମଧୁକରେ ମଦୁପାନେ ଭୋଳ ॥
ନଉଡ଼ି ହୁଅନ୍ତି ତନ୍ତ୍ର ପଦ୍ମଗର ଗୁଣ୍ଡି ।
୨୦ ନରନ୍ତରେ ମଦୁପାନେ ନ ପାରନ୍ତି ଉଡ଼ି ॥ ୫ ॥

ଚନ୍ଦନ ଅଗର ଚୂତ ଲଭଙ୍ଗ ଲତାର ।
ଚଳୁଛନ୍ତି ମନ୍ଦ ମନ୍ଦ ଲଗିଣ ସମୀର ॥
ଚଉଦ୍ଦଗ ପୂରିଣ ସେ କରଇ ଆମୋଦ ।
ଚଂଚଳ କରଇ ମୁନିଜନଙ୍କ ସମ:ଦ ॥ ୬ ॥

୨୫ କ୍ଷଣେ କ୍ଷଣେ ପ୍ରଶଂସା କରଇ ମହୀପତି ।
ଛାଡ଼ି କି ନନ୍ଦନବନ ଗଡ଼ୁଅଛି କ୍ଷିତି ॥
କ୍ଷଣେ ଗ୍ରାଡ଼ିବାକୁ ଯେ ତାହାର ମନ ନାହିଁ ।
ଛୁଛଟକ କରି ତାକୁ ଭେଟାଇଲା ବନ୍ଧ ॥ ୭ ॥

ଯୁ[illegible]ଷ୍ଠ ଉତନ ସୁକନ୍ୟା କୋଳେ ସଖୀ ।
୩୦ ଯିବା ଗୃଲ ଋଷିଙ୍କର ନୂଆ ଚୋଠା ଦେଖି ॥
ଯେଉଁଯଉ ବୃକ୍ଷରେ ନେ[ଇ] ଦେଲ[କ] ପାଣି ।
ଯତନ କରିଣ ଗୃଲ ଆସିବା ମିଠଣୀ ॥ ୮ ॥

---

୧୭. ନର୍ମଳ—ନିର୍ମଳ । ଫୁଟି—ପୁଠୀ । ୧୯. ହୁଅନ୍ତି—ହୁଅଚ ।
୨୪. ଚଂଚଳ—ଚଚଳ । ୨୬. ନନ୍ଦନବନ—ଚନ୍ଦନବନ । ୨୮. ତାକୁ—ତାକ ।

ଝଂଡକାରେ ବାହାର ହୋଇଲେ ସଙ୍ଗ ସଖୀ ।
ଝଲକ ବୟୋସ୍ୟ ସେ ସବୁଏ ଚନ୍ଦ୍ରମୁଖୀ ॥
୩୫ ଝୀନବାସ ଝୀନତନୁ ପୀନପୟୋଧରୀ ।
ଝୁରବଲନ କୁସୁମବାଣେ [ସେ] ସୁକୁମାରୀ ॥୯॥

ମାରକୁମ୍ଭ ଘେନି ଘରୁ ହୋଇଲେ ବାହାର ।
ଜମିଳା ଦଶଇ ମୁଖ ଚନ୍ଦ୍ରମା ଆକାର ॥
ମାରଜ ବୋଲଣ ଏକ ମଧୁକର ଆସି ।
୪୦ ନଭୟେ ହୋଇଣ ସୁକନ୍ତଳା ଅଛି ବସି ॥ ୧୦ ॥

ଟହ ଟହ ହସିଣ ବୃକ୍ଷରେ ଦେନ୍ତି ପାଣି ।
ଟମାଳ କରଣ ବୋଲେ ଏକଇ ମିତଣୀ ॥
ଟସକର ମତେ ତୋତେ ଚମ୍ପିଲା ଭ୍ରମର ।
ଟାକିଥାଅ ଅବଶ୍ୟ ଆସିବେ ନୃପ ବର ॥ ୧୧ ॥

୪୫ ଠୁଳ ହୋଇ ବସିଣ ଭଣନ୍ତି ସବୁ ନାରୀ ।
ଠିକ କରି ପୂଜିବା ଗୋ ଶଙ୍କର ଗଉରୀ ॥
ଠିକ ଫଳ ପୁଷ୍ପ ନେଇ କରିବା ଗୋ ସେବା ।
ଠିଆ ହୋଇ ମାଗିବା ଗୋ ସୁକନ୍ତଳା ଦେବା ॥ ୧୨ ॥

ଡାଳ ଛୋଡ଼ାଇ ଫଳ ପୁଷ୍ପନ୍ତ ତୋଳିଲେ ।
୫୦ ଡାଳମ୍ବ ବୃକ୍ଷର ତଳେ ଖଣ୍ଡିଏ ଲିପିଲେ ॥
ଡମ୍ବୋରୁଧରକୁ ସବୁ ସଖୀ କଲେ ପୂଜା ।
ଡାଳ ହିଡ଼ାଡ଼ରେ ରହି ଦେଖୁଛନ୍ତି ରଜା ॥ ୧୩ ॥

ଢାଳେଣ ଘେନିଲେ କରେ କୁସୁମ ଆଞ୍ଜୋଳି ।
ଢାଳିଲେ କାମେଶ୍ୱ ଚନ୍ଦ୍ରଶିଖର ମଉଳି ॥
୫୫ ଢାଳେ ସାହା ବୋଇଲେ ଗୋ ଅଛଇ ବଶ୍ୱର ।
ଢଳ ମହାଦେବଙ୍କ ଶିରରୁ ପୁଷ୍ପ ପଡ଼ ॥ ୧୪ ॥

---

୩୫. ଝୀନପୟୋଧରୀ—ପିନପଡୋ୍ୟାଧରୀ । ୫୧. ସବୁ—ସବ । ୫୩. ଢାଳେଣ —ଢାଳିଣ; ଅଞ୍ଜୋଳି—ଅଜୋଳି । ୫୬. ପଡ—ପଡ଼ି ।

ଆଣିକର ପୁଷ୍ପ ସୁକନ୍ତଳା ଶିରେ ଲଗ୍ନ
ଅଣିଲେ ଛଟକେ ସଖୀ ଏଥକୁ କଡ଼ାଇ ॥
ଆଣିମଣି ପଦ ପାଇ ହୁଅ ପାଟରାଣୀ ।
୬୦ ଏଣିଆଡ଼ୁ କଥାମାନ ପାସୋର ମିତଣୀ ॥ ୧୫ ॥

ତହିର ଉତାରେ [ଯେ] ତୋଟାରେ ବୁଲୁଛନ୍ତି ।
ତୋଳନ୍ତି ମାଧେବୀ ପୁଷ୍ପ ବୋଲନ୍ତି ଯୁବତୀ ॥
ତୋହୋର ବସ୍ତ୍ର ନିକଟ ହୋଇଲା ଗୋ ଆସି ।
ତୁନିକରି ମୋହୋ ଆଗେ କହିଗଲେ ଋଷି ॥ ୧୬ ॥

୬୫ ଥିର ହୋଇ ସକଳ ଦେଖଇ ମହୀପତି ।
ଥମ୍ଭି ଯେ ହୋଇଲା ତାର ଅଧଇର୍ଯ୍ୟ ମତି ॥
ଥରହର ଅଙ୍ଗ ତାର କୁସୁମ ଶର ଘାଏ ।
ଥୋକାଏକ ବେଳେ ଚଇତନ କଲା ଦେହେ ॥ ୧୭

ଦଇବେଣ ସୁବର୍ଣ୍ଣ ପୁତୁଳି ଜଗ କରି ।
୭୦ ଦେଲା ନେଇଁ ଋଷିଙ୍କ ଆଶ୍ରମେ ଜ ବଗୃର ॥
ଦେଖୁଛନ୍ତି ଅମରାବତୀ ପୁରେ ଯେତେ ନାରୀ ।
ଦଶ ଅଂଶେ ଅଧିକ ଅଟଇ ସେ କୁମାରୀ ॥ ୧୮ ॥

ଧିକ କଲା ମହୀତରେ ଗୋ ଯେତେ ସୀମଥିନୀ ।
ଧିକ କଲା ମାନସର ବରୁଣ ହଂସମା ॥
୭୫ ଧିକ କଲା କୁରଙ୍ଗୀ କେଶରୀ ଧରାଧର ।
ଅଧିକ ହୋଇଲା ତାକୁ ମନମଥ ଶର ॥ ୧୯ ॥

ନବଯୁବା ଯୁବତୀ ଜାଣଇ ରତିରସ ।
ନୟନ ଯୁଗଳ ତାର ଜୀବନକୁ ଫାଶ ॥
ନିଧମ ଅଗ୍ନିରେ ପଶି ହୋଇଲେ ଗୋ ପିଅ ।
୮୦ ନିଶ୍ଚୟେ ଜାଣିଲ ନୃହନ୍ତି ଋଷି ଝିଅ ॥ ୨୦ ॥

---

୫୯. ଅଣିମଣିପଦ—ଆଣୀମଣୀପାଦ । ୭୨. ଅଂଶେ—ଅଶେ ।
୭୩. ସୀମଥିନୀ—ସିମଥନ ।

ପଶିଲ୍ଲ ପଶିଲ୍ଲ ହାଣ୍ଠ ଶୁଭିଲ୍ଲ ଶବଦ ।
ପଳାବନ୍ତ ସ୍ରବ ସଖୀ ପରମ ବିସ୍ୟାଦ ॥
ପଳାଇ ପଶିଲେ ସୁକନ୍ତଳା ଯେତେ ସଖୀ ।
ପଛଆଡ଼େ ପୁରୁଷ ରତନ ଏକ ଅଚ୍ଛୁ ॥ ୨୧ ॥

୮୫ ଫରୁଣୀ ହୋଇଣ ଗୋ ସବୁର ତନ୍ବ ମତ
ଫୁଟିଲ୍ଲ ମାଳତୀ ପ୍ରାୟେ ସୁକନ୍ତଳା ଶତ ॥
ଫେଡ଼ି ଲ୍ଲଜେ ସଖୀଙ୍କ ଯେସନ କହୁଲ୍ଲଇ ।
ଫୁଲବଙ୍ଗି ପାଦରେ ବହ୍ନିଲ୍ଲ ବୋଲି କହୁ ॥ ୨୨ ॥

ବସନ ଯତନେ ସଖୀ କଣ୍ଠରେ ଲଗାଇ ।
୯୦ ବନ୍ଧଭାବ ହୋଇଣ ରାଜନ:ମୁଖ ରୁହିଁ ॥
ବହଇ ପବନ ଯେବହ୍ନ ବୁଲଇ କମଳ ।
ବଢ଼ିଲ୍ଲ ମଦନ ନଦୀ ହୋଇଲ୍ଲ ଅଥଳ ॥ ୨୩ ॥

ଭାସିଗଲ୍ଲ ଧୈର୍ଯ୍ୟ ବୁଡ଼ିଲ୍ଲ ଚଇତନ ।
ଭାସିଲ୍ଲ ବିବେକ ବନ୍ଧ ଦୁଇଙ୍କର ମନ ॥
୯୫ ଭଲମନ୍ଦ ନ ଜାଣି ହୋଇଲେ ଅନୁରାଗୀ ।
ଭରାନ୍ତ ଫିଟିଲ୍ଲ ଭଲ୍ଲ ମନ୍ମଥ ଲାଗି ॥ ୨୪ ॥

ମଧୁ ମୁଖ ଗୃହିଣ ବୋଲଇ ଏକ ସଖୀ ।
ମହତ ପୁରୁଷ ଗୋ ତୋଷରେ ରହିଅଚ୍ଛୁ ॥
ମହୀପତି ପରାୟେ ମକୁଟ ମଣ୍ଡଳର ।
୧୦୦ ମାଳତୀ ଫୁଟିଲ୍ଲ ଜାଣି ଅଇଲ୍ଲ ମଧୁ[କ]ର ॥ ୨୫ ॥

ଯାଇଛନ୍ତି ଅନେକ ଧୂରକୁ ଆଜ ମୁନି ।
ଯିବା ରୂଲ ଅପୂର୍ବ ପଦାର୍ଥମାନ ଘେନି ।
ଜାଣୁ ଜାଣୁ ସ୍ନୁଜା ତାକୁ [ନ] କଲେକ ମିତଣୀ ।
ଜାଣିଲେ କୋପ କରିବେ ତୋତେ ମାହାମୁନି ॥ ୨୬ ॥

---

୮୭. କହୁଲଇ—କହୁଲାସଇ । ୯୧. ଯେବହ୍ନ—ଚେଜଣ୍ଡେ । ୯୩. ଭାସିଗଲ୍ଲ ଧୈର୍ଯ୍ୟ ବୁଡ଼ିଲ୍ଲ—ଭାସିଗଲାଧୈର୍ଯ୍ୟ ବୁଡ଼ିଲା । ୯୫. ହୋଇଲେ—ହୋଇଲା । ୯୯. ମଣ୍ଡଳର—ମଣ୍ଡଳିଲା । ୧୦୦ ଫୁଟିଲ୍ଲ—ଫୁଟିଲା ।

୧୦୫ ରମଣୀ ଘେନଲେ ଅଗ୍ର ଚନ୍ଦନ ପୁଷ୍ପ ଫଳ ।
ରହିଲ ଚହଳ ହୋଇ ତଳେ ବୃକ୍ଷ ତଳ ॥
ରମଣୀର ମୁଖ ଗୃହ୍ନି ବୋଲନ୍ତି ରାଜନ ।
ରହରେ ସୁନ୍ଦେଶ୍ଚ ଆମ୍ଭେ ପୁଚ୍ଛିବୁ ବଚନ ॥ ୨୭ ॥

ନିଜ ଭାବ ସାଦୃଶ ହକ୍କୁଟେ ଯୋଡି ମଥା ।
୧୧୦ ନିଜ ଭାବେ ଦୁଷନ୍ତ ନୃପତି କହେ କଥା ॥
ଲେଉଟିଲ କପା ତୁମ୍ଭେ କାହାର କୁମାରୀ ।
କାହାକୁ କରିବେ ବୋଲି ଅଛନ୍ତି ବିଗୁର ॥ ୨୮ ॥

ବୋଲନ୍ତି ସୁବେଶ୍ଚ କନା କଣ୍ବ ମୁନିଙ୍କର ।
ଆମ୍ଭେ ଲେଉଟିବା ଯେ ତୁମ୍ଭଙ୍କୁ ସତକାର ॥
୧୧୫ ବରିବେ କାହାକୁ କେବା ଆମ୍ଭେ ତ ନ ଜାଣି
ବରିବେ ଦୁଷନ୍ତ ନୃପତିଙ୍କ ବୋଲି ପୁଣି ॥ ୨୯ ॥

ଶତେ ତୁମ୍ଭ ଅମିଅ ପାଇଲା ପ୍ରାୟେ ମନ ।
ଶୁଣରେ ସୁନ୍ଦେଶ୍ଚ ଆମ୍ଭେ ଦୁଷନ୍ତ ରାଜନ ॥
ସତ ପ୍ରତିପାଳ ମୋର ଫଳିଲା ଏଠାର ।
୧୨୦ ହଦୃଷ୍ଟି କରିଣ ଦେଖ ଶିରରେ ସିନ୍ଦୂର ॥ ୩୦ ॥

ହନ୍ଦେଶ ପାଇଣ ତନ୍ତ୍ର ସଲଜିତ ବାମା ।
ଶିରରୁ ଅଂଚଳ କାଢ଼ି ପ୍ରଣମ୍ୟି ତ ହମା ॥
ସଂଭେଟି ହୋଇଣ ସୁକନ୍ୟଳା ଯେତେ ସଖୀ ।
ଛାଡ଼ିଲେ ମନର ତାପ ନୃପତିଙ୍କ ଦେଖି ॥ ୩୧ ॥

୧୨୫ ସହଚଶ୍ଚ ଯାଇଣ କହିଲେ ମୁନିବର ।
ଝାଟିକାରେ ବହନେ ଅଇଲେ ମୁନି ଘର ॥
ପ୍ରତ୍ୟକ୍ଷେ ଦେଖିଲେ ମୁନି ଦୁଷନ୍ତ ନୃପତି ।
ସାନନ୍ଦେ ସାଗରୁ ଚିତ୍ତ ଆଣିଲେ ତଡ଼ିତ ॥ ୩୨ ॥

---

୧୦୫. ଫଳ—ଫୁଲ । ୧୧୯. ଏଠାର—ଏଠାରେ ।

ହରଷେ ଦୁଷନ୍ତ ସୁକନ୍ତଳା କଲେ ବନ୍ଦ୍ର ।
୧୩୦ ହର ଦୁର୍ଗା ପ୍ରାପ୍ତେ କ ଦଶିଲେ ଦୁଏ ଶୋଭ ॥
ହରଷେ ଆକୁଳ ମୁନ ବ୍ୟାକୁଳତ ଭାଷ ।
ହରିବ ଅପ୍ରାଧ ସୁକନ୍ତଳା କ୍ଷେ ଦୋଷ ॥ ୩୩ ॥

ଛଛନ୍ଦେ ସୁବର୍ଣ୍ଣ ଆଣି ଅର୍ଘ୍ୟ ବନ୍ଦାଇଲେ ।
ଛଟକ କଣ୍ଠେ ଶ ବନ୍ଧ ବଧାନ ସାରିଲେ ॥
୧୩୫ କ୍ଷୀରୋଦ୍ରୁ ନନ୍ଦନୀ ପତି ଚରଣ କମଳେ ।
ନମେ ଅରକ୍ଷିତ ଭଗୁ ଚୈତନ ସଗୁଳେ ॥ ୩୪ ॥

---

୧୩୨. ବ୍ୟାକୁଳତ ଭାଷ—ବ୍ୟାକୁଳ ସ୍ୱର ।

ଟୀକା :—

[ ଯେଉଁ ପୋଥିରୁ ଏହି ଚଉତିଶାର ପାଠୋଦ୍ଧାର କରାଯାଇଛି ତାହାର ଲେଖନକାଳ ଜଣାଯାଉ ନାହିଁ । ଏହି ପୋଥିର ଅଧିକା ବିଶେଷତ୍ୱ ହେଉଛି ଏଥିରେ 'ଛ' ଅକ୍ଷରଟି ଜମାରୁ ବ୍ୟବହୃତ ହୋଇ ନାହିଁ । 'ଷ' ଓ 'ଛ' ଉଭୟ ପାଇଁ 'ଷ' ଲେଖାଯାଇଛି । 'ଲ' ଅକ୍ଷରଟି ମାତ୍ର ଥରେ ( ୧୭ ପଦର 'କଲ ଦେବେ'ରେ ) ପ୍ରୟୋଗ କରାଯାଇଛି । ଅନ୍ୟତ୍ର ଲ ଓ ଳ ଉଭୟ ପାଇଁ 'ଳ' ଅକ୍ଷରହିଁ ଲିଖିତ ରହିଛି । ଏଠାରେ ପାଦଟୀକା ନ ଦେଇ ମଧ୍ୟ 'ଷ' ରୁ 'ଛ' ତଥା 'ଳ' ରୁ 'ଲ'ର ପାଠୋଦ୍ଧାର କରିଛୁ । ଅନେକତ୍ର ଅନୁସ୍ୱାରର ଅଭାବ ଓ ଅଳ୍ପପ୍ରାଣ ମହାପ୍ରାଣ ବର୍ଣ୍ଣ ମଧ୍ୟରେ ଓଲଟପାଲଟ ହେତୁରୁ ଏହି ପାଠର ଶବ୍ଦରୂପ ପ୍ରାମାଣିକ ବିବେଚିତ ହେବ ନାହିଁ । ଉଲ୍ଲିଖିତ ଚନ୍ଦ୍ରବନୀ ମଧ୍ୟରୁ ପାଠ ପ୍ରାଚୀନ ଓଡ଼ିଆରେ ଚଳୁଥିଲା । ]

୧. ମୁ—ମୁଁ (ମୁଂ); ସୁଗ୍ୟ—ସୁଜ୍ଞ (ସୁଗଂ୍ୟ); ଦୁଷନ୍ତ—ଦୁଷ୍ମନ୍ତ; ପାରୁଶେ—ପାର୍ଶ୍ୱେ; ରୁହାଇଲେ—ରଖାଇଲେ ।

୨. ନାହ୍ନ—ନାହିଁ (ନାହ୍ନିଂ); ପଲବ—ପଲ୍ଲବ; ଖେଜ—ବ୍ୟାପି, ଖେଢ ଖେଢ—ଖେଦା ଖେଦା, ଖେଜା ଖେଜା; ଖୁଦ୍ରାଥ—କ୍ଷୁଧାର୍ତ୍ତି ।

୩. ଗଣ୍ଡେଳବର—ଗୋଲଦ୍ୱାର ( ଗୋଲେକର ); ମଦୁକର—( ମଧୁକର ) ମଦୁପ—(ମଧୁପ), ଦୁଜ—ଦ୍ୱିଜ (ଦୁଜ), ଶୁବଇ—ଶୁଭଇ ।

୪. ଘଟଣ—ସୁନ୍ଦର; ପୋଖୋଶ—ପୁଷ୍କରଣୀ (ପୋଖରୀ); ସଟିକ—ସ୍ଫଟିକ; ଘଂଚଟନ୍ତ—ଘନଚ୍ଛବରେ; ମାଧେବୀ—ମାଧବୀ; ମରୁଲ—ହଂସ (ମରାଳ); ମଜୁର—ପକ୍ଷୀବିଶେଷ, ମୟୂର (ମଂଜୁର); ଦେନ୍ତ—ଦଅନ୍ତ; ସନ—ସ୍ୱନ (ସୁନ) ।

୫. ମଦୁ—(ମଧୁ); ତହ୍ନ—(ତହ୍ନିଂ); ନଉଡ—ଅଜାଡ ।

୬. ଲଭଙ୍ଗ—(ଲବଙ୍ଗ); ସମାଦ—ବାକ୍ୟ, ସମ୍ବାଦ ଶବ୍ଦଜ; ଅଗର୍—ଅଗୁରୁ ।

୭. ସୁଛଠକ—ଭଲ ଭାବରେ, ସୁ + ଛଠା ।

୮. ସୁକନ୍ତଲା—ଶକୁନ୍ତଲା, ସୁକୁନ୍ତଲା ଶବ୍ଦ ପ୍ରଭାବିତ; ଯେଉଯଉ—( ଯେଉଂ ଯଉଂ ) ।

୯. ଝଲକ—ଦୀପ୍ତ; ବୟେସ—ବୟସ; ସବଏ—ସଭିଏ ।

୧୦. ନିଭୟେ—ନିର୍ଭୟ ।

୧୧. ଟମାଲ—ପଦ୍ମହାସ; ଟସକର—ତସ୍କର; ଭମର—ଭ୍ରମର, ଭଅଁର ।

୧୨. ପୁଷ୍ପ—ପୁଷ୍ପ ।

୧୩. ତୋୟାଡ଼ିଅଇ—ମୋଡ (ତୋଡ଼ିଆଇ); ପୁଷ୍ପନ୍ତ—ପୁଷ୍ପଗୁଡ଼ିକୁ; ଡମ୍ବୋରୁଧର—ଡମ୍ବୁରୁଧର, ଶିବ ।

୧୫. ଲାଇ—ନାଇ, ଲଗାଇ; ଅଣିମଣିପଦ—ଗୌରବ, ରତ୍ନାଦ ଓ ପଦମର୍ଯ୍ୟାଦା; ଏଣିଅଡ—ଏଆଡ଼ ।

୧୬, ଉଢାରେ—ଉତ୍ତରେ (ଉତ୍ତରେ) ।

୧୭. ଥମ୍ଭି—ସ୍ତମ୍ଭିତ; ଘାଏ—ଘାଟେ ।

୧୮. ସୁବନ୍ତ—(ସୁବର୍ଣ୍ଣ); ପୁତୁଳ—ପୁତ୍ତଳୀ, ପିତୁଳ ।

୧୯. ଧ୍ୱଜ ବଜ୍ର—ନନ୍ଦା ବଜ୍ର; ସୀମଥୂଣୀ—ସୀମନ୍ତିନୀ; ହଂସଣୀ—ହଂସୀ । ଧ୍ୱଜ........ଧରାଧର—ଅର୍ଦ୍ଧ ଚନ୍ଦ୍ରଟୀକୁ, କଠୀ କେଶରୀକୁ ଏବଂ କୁଚ ପର୍ବତକୁ ଜିଣିଲା; ମନ୍ନମତ—ମନ୍ମଥ (ମନ୍ମଥ) ।

୨୦ । ନିଟୂର—ଅତିଘୋର ।

୨୧. ଶୁବିଲା—ଶୁଭିଲା; ପଳାବନ୍ତ—ପଳାଅନ୍ତ; ସ୍ରବ—ସବ, ବିସ୍ୟାଦ—ବିଷାଦ ।

୨୨. ଫଗୁଣା—ଆନନ୍ଦ (ଫଗୁଣା); ପ୍ରାୟେ—ପ୍ରାୟ; ଚଢ—ଚଢ଼ି; କହ୍ଲଇ—କହୁଲା; ଫୁଲବଗି—ଫୁଲନାଡ଼; ବହ୍ଲା—ଭେଦକଲା ।

୨୪. ଧଇର୍ଯ୍ୟ—ଧୈର୍ଯ୍ୟ; ଚଇତନ—ଚୈତନ୍ୟ, ଚେତନା; ଭରାନ୍ତ—ଭ୍ରାନ୍ତ; ମନ୍ମଥ—ମନ୍ମଥ, ମଦନ ।

୨୬. ଧୂର—ଦୂର; ଅପୂବ—ଅପୂର୍ବ; ମାହାମୁନ—ମହାମୁନି ।

୨୭. ଅଗ—ଅଗୁରୁ, ସୁଗନ୍ଧ ଦ୍ରବ୍ୟ ବିଶେଷ; ସୁଦେଶ—ସୁନ୍ଦରୀ; ପୁଛବୁ—ପୁଚ୍ଛା କରିବୁ, ପଚାରିବୁ ।

୨୮. ସାଦୃଶ—ସଦୃଶ ଶବ୍ଦଜ; ସଙ୍କୁଚେ—ସଙ୍କୋଚରେ; କପା—କପାଳ (କପାଂ); କାହାକୁ··· ·ବରିବ—କାହାକୁ ବିବାହ କରିବେ ବୋଲି ପିତା ଭାବିଛନ୍ତି, ଏପରି ଅର୍ଥ ।

୨୯. କନା—(କନ୍ୟା); ସତକାର—ସତ୍କାର ।

୩୦. ଅମିଅ—ଅମୃତ; ଶିରେ ସିନ୍ଦୂର—ରାଜ ଲକ୍ଷଣ ।

୩୧. ସଲକ୍ଷିତ—ସଲକ୍ଷ+ଲକ୍ଷିତ; କାଢ଼—କାଢ଼ି; ପ୍ରଣମ୍ପିତ—ପ୍ରଣମିତ; ସଂଭେଟ—ଦେଶଜ ଭେଟ ଶବ୍ଦରେ ସଂସ୍କୃତ ଉପସର୍ଗ ଯୋଗ; ନୃପତ—ନୃପତି ।

୩୨. ଧାଇଁକାରେ—ଶୀଘ୍ର; ପ୍ରତଖେ—ପ୍ରତ୍ୟକ୍ଷ ଭାବରେ; ସାନନ୍ଦେସାଗରୁ ଚଡ—ଅର୍ଥ ସ୍ପଷ୍ଟ ନୁହେଁ, ପ୍ରିୟ କନ୍ୟାର ଉଜ୍ଜ୍ୱଳ ଭବିଷ୍ୟତ ଆଶାରେ ମୁନିଙ୍କ ମନ ଆନନ୍ଦ ସାଗରରେ ବୁଡ଼ିଥିଲା, ବିବାହ ସମ୍ପାଦନ କରିବା ପାଇଁ ସେ ନିଜ ଚିତ୍ତକୁ ଆନନ୍ଦ ସାଗରରୁ ଫେରାଇ ପ୍ରବୃତ୍ତ ହେଲେ, ଏପରି ଅର୍ଥ ହୋଇପାରେ, ତେବେ ପାଠଟି ସାନନ୍ଦ ସାଗରୁ ଚିତ ହେବା ସଙ୍ଗତ ।

୩୩. ଅପ୍ରାଧ—ଅପରାଧ ।

୩୪. ଛନ୍ଦେ—ସ୍ୱଚ୍ଛନ୍ଦ ଭାବରେ; ଛଟକ—ଆଡ଼ମ୍ବର; ଖୀରୋଦ୍ର ନନ୍ଦନୀ—କ୍ଷୀରୋଦ ନନ୍ଦନୀ, ଲକ୍ଷ୍ମୀ; ସମ୍ବୁଲ—ସଂସାର; ନନେ·····ସମ୍ବୁଲେ—ଚୈତନ୍ୟଙ୍କ ସଂସାର ବା ଗୋଷ୍ଠୀ ମଧ୍ୟରେ ରହି କବି ବିଷ୍ଣୁଙ୍କ ବନ୍ଦନା କରୁଛି, ଏପରି ଅର୍ଥ ।



ସଂ: ୨

# ଜ୍ଞାନଉଦେ ଚଉତିଶା

( ପୋଥିପାଠ—ଗ୍ୟାନଉଦେ ଚଉତିସା )

ରଘୁଅରକ୍ଷିତ
ବଳରାମ ଦାସ
କାହ୍ନୁ

[ ଏହି ତିନି ଭକ୍ତକବି ପ୍ରତାପରୁଦ୍ର ଦେବଙ୍କ ସମସାମୟିକ । ତିନିହେଁ ମିଶି ଗୋଟିଏ ରଚନା ଲେଖିଥିବା ଦୃଷ୍ଟେ ପରସ୍ପର ମଧ୍ୟରେ ଘନିଷ୍ଠ ସୌହାର୍ଦ୍ଦ୍ୟ ପ୍ରମାଣିତ ହୁଏ । ଶକୁନ୍ତଳା ଚଉତିଶା (ସଂ. ୧) ଆଦ୍ୟରେ ରଘୁଅରକ୍ଷିତଙ୍କ ବିଷୟ କୁହାଯାଇଛି । ଉତ୍କଳର ବାଲ୍ମୀକି ବଳରାମ ଦାସଙ୍କର ଜଗମୋହନ ରାମାୟଣ ତଥା ଅନ୍ୟାନ୍ୟ ବହୁସଂଖ୍ୟକ ଲୋକପ୍ରିୟ ରଚନା ରହିଛି । କାହ୍ନୁ ବା କହ୍ନାଇ ନାମରେ ବହୁ ଭକ୍ତ ଷୋଡ଼ଶ ଶତାବ୍ଦୀର ଆଦ୍ୟ ଭାଗରେ ଥିବା 'ଚୈତନ୍ୟ ଚରିତାମୃତ', 'ଜଗନ୍ନାଥାମୃତ' ଆଦି ଗ୍ରନ୍ଥରୁ ଜଣାଯାଏ । ତନ୍ମଧ୍ୟରୁ କିଏ ଏହି ଚଉତିଶାର ଅନ୍ୟତମ କବି କହି ହେଉନାହିଁ । ]

କହୁଅଛି ମନ ଘେନ, ତୋର ଦେହେ ଶୁଦ୍ଧ ଚିହ୍ନ,
ଦେଉଳ ଶିଖରେ ସେ ପଦ୍ମ ମଧ୍ୟରେ
ବିଜୟେ ଶ୍ରୀ ଭଗବାନ,
[ହୋ] ମନ, ତାହାକୁ ତୁ [କ]ର ଧ୍ୟାନ ॥ ୧ ॥

୫ ଖାଉ ହେବୁ ତୁ ଅବଶ୍ୟ, ଖୋଜି ଖିନ୍ନନାହେଁ ପଶ,
ଅଜୀବ ସଙ୍ଗତେ ଜୀବ ମିଶାଇଲେ,
ଛୁଟିବ ତୋର ମୁହାଁସ,
ହୋ ମନ, କର ଗୁରୁ ଦରଶନ ॥ ୨ ॥

ଟଙ୍କି ହୋଇ ଭୁ ନମର, ଗଳଗଲା ମନ ତୋର,
୧୦ ଚୋଲି ହାଟ ପରେ ରାହାସ୍ ଲଗିଛୁ
ଅଷ୍ଟ ସଖୀଙ୍କ ମଧ୍ୟରେ,
ହେ ମନ, ବେଗେ କର ଦରଶନ ॥ ୩ ॥

ଘର ବାହାରେ ପ୍ରକାଶ, ଘଟେ ଘଟେ ତୋର ବାସ,
ଘର ଦେବତାକୁ ଚହ୍ନି ନ ପାରିଲୁ
୧୫ ଘଟିଯିବ ତୋର ନାଶ,
ହେ ମନ, ପଦ୍ମ ପାଦେ ହେଜ ଚହ୍ନ ॥ ୪ ॥

ଓଁକାରକୁ ହେଜୁକର, ଭେଦେ ହୋଇବ ନକର,
ଭେଦେ ଅସ୍ତ ଯାଏ ଜଗି ଭୁ ପାରିଲେ
ଉଭା ହେବେ ଆଗେ ତୋର,
୨୦ ହେ ମନ, ପାଦେ ଅଷ୍ଟଦଶ ଚହ୍ନ ॥ ୫ ॥

ଚିତା ସଳଖରେ ହେଜ ଚେତାରୁ ମନକୁ ବୁଝ,
ଚିତା[ର] ମଧ୍ୟରେ ଚେତାକୁ ରଖିଣ
ମନ ପବନରେ ଖୋଜ,
ହେ ମନ, ସେ ତ ଗୋଲେଖ ଭୁବନ ॥ ୬ ॥

୨୫ ଛଡ଼ ଅଇର ବଇର, ଛଡ଼ାଇ ଦେବେ ତୋ ଶିର,
ଛଡ଼ାଛଡ଼ି କାଳେ ବନ୍ଧୁ ଜନ ଧନ
ନ ଯିବେ ସଙ୍ଗେ ତୋହର,
ହେ ମନ, କେଵ୍ଟ କୁହନ୍ତ କାହାର ॥ ୭ ॥

ଜୀବ ପରମ ଏ ଦୁଇ, ଜୀବ ଯିବଟି ନ କହି,
୩୦ ଜୀବ ପରମକୁ ମିଶାଇ ପାରିଲେ
ଯିବୁ ବଇକୁଣ୍ଠେ ରହି
ହେ ମନ, ଚିନ୍ତାକର ଭଗବାନ ॥ ୮ ॥

ଝର ଝରେ ନିରନ୍ତର, ଝଗଡ଼ ଝାଡ଼ ତୁ ଧର
ଝଟକିବ ଜ୍ୟୋତି ପାଶଲେ ତୁ ଚିନ୍ତ
୩୫ ଝର ମୁଣ୍ଡେ ନିରାକାର,
ହେ ମନ, ସେ ତ ଜଗତ ଜୀବନ ॥ ୯ ॥

ନୟନ ଲୟ ଭିତରେ, ନିରାକାର ତଥି ପରେ,
ନିରାକାର ପ୍ରଭୁ ବିଜେ କରିଛନ୍ତି
ନବଦ୍ୱାରି ଦେଉଳରେ,
୪୦ ହେ ମନ, ନେତ ଉଡ଼େ ଘନ ଘନ ॥ ୧୦ ॥

ଟେକ ଟାଣ ଉପରକୁ, ଟଳିବ ନାହିଁ ତଳକୁ
ଟେକ ଡାକୁଣି ଡୋଳା ଫେଡ଼ ଚାହିଁଲେ
ଟଳିବ ନାହିଁ କାଳକୁ,
ହେ ମନ, ଦେଖ ତୁ ଆତ୍ମାରାମକୁ ॥ ୧୧ ॥

୪୫ ଠୁଳେ ରଖ ବୁଦ୍ଧି ମନ, ଠୁଳଶୂନ୍ୟ ଶିଖେ ବ୍ରହ୍ମ,
ଠାବ ନ ଦେଲେ ଠିଉ ଅରଖିତକୁ
ଠୁଳ ରଖ ନାରାୟଣ,
ହେ ମନ, ଠାବେ ଦେବେ ଦରଶନ ॥ ୧୨ ॥

ଡେର ତୁ ଶବଣ ଦୁଲ, ଡୋଳା ଟେକ ଧ୍ୟାନ ଧ୍ୟାଇ,
୫୦ ଡୋଳା ଗୁଣ୍ଡିକଳା କଳା କେ ଜାଗିଲେ
କଳା ଯିବ ଧଳା ହୋଇ,
ହେ ମନ, ରଖ ଉଲଟ ଝରଣ ॥ ୧୩ ॥

ଢାଆଣୀ ତୋ ଘରେ ଅଛୁ, ଢାକୁଣି ଢାଙ୍କି ରଖିଛୁ
ଢଳଢଳ ହୋଇ ଜଳ ପ୍ରାୟେ ବହୁ
୫୫ ଯିବାକୁ ସଜ ହୋଇଛୁ,
ହେ ମନ, ଜଗ ଦ୍ୱାର ଆବୋରଣ ॥ ୧୪ ॥

---

୩୪. ଜ୍ୟୋତ—ଯୋତ ।

ଅଣହେଳା ତୁ ନକର, ଅବଶ୍ୟ ହେବୁ ଅମର,
ଅଧ ଊର୍ଦ୍ଧ୍ୱ ମୁଖେ ଜ୍ୟୋତି ପ୍ରକାଶିବ
ଦେଖ ଭ୍ରୂଲତା ମଧର,
୬୦ ହେ। ମନ, ପାରିଲେ ଏଥେ ତୁ ଚିହ୍ନ ॥ ୧୫ ॥

ତ୍ରିକୂଟ ତ୍ରିବେଣୀ ଘାଟ, ତା ତଳେ ମନକୁ ଖଟ
ତରଙ୍ଗ ନ ପାରି ଯାଉଅଛୁ ମରି
ରାମ ନାମ ଧରି ରଟ
ହେ। ମନ, ଫିଟିବ କଞ୍ଚ କବାଟ ॥ ୧୬ ॥

୬୫ ଅଭ୍ୟେ କର ଚଞ୍ଚ୍ ମନ, ଅଜାତ କର ପବନ,
ଥକତେ ପିଙ୍ଗୁଳା ଥମ୍ଭିତ ହୋଇଲେ
ଥାଏ ଦେବେ ଦରଶନ,
ହେ। ମନ, ସିଦ୍ଧଙ୍କ ସଙ୍ଗାଳ ଧନ ॥ ୧୭ ॥

ଦେହକୁ ନ ବୋଲ ମୋର, ଦଶଜଣର ଏ ଘର,
୭୦ ଦଶ ଜଣ ମିଶି ଦଣ୍ଡ ଦେବେ ତୋତେ,
କେ ଥିବ ସାହା ତୋହର,
ହେ। ମନ, ଦେଖିବା ଦେବତା ଚିହ୍ନ ॥ ୧୮ ॥

ଧର ଧାରି ଧୀର କରି, ଧରମ ଥାଅ ସୁମରି,
ଧରିବୁ ତରିବୁ କେବେ ନ ଡରିବୁ,
୭୫ ଧ୍ରୁବ ଧ୍ୟାନ ଦୃଢ଼ କରି,
ହେ। ମନ, କହୁଛୁ ବନସ୍ପ ଘେନ ॥ ୧୯ ॥

ନ କର ମନ ନିରାଶ, ନହଡ଼କ କର ନାଶ
ନେତ ଉଡ଼ୁଅଛି ତାଳ ପଡ଼ୁଅଛି
ନସ୍ପୁନ ତୋଳାରେ ବାସ,
୮୦ ହେ। ମନ, ନିଷ୍ଟସ୍ୱେ କର ତା ଘେନ ॥ ୨୦ ॥

---

୫୮. ଜ୍ୟୋତି—ଯୋତି । ୫୯. ମଧର—ମଧରେ । ୬୮. ସିଦ୍ଧ—ସିଧ୍ୟ ।

ପବନକୁ ଆଣେ ବାନ୍ଧି,  ପାଇବୁ ପରମ ପଦ,
ପାଦ ପଦ୍ମେ ରସ  ପାପକୁ ବିନାଶ
ପାଇବୁ ଛଣା ପୀୟୂଷ,
ହେ ମନ, ପାଦ ପାଶେ ହେଜ ଚିହ୍ନ ॥ ୨୧ ॥

୮୫ ଫେଡ଼ ଆଶା ମନୁ ଚୋର,  ଫେଡ଼ି ମୁଁ କହୁଛି ସାର,
ଫିଟି ବାଟ ଯିବ  କ୍ଷଣେ ନ ରହିବ
ଫିଟିବ ଅର୍ଗଳ ଦ୍ୱାର,
ହେ ମନ, ପବନରେ ରଖ ମନ ॥ ୨୨ ॥

ବଡ଼ିକୁ ବରଷ ବାର,  ବାରରୁ ଏଣିକ ଧର,
୯୦ ବାରରୁ ତେରକୁ  ଗଲେ ବାହାରକୁ
ବଡ଼ି ନ ଆସିବ ଘର
ହେ ମନ, ବାରକୁ ବାହାରେ ଚିହ୍ନ ॥ ୨୩ ॥

ଭବ କୂପକୁ ତରଣ,  ଭଜ ଶ୍ରୀ ଗୁରୁଚରଣ,
ଭଜେ ବଳରାମ  କରମ ତା ବାମ
୯୫ ଦାସ ଦୋଷକୁ ଖଣ୍ଡନ,
ହେ ମନ, ବାରେ ଦଶ ଚଇତନ ॥ ୨୪ ॥

ମାୟା ଛାୟା ଚୋର କାୟା,  ଛାଡ଼ ନ ପାରିଲୁ ମାୟା,
ମାୟା ନାଶ ଯିବ  ନଷ୍ଟକେ ରହିବ
କର ପାରିଲେ ନିର୍ମାୟା,
୧୦୦ ହେ ମନ, ମନରୁ ମାୟା ଭିଆଣ ॥ ୨୫ ॥

ଯେତେ ତୁ ମନେ ଧରିଚୁ,  ଜଞ୍ଜାଳ ଜାଳେ ପଡ଼ିଛୁ,
ଜାଣି ନ ପାରିବୁ  ଜାଲରେ ମରିବୁ
ଜାଲ ମଧ୍ୟରେ ପଡ଼ିବୁ,
ହେ ମନ, ଜାଲ କାଟି ଜୀବ ଚିହ୍ନ ॥ ୨ ॥

୧୦୫ ରସକୁ ଟେକ ଉପର, ରସ ରନ୍ଧ୍ରକ ବନ୍ଧର
ଧୀରେ ଜାଳ ଦେବୁ ରସକୁ ଝାଳବୁ
ରସନା ଦେଇ ପୁଟର,
ହେ ମନ, ରଖ ଉଲଟ କରଣ ॥ ୨୭ ॥

ଲଭିଲୁ ନାହିଁ ତାହାକୁ, ଲହଡ଼ି ମାୟା ମୋହକୁ,
୧୧୦ ଲୋଭ ମାୟା ମାନ ଭାଙ୍ଗିବେ ଗୁମାନ
ରହିବୁ ନାହିଁ କାଳକୁ,
ହେ ମନ, କ ବେନ ଯିବୁ ସାଥକୁ ॥ ୨୮ ॥

ବୁଝାଇଲେ ବୁଝୁ ନାହିଁ, ବୋଲ ନ ଘେନୁ କା ପାଇଁ
ବୋଇତ ଭାଗିବ ଜନସ ହଜବ
୧୧୫ ଘର ଯିବ ଭୁଷ୍ଟ ହୋଇ,
ହେ ମନ, ବାଢ଼ ଭଜ ଭନ୍ଧ ଭନ୍ଧ ॥ ୨୯ ॥

ଶ୍ରୀ ଘଟ ପାଟଣାଠାରେ, ଗୋଲେକ ବୈକୁଣ୍ଠ ଦ୍ୱାରେ
ଗୁପତେ ଗୋବିନ୍ଦ ବିହାସ କରୁଛି
ଗଙ୍ଗା ଯମୁନା ମଧ୍ୟରେ,
୧୨୦ ହେ ମନ, ସେଠି କରତା ଆପଣ ॥ ୩୦ ॥

ସାତ ରଥୀ କ ଜିଣିବୁ, ସବଂଶ ଏକ ମଣିବୁ,
ସତ ଆଶ୍ରେ କର, ଶତ୍ରୁକୁ ନବାର
ସମ ସରସା ମାନବୁ,
ହେ ମନ, ଠାବ ଠୁଳ ଛନ୍ତି ବ୍ରହ୍ମ ॥ ୩୧ ॥

୧୨୫ ଶଶ୍ପରେ ତୁ ହେତୁ କର, ସରୁଶ ବସ୍ତୁ ସ ଚୋର,
ଶତଦଳ ପୁଷ୍ପ ମଧ୍ୟର କେଶରେ
ବିଜୟେ ଶ୍ରୀ ଚକ୍ରଧର
ହେ ମନ, ଶିଶ୍ୱ ସରୁଶ ଚୋହର ॥ ୩୨ ॥

---

୧୨୫. ଶଶ୍ୱରେ—ଷ୍ୟଣ୍ଡରେ ।

ହଟିକ ତୁ ଲକ୍ଷେ କର, ହେଜ ବୁଦ୍ଧି ଖୋଜି ଧର,
୧୩୦ ହରି ହଜ ଯିବେ ପଦେ ନ କହିବେ
ହାବକା ଲହଡ଼ା ଚାର,
ହୋ ମନ, ହେରୁ ମୁଣ୍ଡେ ଜଗି ଯେନ ॥ ୩୩ ॥

ଝରୁଚ ଅମିଅ ରସ, ଖୋଜ ଖିନ ନାନେ ପଶ,
ବୋଲେ ଆସି କାନା ବଡ଼ ଦୋଷ ମନା
୧୩୫ ପ୍ରଭୁ ଖଣ୍ଡିବେ ମୋ ଦୋଷ,
ହୋ ମନ, ପାପୀ ପାତକ ନାଶନ ॥ ୩୪ ॥

## ଟୀକା :—

[ ଚଉତିଶାଟିରେ ଦେହଯନ୍ତ୍ରରେ ପବନ ସାଧନା ଦ୍ୱାରା ପରମାତ୍ମାଙ୍କ ସହ ସାଯୁଜ୍ୟ ଲାଭ ନେଇ ଯେଉଁ ସଂକେତଧର୍ମୀ ବିଷୟଗୁଡ଼ିକର ଅବତାରଣା କରାଯାଇଛି ତାକୁ ବୁଝାଇବା ଚେଷ୍ଟା କରାଯାଇ ନାହିଁ । ପୋଥି ପାଠରେ କେତେକ ଅନାବଶ୍ୟକ ଅନୁସ୍ୱାର ଥିଲା—ତାକୁ ପାଦ ଟୀକାରେ ସୂଚିତ ନ କରି ଲୋପ କରାଯାଇଛି । ]

୨. ଖାର—କ୍ଷାର; ମୁହାଂସ—ମୋହ; ୩. ଗଳିବା—କ୍ଷରିତ ହେବା, ନଷ୍ଟ ହେବା । ୫. ଉଦେ—ଉଦୟ; ୭. ଚଟା—ନାକ ଉପର ସ୍ଥାନ; ଗୋଲେଖ—ଗୋଲକ । ୯. ଝଂଗଡ଼ ଝାଂଡ଼—ଜଞ୍ଜାଳ ଝାଡ଼ି । ୧୩. ଶବଣ—ଶ୍ରବଣ; ଧୁନି—ଧ୍ୱନି । ୧୪. ଡ଼ାଆଣୀ—ଡାହାଣୀ । ୧୫. ଅଧ—ଅଧଃ; ଉର୍ଦ୍ଧ—ଉର୍ଦ୍ଧ୍ୱ । ୧୭. ଥମ୍ଭିତ—ସ୍ତମ୍ଭିତ । ୧୮. ଦଶଜଣ—ପଞ୍ଚ କର୍ମେନ୍ଦ୍ରିୟ ଓ ପଞ୍ଚ ଜ୍ଞାନେନ୍ଦ୍ରିୟ । ୨୦. ନହଡ଼—ଲହଡ଼ା । ୨୧. ପୀଉଷ—ପୀୟୁଷ । ୨୭. ରସ—ଜିହ୍ୱା, ରସନା । ୨୯. କନସ—କଳସ । ୩୧. ସାତରଥୀ—ବୀଜ, ଆତ୍ମା, ମନ, ତତ୍ତ୍ୱ, ତନ୍ମାତ୍ର, ପ୍ରାଣ ଓ ଭୂତ; ଶତ୍ରୁ—ଶତ୍ରୁ, ରିପୁ । ୩୩. ହାବକା—ଧକ୍କା । ୩୪. ଜଗିଯେନ—ଜଗିନଥ, ଜଗ; କାନା—କାହ୍ନୁର ଅପଭ୍ରଂଶ ।

# ଦଣ୍ଡଧୂଆ ଚଉତିଶା

ଜଗନ୍ନାଥ ଦାସ

[ ଭାଗବତକାର ଜଗନ୍ନାଥ ଦାସଙ୍କ ପରିଚୟ ଦେବା ଅନାବଶ୍ୟକ । ଜଗନ୍ନାଥ ଦାସ ନାମରେ ବ୍ରହ୍ମଜ୍ଞାନ ସମ୍ପନ୍ନ ଅନ୍ୟ କେତେଜଣ ଅର୍ବାଚୀନ କବି ମଧ୍ୟ ଥିବା ଜଣାଯାଏ । କିନ୍ତୁ ଚଉତିଶାଟିରେ ଅଭିବ୍ୟକ୍ତିର ଉତ୍କର୍ଷତା ଦୃଷ୍ଟେ ଏହାର କବି ଭାଗବତକାର ଜଗନ୍ନାଥ ଦାସ ହେବା ଅନୁମେୟ । ]

କହନ୍ତି ଉଦ୍ଧବକୁ ହରି — କରିଆସନ ଦୃଢ଼କରି ।୧।
ଖସିନ୍ତି ଅଣଅାସ ବାଇ — ଖିନ ନାଳରେ ଖଞ୍ଜି ନେଇ ।୨।
ଗଙ୍ଗାକୁ ବୁହାଅ ଉଜାଣି — ଗଗନ ଶିଖେ ଖେପୁଥାଣି ।୩।
ଘଟ ମୁଣ୍ଡରେ ବନ୍ଧ ବାନ୍ଧ — ଘେନ ପଞ୍ଚାଶକୁ ନରୋଧ ।୪।
୫ ଙଂକାର ଧ୍ୟାନେ କରି ହେଉ — ଉଡ଼ନ୍ତା ପକ୍ଷୀକି ଧରନ୍ତୁ ।୫।
ଚନ୍ଦ୍ର ପବନ ମହାବଳୀ — ଚେତା ଚୈତନ୍ୟ ସଙ୍ଗେ ତୋଳି ।୬।
ଛଡ଼ ଚନ୍ଦ୍ରକୁ କରି ଏକ — ଛନ୍ଦିବୁ ଦଶଦ୍ୱାର ପାକ ।୭।
ଜୀବକୁ ପରମେ ପୂରେଇ — ଜଗି ବସିବୁ ଯୋଗ ଧ୍ୟାଇ ।୮।
ଝରି ପଶ୍ଚିମେ କରି ଠଣା — ଝଗଡ଼ ସରିବ ତୋ ସିନା ।୯।
୧୦ ନାସା ଅଗ୍ରକୁ ଦୃଷ୍ଟି ଦେବୁ — ନାମକୁ ଲକ୍ଷ କରିଥିବୁ ।୧୦।
ଟେକିବୁ ମୂର୍ଦ୍ଧନ୍ନ ଉପରି — ଟଳିବ ନାହିଁ ମନ ତୋରି ।୧୧।
ଠାବ କରିବୁ ଅନୁବ୍ରତେ — ଠୁଳେ ଦେଖିବୁ ଠାରି ମତେ ।୧୨।
ଡମ୍ବରୁ ଘୋଳ ମିଶାଇବୁ — ଡୋଳା ପିଙ୍ଗଳାକୁ ସାଧିବୁ ।୧୩।
ଢାଙ୍କୁଣି ପଡ଼ିଲେ ତୋହର — ଢାଙ୍କେ ଦେଖିବୁ ମୋ ଶରୀର ।୧୪।
୧୫ ଅଣ ଅକ୍ଷରେ ମୋର ଘର — ଅଣଅସ୍ତ ନାହିଁ ମୋର ।୧୫।
ତତ୍ତ୍ୱକ ତଲ୍ଲୀ କରି ଜନା — ତେବେ ପାଇବୁ ମୋ ଭାବନା ।୧୬।
ଥିର କରିବୁ ଯେବେ ମନ — ଥରେ ପାଇବୁ ଦରଶନ ।୧୭।
ଦେଖିଲେ ତେଜିବୁ ସଂସାର — ଦେହ ହୋଇବ ଅଜାମର ।୧୮।
ଧ୍ୟାନେ ଧାରଣା ଧରିଥିବୁ — ଧ୍ରୁବ ମଣ୍ଡଳେ ହେଉ ଦେବୁ ।୧୯।

---

୧୦. ଦୃଷ୍ଟି—ଦକ୍ଷୀ ।

୨୦ ନୟନ ମଧ୍ୟରେ ଗୁପତ    ନିଶାନାଥ ତହିଁ ଉକତ ।୨୦।
ପୂରେକ କୁମ୍ଭେକ ସାଧନ    ପୂରି ହରିବ ତୋର ମନ ।୨୧।
ଫୁଟାଅ ଷୋଳଡମ୍ବୁରୁରେ    ଫୁଟିବ ରୂପ ମୂର୍ଦ୍ଧ୍ନରେ ।୨୨।
ବାଜୁଛି ଶୂନ୍ୟରେ ବାଜଣା    ଝଲମ୍ବ କଲେ ହେବୁ ବଣା ।୨୩।
ଭଜବୁ ଅର୍ଧମାତ୍ରା ଧରି    ଭୁବନ ମଧ୍ୟେ ପ୍ରାଣ ଧରି ।୨୪।
୨୫ ମୃଣାଳ ମଧ୍ୟେ ଅଣଶକ୍ତି    ମହାଶୂନ୍ୟରେ ଜୋଡିଛନ୍ତି ।୨୫।
ଯା ନାମ ଜପିଲେ ଶଙ୍କର    ଜାଣି ହୋଇଲେ ଅଜାମ୍ବର ।୨୬।
ରଙ୍ଗା ଅଧରେ ଚନ୍ଦ୍ରାକର    ରାଜୀବଲୋଚନ ସୁନ୍ଦର ।୨୭।
ଲଳମା ବଦନେ ଶୋହେ ସଦା    ଲାବଣ୍ୟ ଚତୁର୍ଭୁଜ ଗଦା ।୨୮।
ବହୁଛି ଶୂନ୍ୟରେ ପବନ    ନିରେଖି ଦେଖ ତାକୁ ମନ ।୨୯।
୩୦ ଶ୍ରୀଗୁ ଶବଦେ କରି ହେତୁ    ପାଇବୁ ବ୍ରହ୍ମଜ୍ଞାନ ତତୁ ।୩୦।
ସାଧୁଚରଣେ ଆଶ୍ରେ କରି    ସଂଶୟ ଫିଟିବ ତୋହରି ।୩୧।
ଶସ୍ପରେ ଷଣ୍ଢ ଯେଁ ଅଇରି    ତାହାକୁ ପକାଅ ନିବାରି ।୩୨।
ହରି ହୃଦୁନେ ହେ ଉଦ୍ଧବ    ହରିଙ୍କ ପାଶେ ସେବିଥିବ ।୩୩।
କ୍ଷମାସାଗର ଧନମଣି    ଛଛନ୍ଦେ ଜଗନ୍ନାଥ ଭଣି ।୩୪।

---

୨୪. ଭୁବନ—ଭୁବାନ । ୨୫. ଜ୍ୟୋଢ—ଯୋଢ । ୨୮ ଶୋହେ—ଶହେ । ୩୨. ଶସ୍ପରେ—ଷ୍ୟସ୍ପରେ ।

**ଟୀକା :—**

୨. ବାଇ—ବାୟୁ । ୫. ଉଂକାର—ଓଁକାର; ପଖୀ—ପକ୍ଷୀ । ୮. ପୁରେଇ—ପୁରାଇ । ୯. ଠଣା—ସ୍ଥାନ; ଝଂଗଡ଼—ଜଞ୍ଜାଳ । ୧୧. ମୂର୍ଦ୍ଧ୍ନ—ମୂର୍ଦ୍ଧା । ୧୨. ଅନୁବ୍ରତେ—ଅନବରତ; ଠାର—ସଙ୍କେତ । ୧୬. ତଲ୍ଲେ—ଲୟ, ତଲ୍ଲୟ ଶବଦ । ୧୮. ଅଜାମ୍ବର—ଅଜର ଅମର । ୨୧. ପୁରେକ କୁମ୍ଭେକ—ସମାଧି ବିଶେଷ । ୨୮. ଲଳମା—ଲଲାମ; ଶୋହେ—ଶୋଭାପାଏ; ଚତୁଭୂଜ—ଚତୁର୍ଭୁଜ । ୨୯. ହୃମନ—ମଝିମନରୁ ଏକ । ୩୦. ତତୁ—ତତ୍ତ୍ୱ । ୩୪. ଛଛନ୍ଦେ—ସଚ୍ଛନ୍ଦେ ।

ସଂ: ୪

# ଗଉରୀ କଲସା

**ବଂଶୀ ଦାସ**

[ ବଂଶୀ ଦାସ ଭଣିତ ଥାଇ 'ଗଉରୀ କଲସା' ନାମରେ ନାମିତ ଏହି ଚଉତିଶାର ଏକ ପତ୍ର ଓଡ଼ିଶା ମ୍ୟୁଜିଅମ୍‌ର ପୋଥି ଭଣ୍ଡାରରେ ରହିଛି । ଏହାର ପାଠ ପ୍ରାଚୀ ସମିତି ପ୍ରକାଶିତ 'ପ୍ରାଚୀନ ଗଦ୍ୟପଦ୍ୟାଦର୍ଶ' ଅନ୍ତର୍ଗତ କଳସା ଚଉତିଶାର ପାଠ ସହ ମୋଟାମୋଟି ମିଶି ଯାଉଛି । ଅନ୍ୟାନ୍ୟ କଳସା ଗୀତ ଓଡ଼ିଆରେ ରହିଥିବା ହେତୁ ଚଉତିଶାଟିର ପ୍ରକୃତ ନାମ ଗଉରୀ କଳସା ବୋଲି ସ୍ଥିର କରି ହୁଏ । ପୁଣି ଏହାର କବିଙ୍କ ନାମ ବସ୍ତ୍ରା ଦାସ ନ ହୋଇ ବଂଶୀ ଦାସ ହେବା ସଙ୍ଗତ । ନାମ ଭାବରେ ବସ୍ତ୍ରା ନାମଟି ଅସାଧାରଣ—ଅବଶ୍ୟ ତାହା ବସ୍ତ୍ର ହୋଇଥିଲେ ସ୍ୱାଭାବିକ ହୁଅନ୍ତା । ଆହୁରି ମଧ୍ୟ ବସ୍ତ୍ରା ଦାସ ନାମରେ କେହି କବି ଥିବା ଅନ୍ୟ ସୂତ୍ରରୁ ଜଣାଯାଏ ନାହିଁ କିନ୍ତୁ ବଂଶୀ ଦାସ ଭଣିତ ଥାଇ ବଜିଲ ଚଉତିଶା ମିଳେ । ଅଧିକତର ଆଲୋଚନା ମୁଖବନ୍ଧରେ କରାଯାଇଛି । ବଂଶୀ ଦାସଙ୍କ କାଳ ଅଜ୍ଞାତ । ଏହାର ଭାଷାର ରୂପ ବିଚାରରୁ ତାଙ୍କ କାଳ ସପ୍ତଦଶ ଶତାବ୍ଦୀ ବା ଷୋଡ଼ଶ ଶତାବ୍ଦୀର ଶେଷ ବୋଲି ଅନୁମାନ କରାଯାଉଛି । ପୋଥିରୁ ଗଉରୀ କଳସାର ପାଠୋଦ୍ଧାର କଲାବେଳେ କଳସା ଚଉତିଶାର ଆଶ୍ରୟ ନିଆଯାଇଛି କିନ୍ତୁ ପୋଥିପାଠକୁ ତ୍ୟାଗ କରିବା ସ୍ଥଳେ ପାଦଟୀକାରେ ତାହା ସୂଚିତ କରାଯାଇଛି । ]

କହନ୍ତି କାମେମାମାନେ ହେମନ୍ତ ଦୁଲଣୀ ।
କେଉଂ ବରେ କରିଲେ ଗୋ ପିତା ନୃପମଣି ॥
କୁଳମୂଳ କେନ ଗୋଞ ନ ଜାଣଇ ତ.ର ।
କନେକ ବେଘରେ ବୁଢ଼ା ବସିଛ ସଘର ॥ ୧ ॥

୪. ବୁଢ଼ା—ବୃଦ୍ଧ ।

୫ ଖୁଂ ଖୁଂ ଖାସ ସାହାନ୍ୱେଣ ନେଲୁଅଛୁ ଧଇଂ ।
ଖରତର ନଶୁଆସ ମଥା ଲଗେ ଭୂଇଂ
ଖଣ୍ଡିଏ ଯୋଗାଣପଣ ନ ଦେଖିଲୁ ତାର ।
ଖଣ୍ଡିଏ ବଳଦ ବୁଢ଼ା ବାନ୍ଧଚ ପାଖର ॥ ୨ ॥

ଗୋଡ଼ହାତ ଷଣଫୁଲ ଗଳୁଛୁ ନସ୍ଵନ ।
୧୦ ଚଣ୍ଡ୍ରସ୍ଥଳେ ଲୋଳକ ମୁଦ୍ର ଦରଶନ ॥
ଗ୍ୟାନ ଭ୍ରଷ୍ଟ ହୋଇଲ୍ନ ଭେବଳତା ମତି ।
ଗୁଣ ନଇଛଣ ଗଣ୍ଡର ନ ଜାଣଇ କିଛୁ ॥ ୩ ॥

ଘର ତାର କେବଣ ଦେଶରେ ତଥ୍ୟ ନାହିଁ ।
ଘଟାଇଲ୍ଲ ବିହ୍ୱ ମାଗୋ ଏମନ୍ତ କସ୍ୱଇ ॥
୧୫ ଘଠ ଘଠ ହୋଇ ଲାଳ ବହୁଛି ତୁଣ୍ଡର ।
ଘନ ଜଟା ନୋଗ୍ଲଏକ ବାନ୍ଧିଛି ମୁଣ୍ଡର ॥ ୪ ॥

ନ ଚଳଇ ମନଷ ଗୋ ନ ଦିଶେ ନସ୍ଵନ ।
ନଳଟେ ଡାକିଲେ ନ ଶୁଭଇ ବେନି କର୍ଣ୍ଣ ॥
ନଶ ଦାଢ଼ି ବଢ଼ିଅଛି ନ ମିଳେ ଭଣ୍ଡାର ।
୨୦ ନଶା କାଳେ ଦେଖିଲେ ଗୋ ଭୟେ କରମର ॥ ୫ ॥

ଚମେକ ମାଡ଼ଣ ବୁଢ଼ା ବସିଛି ମଧ୍ୟେଣ ।
ଚଉପାଶେ ବେଢ଼ିଛନ୍ତି ଦେବତା ବ୍ରାମ୍ହଣ ॥
ଚକୋର ବୁଢ଼ାକୁ ଦେଖି ଚକିତ ହୋଇଲୁ ।
ଚନ୍ଦ୍ରା ସାଗରତୀରେ ସଖି ନଚମ୍ଭେ ବୁଡ଼ିଲୁ ॥ ୬ ॥

୨୫ ଛୁଡ଼ା ଅଙ୍ଗେ ଛୁଡ଼ା ନେତ୍ରା ଲଗିଛି ଗଳାର ।
ଷାର ପ ଡ଼ଂଶ ଲେସ୍ଥଏ ନେପିଛି ଶରୀର ॥
ଛନ୍ଦ ଅଛି ସର୍ପ ମୁଣ୍ଡମାଳ ଆଭରଣ
ଛଟକେ ଭେଳକି ବୁଢ଼ା ନଚାଇଲେ ପୁଣ ॥ ୭ ॥

---

୫. ସାହାନ୍ୱେଣ—ସାବାମନ । ୬. ଲଗେ—ନଗ (ଲଗ୍ନ ?) ।
୭. ଖଣ୍ଡିଏ—ଖଣ୍ଡିରେ; ଯୋଗାଣପଣ—ଯୋଗେଣପଣ । ୮. ବୁଢ଼ା—ବୁଢ଼ା ।
୯. ଷଣଫୁଲ—ସୁଣ୍ଡଫୁଲ । ୧୧. ଗ୍ୟାନଭ୍ରଷ୍ଟ—ଗିନଭ୍ରଷ୍ଟ । ୧୩. ତଥ୍ୟ—ଅତ୍ୟ ।
୧୭. ନଦଶେ—ନଦ୍ଦିସ । ୧୯. ମିଳେ—ଦସେ । ୨୨. ବ୍ରାମ୍ହଣ—ବ୍ରମ୍ହଣ ।
୨୭. ସର୍ପ—ସପ୍ତ ।

ଜଙ୍ଗମକୁ ପ୍ରାପତ ହୋଇଲୁ ଚନ୍ଦ୍ରମୁଖି ।
୩୦ ଝଷ୍ଟ ସେ ବିଧାତା ଯାହା କର୍ମେ ଅଛି ଦେଖି ॥
ଯୁବା କାଳେ ଯୋଗ·ମାଗୋ କହୁଅଛି ଯାହା
ଜାଣୁ ଜାଣୁ ଯୋଗିଆ ଗୋଟ଼ିକୁ ହେବୁ ବେହା ॥ ୮ ॥

ଝୁମଝୁମ ବାଜେ ଘଣ୍ଟ ଘାଘୁଡ଼ି ନୋଃଛୁଏ ।
ଝମକୁଣ କରେ ଅଛି ହିଁ ଶୂଳ ଗୋଟାଏ ॥
୩୫ ଝୁଲି ହୋଇ ଝାଙ୍କି ହୋଇ ଗଡ଼ୁଛି ଢୁଳାଇ
ଝିଅ କ ନାତୁଣୀ ପ୍ରାୟେ ଦୃଶିବୁ ଗୋ ତୁହି ॥ ୯ ॥

ନସତେ କହଇ କଥା ନକୁଟିଣ ଦାନ୍ତ ।
ନୁଆସଇ ବାଣୀ ତାକୁ ବୁଦ୍ଧ ହୋଇ ଅନ୍ତ ॥
ନଖ ମୁଖ ଚକ୍ଷୁ ଥାନ ପଶିଲ୍ଲ ଭିତର ।
୪୦ ନୂଆ ଖଣି ପ୍ରାୟେକ ସେ ଦିଶଇ ଓଦର ॥ ୧୦ ॥

ଟଳଟଳ ହୋଇ ବୁଢ଼ା ବସି ନ ପାରଇ ।
ଟାକୁଆ ଗାଲକୁ ଆଦ ଦାନ୍ତ ତାର ନାହିଁ ॥
ଟଳ ଟଳ ହୋଇଣ ଲାଗଇ ବେଳ କଣ୍ଠ ।
ଟାଙ୍ଗି କରମାଗି ବୁଢ଼ା ଅଟେ ଅପାବନ ॥ ୧୧ ॥

୪୫ ଠୁଳ କରି ଭିକ ମାଗି ରଖି ଥିଲ ଧନ ।
ଠାକ ଥିଲେ ଦେବ ବୋଲି ହେମନ୍ତ ରାଜନ ॥
ଠୋକର ସଭାବ ଏବେ ଲଗାଇଲେ ଆଣି ।
ଠିକେ ନାଶ ଗଲୁ ତୁ ଗୋ ରଜାର ଦୁଲଣୀ ॥ ୧୨ ॥

ଡାକ ଏ ବଜାଉ ଥାଇ ଥାଳେକ ଝୁଲିର ।
୫୦ ଡଙ୍ଗର ଡାଙ୍ଗୁଆ ଦେନ କରିବୁ ଗୋ ଘର ॥
ଡମ୍ବରୁଧରକୁ ସେବା କଲୁ ପରମାଣି ।
ଡଙ୍ଗର ବର ପାଇଲୁ ହେମନ୍ତ ଦୁଲଣୀ ॥ ୧୩ ॥

---

୩୦. କର୍ମେ—କ୍ରମେ । ୩୩. ବାଜେ—ବାଜ । ୩୫. ଢୁଳାଇ—ଢୁଳାଇ । ୪୧. ବୁଢ଼ା—ବୁଢ଼ା । ୪୪. ଅଟେ—ଅଟ । ୪୫. ରଖି—ରଡ଼ । ୪୬. ଠାକ ଥିଲେ—ଠୁକ ଥିଲେ । ୪୭. ଠୋକର—ଠୋହୋର ।

ତୋର ତପସ୍ୱୀକି ସଙ୍ଗି କରାଇବୁ ଚିତ୍ତ ।
ତୋକରି ଯୋଗୀକି ମାଗୋ ହୋଇଲୁ ପ୍ରାପତ ॥
୫୫ ତମାଲ ନ କର ଏବେ କହୁଅଛି ସତ ।
ତାକେ ନାଶଗଲୁ ତୁ ଗୋ ରାଜାଙ୍କ ହୋଇତ ॥ ୧୪ ॥

ଅଣାଇଲେ ତାକୁ ରାସ୍ତେ ବରେକ ବରଣ ।
ଅଣଖ ମଣିଷ ଅରକ୍ଷିତ ଅପାବନ ॥
ଅଣଖ ସାରବ୍ ମାଏ ଝିଏ ଦୁହେଁ ହୋଇ ।
୬୦ ଅଣଓହାଡ଼କୁ ଆସ ଦେଖାଇବ ନେଇ ॥ ୧୫ ॥

କ୍ଷଣଶର ବାଣ ବାଜୀ ପଡ଼ିଲା ହୃଦରେ ।
ତଡ଼କେ ଅଇଲା ସଖୀ ନିଜ ମନ୍ଦିରରେ ॥
ତତକ୍ଷଣେ ଦାସୀ ତାକୁ ତୋଳଣ ଧରିଲେ !
ତଡ଼ବେଗି ଆସି ତହିଁ ମାଏ ମିଳିଗଲେ ॥ ୧୬ ॥

୬୫ ଥିର ଥିର କରି ମାଏ କହନ୍ତି ବଚନ ।
ଥିର କର କାୟେ ମାଗୋ ନୋହ ଅଚେତନ ॥
ଥିଲି ଏତେ କାଳ ମୋର ଦୁଲଣା ହୋଇଣ ।
ଥନ ଯଉବନ କାଳେ ହରାଉଚ ପ୍ରାଣ ॥ ୧୭ ॥

ଦଇନ କରଣ କହେ ଶୁଣ ମୋର ମାଏ ।
୭୦ ଦନ୍ତରେ ତିରଣ ତୋର ଓଳଗର ପାଏ ॥
ଦରିଦ୍ର ବୁଢ଼ା ଗୋଠାକୁ ଯେବେ ମୋତେ ଦେବୁ ।
ଦୁଇ ନୟନରେ ମୋର ମରଣ ଦେଖିବୁ ॥ ୧୮ ॥

ଧଗଧଗ ହୋଇ ମାଏ ଝିଏ ବୋବାଇଲେ ।
ଧାଇଁ ମୁଦସୁଲୀମାନେ ଚହଳ ପାଇଲେ ॥
୭୫ ଧାଇଁ ଆସି ବହନ ସେ ମିଳିଲେ ରାଜନ ।
ଧନ୍ୟପୁନ୍ୟ କାଳେ କିପାଇଁ କରୁଛ ରୋଦନ ॥ ୧୯ ॥

---

୫୪. ତୋକରି……ପ୍ରାପତ—ତମର ଯୋଗିଙ୍କ ସଙ୍ଗ ନ କର ଅଗତ୍ୟା
୫୮. ମଣିଷ—ମନୁଷ । ୫୯. ସାରବ—ସାରବୁ । ୭୨. ମରଣ—ନୟନ ।

ନାହାନ୍ତି କ ସଂସାର ମଧ୍ୟେ ଏ ରାଜ କୁମାର ।
ନାଲଜ ତ ଗୋଟା ବୁଢ଼ା ଆଣି କଲୁ ବର ॥
ନଆରେ ଝାସିବୁ ମାଏ ଝିଅ ଦୁଇ ହୋଇ ।
୮୦ ନୋହିଲେଣ ମରିବୁ ନରପେ ବିଷ ଖାଇ ॥ ୨୦ ॥

ପଟ ଦେନ ମୁକୁତା ମାଣିକ ଗୁନ୍ଥ କାହିଂ ।
ପୋଡ଼ୁ ପୋଢ଼ୁ ହେମନ୍ତ ହୋ ରାଜା ତୁମ୍ଭେ ହୋଇ ॥
ପିଅର ଜନମ ଦୁହେଂ ଧିକ ତ ଧିକ ତ ।
ମାକଲ ବୁଢ଼ାକୁ ଦେଇ ଯେନଲ ତ ବଡ଼ି ॥ ୨୧ ॥

୮୫ ଫରମାଣ ଦେଉଛନ୍ତି ହେମନ୍ତ ରାଜନ ।
ଫାଇ କେତେ କହିବ ଗୋ ସେହୁ ବଡ଼ ଜଣ ॥
ଫଳେଣ ବୁଝିବା ଆମ୍ଭେ ତାହାଙ୍କର ଗୁଣ ।
ଫଳେଣ ପୂଜିଲ ଗଉରୀ ପାଇଲ କାରଣ ॥ ୨୨ ॥

ବଗୁର କରନ୍ତି ମାଏ ଝିଏ ଦୁହେଂ ହୋଇ ।
୯୦ ବଗୁର ଛାଡ଼ ମନରୁ ବୋଲୁଅଛୁ ଆଇ ॥
ବ୍ରହ୍ମା ବିଷ୍ଣୁ ପାଶରେ ଅଛନ୍ତି ଯାଙ୍କୁ ବେଢ଼ି ।
ବଡ଼ ଭାଗ୍ୟବନ୍ତ ଗଉରୀ ଧରିବୁ ତା ନାଡ଼ି ॥ ୨୩ ॥

ଭାଲପଟେ ଲେଖନ ତା କରିତ ବିଧାତା ।
ଭଲ ଭାଗ୍ୟବନ୍ତ ଗଉରୀ ଆମ୍ଭର ହୋଇବ ତା ॥
୯୫ ଭୋଜନ କାଳରେ ଆସି ମିଳିଲେ ରାଜନ ।
ଭିତରେ ମୋଗଣୋହି ସଙ୍ଗ କରନ୍ତି ଭୋଜନ ॥ ୨୪ ॥

ମାହାଦେଈ ମନବ୍ୟଥା ଛଡ଼ାଇ ରାଜନ ।
ମିଳିଲେ ସେ ତତକ୍ଷଣ ବଶିଷ୍ଠ ଅସ୍ଥାନ ॥
ମଙ୍ଗଳଣ ସାରି କଲେ ହଳଦ୍ଦି ଚନ୍ଦନ ।
୧୦୦ ମହୁରୀ ଶଙ୍ଖ ଶବଦ ଶୁଭେ ଘନ ଘନ ॥ ୨୫ ।

---

୭୮. ବୁଢ଼ା—ବୁଡା । ୮୮. ପାଇଲ—ଫାଇଲ । ୯୧. ପାଶରେ — ଲଷରେ । ୧୦୦. ଶୁଭେ—ଶୁଭି ।

ଯୁବଣ୍ଡି ସକଳ ମିଳି ହୁଳହୁଳି ଦେଲେ ।
ଜଗମୋହ୍ନ ସଖୀଙ୍କ ଦ୍ରବ୍ୟ ବେଶ କଲେ ॥
ଜାଈ ପୁଷ୍ପ ଆଣି ସଖୀ ଖୋସାରେ ଖୋସିଲେ ।
ଯତନେ କସ୍ତୁରୀ ଚିତା କପୋଳରେ ଦେଲେ ॥ ୨୬ ॥

୧୦୫ ରତ୍ନ କାପୋଡ଼ା ଯେ ମାଏ କରେଣ ଦେଅନ୍ତି ।
ଗ୍ରୀମ ଅବଶେଷକ ଚୁଡ଼ି ମଥାରେ ସୀମନ୍ତ ॥
ରୁଣଝୁଣ ବାଜଇ ବଳା ମୁକୁତାର ମାଳ ।
ଖଞ୍ଜନ ପକ୍ଷ ଲୋଚନେ ରଞ୍ଜିଲେ କଜଳ । ୨୭ ।

ଲଲାଟରେ ପାଟେ ପିନ୍ଧି ନେତ ଉପୁରଣ ।
୧୧୦ ଲାବଣ୍ୟ ସନ୍ଦେଶ ସ୍ୱୟଂ ଲକ୍ଷ୍ମୀନାରାୟଣ ॥
ଲବଣୀ ଚଉଂରୀ ବେଦୀର ଯେ ବନ୍ଦେ କଲେ ।
ଲଳିତେ ମଙ୍ଗଳ ଗୀତ କାମେମା ଗାଇଲେ ॥ ୨୮ ॥

ବ୍ରହ୍ମା ଆଗ୍ନେୟ ହୋଇ(ଣ) ବେଦୀରେ ବସିଲେ ।
ବରଙ୍କୁ ଯେ ଜଣଦଶ ତୋଳିଣ ଧଇଲେ ॥
୧୧୫ ବାଦ୍ୟ ବନ୍ଦି ଗୋଡ଼ ସାର ଅସରଳା ସୂତା ।
ବସିଲେ କଟକ(ସ୍ନା) ମାଡ଼ ଦୋହୁତା ପିତା ॥ ୨୯ ॥

ଶିରରେ ବାନ୍ଧିଲେଏ ମଲ୍ଲୁଟ ପାଞ୍ଚଶାଖା ।
ଶୋଇଣ ଗଡ଼ଇ ବର ଖାସୁ ଗଲା ମୁର୍ଚ୍ଛା ॥
ଶାଶୁ ଯେ ଶଶୁର ଦେଖି ଏମନ୍ତ ବୋଇଲେ ।
୧୨୦ ସଚେତ ପାଇଲା ବୋଲି କୋଳେ ବସାଇଲେ ॥ ୩୦ ।

ସମସ୍ତେ ହୋଇଣ ହସ୍ତ ଯୋଡ଼ଣଇ କଲେ ।
ଶାଶୁ ଅର୍ଘଥାଳ ଘେନି ବନ୍ଦାଇ ଅଇଲେ ॥
ସଚରାଚରଙ୍କୁ ଯେ ଅଟନ୍ତି ପିତାମାତା ।
ସ୍ୱୟଂ ଈଶ୍ୱର ଯାହା କରନ୍ତି ବିଧାତା ॥ ୩୧ ।

---

୧୦୨. ଦ୍ରବ୍ୟ—ଦ୍ରବ । ୧୦୬. ମଥାରେ ସୀମନ୍ତ—କରେଣ ଦଥନ୍ତ ।
୧୧୧. ଯେ—ରେ । ୧୧୭. ପିତା—ଘେନ ପିତା । ୧୧୮. ଗଡ଼ଇ—କଡ଼ଇ ।

୧୨୫ ସମସ୍ତେ ଧୋଇଣ ହସ୍ତ ଯୋଡ଼ିଣ କହିଲେ ।
ଶାଶୁମାନଙ୍କ ଆଗେ ଏମନ୍ତ ବିନୟ ହୋଇଲେ ॥
ଏ ଗୋଟି ମେନେଜ୍ ଭାବ କର ସଦାଶିବ ।
ଶୋଭା ପାଉଛନ୍ତି ଦୁହେଁ ରତି କାମଦେବ ॥ ୩୨ ॥

ହେମନ୍ତ ରଜାଇ ଦେଖି ହରଷ ହୋଇଲେ ।
୧୩୦ ଦିନେ ପଞ୍ଚଶର ରୂପ କାହିଁ ପଢ଼ାଇଲେ ॥
ହରଷ ହୋଇଲେ ଧୂରଧୂର ଲୋକେ ଦେଖି ।
ହାସ କରୁଛନ୍ତି ଗୃହେଁ ଧାଇଁ ସୁମୁଖୀ ॥ ୩୩ ॥

ଛଛନ୍ଦ ଚଉଟି ସାରି କାଦମ୍ବାଣ୍ଡି କଲେ ।
ନ୍ଦ ସାତ ଆଦି ମଙ୍ଗଳା ଉଭାନ ସାରିଲେ ॥
୧୩୨ ସ୍ମର ନୃପଙ୍କ ଠାକୁରେ ଯେ କପିଳାସ ବାସୀ ।
କ୍ଷିତ୍ରୁଣ୍ଡି ବଂଶୀ ଦାସ କଲେ ସା ଗୀତ ଭାଷି ॥ ୩୪ ॥

---

୧୩୧ "ଛ .....ସାରିଲେ"—ପୋଥିରେ ନାହିଁ ।
୧୩୨. କ୍ଷିତ୍ରୁ-ଣ୍ଡି—କ୍ଷିତି ପଛ ।

ଟୀକା :—

[ ଏହାର ଅଲ୍ପବିଦ୍ୟ ଲେଖନକାର କେତେକ ଅନଭିଜ୍ଞ ସୁଲଭ ଭ୍ରମ କରିଛି । ଶବ୍ଦର ଆଦ୍ୟ 'ଲ' ସ୍ଥଳେ ସମଧିକତଃ 'ନ' ବ୍ୟବହୃତହୋଇଛି । ଶବ୍ଦରୂପର ସାମାନ୍ୟ ପରିବର୍ତ୍ତନ ସ୍ଥଳେ ବାଖ୍ୟା ଦିଆଯାଉ ନାହିଁ । ]

୧. କାମେଶା – କାମିନୀ; ନୃପମଣି—ନୃପମଣି; କନେକ—କନକ ।
୨ ସାକ୍ୱାସେଣ—ଶ୍ବାସ ପୀଡ଼ିତ ହୋଇ; ଯୋଗାଣପଣ—ଯୋଗ୍ୟତା ।
୩. ଲେଳଇ—ଓହ୍ଲାଇ; ମୁକୁଗ୍—କାଠର କଣ୍ଠାଭରଣ ବିଶେଷ; ଲେବଳତା—ବଲ୍ଲୀଲତ; ନଇଛଣ—ଲକ୍ଷଣ ।
୪. ଚନଇ—ଚକ୍ଷୁଇ; ମନେଷ—ମଣିଷ; ଉପେ—ଭସ୍ମ ।

୬. ଚଟମଙ୍କ—ଏକ ଚମ, ଚର୍ମୈଙ; ବ୍ରାମ୍ନଣ—ବ୍ରାହ୍ମଣ (ବାମୁଣ); ଚଢୋଗ—ଶକାର ଶବ୍ଦଜ, ଛୋକାର, କଲଙ୍କ ବ୍ୟକ୍ତି; କଚସ୍ଥେ—କଷ୍ଟସ୍ଥ ।

୭. ଗନ୍ତା—ଯୋଗୀଙ୍କ ପରଧାନ ବିଶେଷ ଯାହା କଣ୍ଠରୁ ତଳକୁ ଲମ୍ବେ; ନେପିଛୁ—ବୋଲଛୁ ( ଲେପିଛୁ )

୮. ଜଙ୍ଗମ—ଯାଯାବର, ବାସସ୍ଥାନ ଯୋଗୀ; ଜହ୍ନଅଛୁ—(ଲହୁଅଛୁ) ଲେଖିଛୁ; ବେହା—ବିବାହ ।

୯. ନୋଗୃଏ—ପୁଲାଏ (ଲେଗୁଏ); ଦୁଶିବୁ—ଦଶିବୁ; ଝମ୍‌କିବା—ନର୍ତ୍ତିବା ।

୧୦. ନସତେ—ଦୁର୍ବଳ ଭାବରେ, ନିଃସତ୍ତ୍ୱ ଶବ୍ଦଜ; ନିକୁଟି—ଫେଡ଼; ନୁ ଅସଇ—ନ ଆସେ; ଓଦର—ଉଦର ।

୧୧. ଟାଙ୍କା—ରଙ୍କ; ଅପାବନ—ଅସଦାଗୃହୀ; ନିରମାଙ୍ଗି—ଅଚ୍ଛେ ।

୧୨. ଠାବଥିଲେ—ସ୍ଥିର କରିଥିଲେ; ଠୋକର—ବ୍ୟାଘାତ ଦାନ; ସଭିବ—ସ୍ୱଭାବ; ଠିକେ—ନିଷ୍ଠସ୍ଥ ।

୧୩. ଡ଼ାକ—ଡ଼ମ୍ବରୁ; ଢଙ୍ଗର—ଧୂର୍ତ୍ତ; ଡାଙ୍ଗୁଆ—କ୍ଷୀଣକାୟ; ପରମାଣି—ବିଶେଷ ଭାବରେ, ପରମାଣ ଶବ୍ଦଜ ।

୧୪. ଢୋର—ଘୋର, ଶିବଙ୍କ ନାମ ବିଶେଷ; ତପୁସୀ—ତପସ୍ୱୀ; ଢୋକରା—ଅତି ବୃଦ୍ଧ (ଢୋକରା); ତମାଳ—ପରିହାସ ବଚନ; ତାଳେ—ଅବଶ୍ୟ; ଦୋହ୍ଲତ—ଦୁହିତା ।

୧୫. ରାସୁ—ରାଜା; ଅଣଖ—ଜିଦ, ଅନକ ଶବ୍ଦଜ; ଅଣଖ ସାରିବ—ପ୍ରତ୍ୟକ୍ଷ କରିବ, ଅନଷ୍ଟ ଅବସ୍ଥା ଦୂର କରିବ; ଅଣଓହାଡ଼—ଉହାଡ଼ ପଛରେ ରହି ଦେଖିପାରିବା ଭଳି ସ୍ଥାନ ।

୧୬. ଟାକଶର—ଶସ୍ତ୍ରବିଶେଷ; ତଡ଼ତେ—ଶୀଘ୍ର; ତଢ଼ବେଗି—ତଢ଼ିତ୍ ବେଗରେ ।

୧୭. କାସ୍ଥେ—କାୟା; ନୋହ—ନୁହଁ; ଅଚେବନ—ଅଚେତନ ।

୧୮. ଦଇନ—ଦିନସ୍ଥ, ଦୈନ ଶବ୍ଦଜ; ଛରଣ—କୁଠା, ତୃଣ ଶବ୍ଦଜ ।

୧୯. ବୋବାଇଲେ—ବୋବାଳି ଛାଡ଼ିଲେ; ମୁଦସୁଲୀ—ଦାସୀ (ମୁଦୁସୁଲୀ); ଚହଳ ପାଶଲେ—ଡାକ ପକାଇଲେ; ପୁନ୍ୟ—ପୂଣ୍ୟ ।

୨୧. ପିଅର—ପିତା, ପିତଃ ଶବ୍ଦଜ; ପାକଲ ବୁଢ଼ା—ନିସାଢ ବୁଢ଼ା ।

୨୨. ଫରମାଣ—ରାଜାଜ୍ଞା [ ଯାବନିକ ଫର୍ମାନ୍ ଶବ୍ଦଜ ? ସାରଳା ଦାସ ମଧ୍ୟ ଏହା ବ୍ୟବହାର କରିଛନ୍ତି ]; ଫାଇ—ଅଧିକ, ସ୍ଫାତ ଶବ୍ଦଜ ।

୨୩. ଅଇ—ନାରୀଙ୍କୁ ଭଦ୍ର ସଂବୋଧନ, ଆର୍ଯ୍ୟା ଶବ୍ଦଜ; ନଡ—କର ?

୨୪. ସଞ୍ଚା — ଯୋଗାଡ଼ ।

୨୫. ମହାଦେଈ—ମହାଦେବୀ, ରାଣୀ ।

୨୬. ଜଗମୋହୋଣା—ଜଗନ୍ମୋହନା; କୋପୋଳ—କପୋଳ, ଏଠାରେ କିନ୍ତୁ କପାଳ ଅର୍ଥରେ ପ୍ରଯୁକ୍ତ, ପ୍ରାଚୀନ ସାହିତ୍ୟରେ ଏପରି ପ୍ରୟୋଗ ବହୁତଠାରେ ।

୨୭. କାପୋଡ଼—ବସ୍ତ୍ର (କାପଡ଼ା); ଦେଅନ୍ତ—ଦଅନ୍ତ; ଗ୍ରାମ ଅବଶେଷ ଚୁଡ଼ା—ଗ୍ରାମାବଶେଷ ନାମକ ଚୁଡ଼ା; ସୀମନ୍ତ—ସିନ୍ଥି; କଜଳ—କଜ୍ଜ୍ୱଳ ।

୨୮. ଉମ୍ବୁରଣ—ଶାଢ଼ୀ ଉପରେ ଘୋଡ଼ାହେବା ବସ୍ତ୍ର; ସନ୍ଦେଶ—ସଂବାଦ ।

୨୯. କଚ୍ଛକମ୍ୱା—କନ୍ୟାଦାନ କାଳେ କନ୍ୟାପିତାର ଆସନ, କଚ୍ଛକମ୍ୱା ଆଖ୍ୟାନ ସାରଳା ମହାଭାରତରେ ବର୍ଣ୍ଣିତ ଅଛି ।

୩୦. ମୁଛା—ମୂର୍ଚ୍ଛା ।

୩୧. ସୟେଂ—ସ୍ୱୟଂ ।

୩୨. ସେହେନ୍ଦ୍ର—ସ୍ୱେଦ, ସିକତ ।

୩୩. ହେନ—ହୀନ; ପରସଞ୍ଚ—କୁତ୍ସମ, କୁତ୍ସିତ; ହାସ—ପରିହାସ (ହାସ୍ୟ); ସଘାତ—ସଂଘାତ, ସାଙ୍ଗ ।

୩୪. ଛଛଦେ—ସ୍ୱଚ୍ଛନ୍ଦ; କାଦହାଣ୍ଡି—ବିବାହର ପଞ୍ଚମ ଦିନର ଏକ ଅନୁଷ୍ଠାନ, ଏ ଦିନ ପରିହାସ ସମ୍ପର୍କରେ ବନ୍ଧୁମାନେ ପରସ୍ପର ଉପରକୁ କାଦୁ, କାକୁଅ, ଫୋଟକା ଫୋପଡ଼ ହୁଅନ୍ତି; ଛିଦ୍ର—ଛୁଦ୍ର ।

ସଂ: ୫

# କ୍ଷେତ୍ରବିରହ ଚଉତିଶା

( ପୋଥିପାଠ:—କ୍ଷେତ୍ରବିରହ ସଙ୍ଗତ ଚଉତିଶା )

ବିଷ୍ଣୁ ଦାସ

[ ବିଷ୍ଣୁ ଦାସ ଓଡ଼ିଆ ସାହିତ୍ୟ ଗଗନର ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ । ଶ୍ରୀ କ୍ଷେତ୍ରର ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ଜନ୍ମଗ୍ରହଣ କରି ନିଜର ଲେଖନୀ ବଳରେ ପ୍ରତିଷ୍ଠା ଅର୍ଜନ କରିପାରିଥିଲେ । ଜନୈକ ଧନିକ ସୁବୁଦ୍ଧି ଗୋବିନ୍ଦ ଦାସଙ୍କ ପୃଷ୍ଠପୋଷକତା ଲାଭ କରିବା କାଳରେ 'ସାବିତ୍ରି ଚରିତ' ନାମକ ଛାନ୍ଦ କାବ୍ୟ ରଚନା କରିଥିଲେ । ଭଣପୁରର ରାଜପୁତ୍ର ପାର୍ଥ ଶ୍ରୀଚନ୍ଦନଙ୍କ ଇଙ୍ଗିତ ଦେଇ ସେ 'କଳାକଳ୍ପି' ନାମକ କଳ୍ପନିକ କାବ୍ୟ ଏବଂ ନିଜର ନାମରେ 'ପ୍ରେମଲୋଚନା' କାବ୍ୟ ଲେଖିଛନ୍ତି । କବି ବିଷ୍ଣୁଦାସ ବାଣପୁର ରାଜା ରଘୁନାଥ ହରିଚନ୍ଦନଙ୍କ ସଭା ମଣ୍ଡନ କରିଥିବା ତଥା ରଘୁନାଥଙ୍କୁ କାବ୍ୟରଚନା ଶୈଳୀ ଶିକ୍ଷା ଦେଇଥିବା ବିଷୟ 'ଲୀଳା କଳ୍ପି' କାବ୍ୟ ମଧ୍ୟରେ ରଘୁନାଥ ଗର୍ବର ସହ ଉଲ୍ଲେଖ କରିଛନ୍ତି । ବିଷ୍ଣୁ ଦାସଙ୍କର ନିମ୍ନଲିଖିତ ଚଉତିଶାର ସନ୍ଧାନ ମିଳୁଛି:—(୧) ଶ୍ରେଣୀ, (୨) ବର୍ଷାଭିଳନା, (୩) ମନ୍ଦାକ୍ରାନ୍ତା, (୪) କ୍ଷେତ୍ର ବିରହ, (୫) ଚିଠାଉ, (୬) ଦାର୍ତ୍ତିରତ୍ନାକର, (୭) ଗୁଣ୍ଠୁସାଗର । ଏ ମଧ୍ୟରୁ ପ୍ରଥମ ତିନୋଟି ଚଉତିଶା 'ଚଉତିଶା ମଧୁଚକ୍ର'ରେ ସ୍ଥାନ ପାଇଛି । ଅନ୍ୟଗୁଡ଼ିକ ପୋଥି ଆକାରରେ ମୋ ପାଖେ ରହିଛି । କବିଙ୍କର କାଳ ଷୋଡ଼ଶ ଶତାବ୍ଦୀର ଶେଷଭାଗ ଓ ସପ୍ତଦଶ ଶତାବ୍ଦୀର ଅଦ୍ୟ ଭାଗ । 'କ୍ଷେତ୍ରବିରହ ଚଉତିଶା'ର କେତେକ ଐତିହାସିକ ମୂଲ୍ୟ ରହିଛି । କବି ଓ ତାଙ୍କ ସଙ୍ଗୀମାନେ ଦୀର୍ଘ କାଳପାଇଁ ପୁରୀ ଛାଡ଼ିଥିଲେ । ୨୧ଶ ପଦରେ କଳ୍ପବଟର ସ୍ମୃତି ଉଲ୍ଲେଖ ଥିବା ହେତୁ ଖ୍ରୀ: ୧୫୬୮ରେ କଳାପାହାଡ଼ କଳ୍ପବଟକୁ ନଷ୍ଟ କରିବା ପୂର୍ବରୁ ବା ସେହି ସମୟରେ ସେମାନେ ପୁରୀ ଛାଡ଼ିଥିବେ । ଖୋର୍ଧା ଭୋଇ ବଂଶର ପ୍ରବର୍ତ୍ତକ ରାମଚନ୍ଦ୍ର ଦେବ ଶ୍ରୀ ଜଗନ୍ନାଥ ଆଦି ମୂର୍ତ୍ତି ପ୍ରତିଷ୍ଠା କରି ଖ୍ରୀ: ୧୫୯୧ରେ ଗୁଣ୍ଡିଚା ଯାତ୍ରାର ପୁନରାରମ୍ଭ କରିବା ପରେ ଶ୍ରୀ କ୍ଷେତ୍ରକୁ ଫେରିବା ଲାଗି କବିଙ୍କ ମନରେ ଯେଉଁ ପ୍ରବଳ ଉତ୍କଣ୍ଠା ଜାତ ହୋଇଥିବ ତାହାର ଅକ୍ଷରରୂପୀ ପରିଣାମ ଏହି ଚଉତିଶାଟି । ]

( ରାଗ—ଆହାରୀ )

ହଇ ବଷ୍ଣୁ ଦାସ ସଖାମାନଙ୍କୁ ଅତ୍ୟନ୍ତ ବ୍ୟାକୁଳ ହୋଇ ହେ ।
କଲଇଂ କେଉଂ କଟିଣ ମର୍ମମାମ କହିବାକୁ ନ ଆସଇ ହେ ।
ସଘାତ । କେମନ୍ତେ ବଞ୍ଚିବା ଜନ ହେ ।
କାଳ କାଳ ହୋଇ ଶ୍ରୀପୁରୁଷୋତ୍ତମ ଗୁଡ଼ି ରହିଲ ଜୀବନ ହେ ॥୨॥

୫ ନନ୍ଦଂବସୁଂ ଖେଳୁ ହଂସୁ ଆହନଶି ଚନ୍ଦକୁ ଅନାଇ ଥାଇ ହେ ।
ଖଣ୍ଡିଲି ବିଧାତା ଖଳ ବୁଦ୍ଧି କରି ସ୍ୱପ୍ନେହେ ଭେଟ ନ ପାଇ ହେ ।
ସଘାତ । ଖେଦ ଆମ୍ଭର ବଢ଼ିଲ ହେ ।
କେଣେହେ ଶ୍ରୀପୁରୁଷୋତ୍ତମ ନ ଯାଇ ଏ ଜୀବ କହିଂ ରହିଲ ହେ ॥୨॥

ଗର୍ବ କରୁଥାଇ ଆମ୍ଭ ସଙ୍ଗରେ କେଉଂ ବ୍ରହ୍ମା ଇନ୍ଦ୍ର ସର ହେ ।
୧୦ ଯାଂଚ ବ୍ରହ୍ମ ନୟନେ ଦେଖୁଥାଇ ମାନବ ଶରୀର ଧରି ହେ ।
ସଘାତ । ଗଲ ସେ ଗରବ ଚଳ ହେ ।
ଗରୁଡ଼ଧ୍ୱଜ ପଦ୍ମମୁଖ ବିହୁନେ ଜୀବନ ହୋଇଲ ମଳ ହେ ॥୩॥

ଜନ ଘନ ହୋଇ ଘଂଟ ରବ ଶୁଣି ମନ ହୋଉଥାଇ ଉବ୍ରା ହେ ।
ଘନ ତେଜ ବେଗ ମଧ୍ୟେ ମଧ୍ୟ ବଢ଼ିନ ଧୂପ ସତପିକ ମନ୍ଦ ହେ ।
୧୫ ସଘାତ । ଜନ ଘନ ହୋଇ ଯାଇ ହେ ।
ଘାରି ହୋଉଅଛୁ ଦେହ ତା ସୁମରି କଡ଼ାଇଂ ଅଛଇଂ ଜୀବ ହେ ॥୪॥

କେବି ଅକକାଗୁଂ ମଧ ଲାଗିଥାଇ ସ୍ନାହାନ ବେଗେ ସାରିବା ହେ ।
ମଳାଦ୍ରି ନାୟକ ମାନନ୍ଦ ଶ୍ରମୁଖ ବେଗେ ଦର୍ଶନ କରିବା ହେ ।
ସଘାତ । ନାଶ ଗଲ ଏତେ ସୁଖ ହେ ।
୨୦ ନାନା ସ୍ଥାନ ହୋଇ ବୁଲି ମରୁଥାଇ କହୁଂ ନ ସରଇ ଦୁଃଖ ହେ ॥୫॥

ଚରଣ ଉଦଜାମଥାରେ ଯେଉଁଣ ଗୃହୁଂଥାଇ ପଦ୍ମମୁଖ ହେ ।
ଚତୁର୍ଦଶ ଭୁବନର ମଧ୍ୟେ ଆଉ କାହୁଂ ପାଇବା ସେ ସୁଖ ହେ ॥
ସଂଘାତ । ଘୃରି ପାଞ୍ଚ ହୋଇ ଥାଇ ହେ ।
ଚନ୍ଦ୍ରମା ମୁଖ ଆଳତ ବନ୍ଦାପନା ଦର୍ଶନ କରିବା ପାଇଂ ହେ ॥୬॥

---

୧୦. ଧରି—ବହି । ୧୪. ବେଗ—ବେଗ ।

୨୫ ଛାଡ଼ି ଦେଲେ ସୁଖ ଛନ୍ନଭିନ୍ନ ହୋଇ    ନାନା କ୍ଷୋଭ ମନେ ହୋଏ ହେ
କ୍ଷମା ସିନ୍ଧୁ ହୋଇ ଛାଡ଼ିଲେ ସୁହୃଦ୍ୟା    ପ୍ରଭୁଙ୍କୁ ନାହିଁ ଉପାୟେ ହେ ।
ସଂଘାତ । ଛାଡ଼ି ନ ଯାଇ ଜୀବନ ହେ ।
କ୍ଷେତ୍ରବର ଶ୍ରୀ ପୁରୁଷୋତ୍ତମ ଜନ୍ମୁ    ବିଦେଶେ ଯାଉଛୁ ଦିନ ହେ ॥୭॥

ଯେତେବେଳେ ଯେଉଁଆଡ଼େ ଯାଉଥାଇ ତାଙ୍କୁ ଦର୍ଶନ କର ହେ ।
୩୦ ଜନମେ ଜନମେ ଯେତେକ ଦୁଃଖ    ଅନାୟାସ ମାତ୍ରେ ହର ହେ ।
ସଂଘାତ । ଜଗନ୍ନାଥେ ନାହିଁ ସେବା ହେ ।
ଯେଉଁ ଜଗନ୍ନାଥ ଈଶ୍ୱର ସାକ୍ଷାତ    ତାହା କେମନ୍ତ ଲଭିବା ହେ ॥୮॥

ଝୁରି ଝୁରି ଏବେ ଦିନ ନ ସରଇ    ସହସ୍ରେ ବରଷ ହୋଇ ହେ ।
ଝଗଡ଼ି ହୋଇଲ ସୁତ ଦାର ବନ୍ଧୁ    ପୁରୁଷୋତ୍ତମ ନ ଯାଇ ହେ ।
୩୫ ସଂଘାତ । ଝୁରୁଅଛୁ ନେତ୍ରୁ ନୀର ହେ ।
ଝଳ ଆଜନ୍ତି ବଦାପନା ନ ଦେଖି    ଚିତ୍ତ ସନ୍ତତେ ଅଥିର ହେ ॥୯॥

ଞ୍ଚରନ୍ଧ୍ରି ତଟେ ନଗ୍ରରେ ଅଙ୍ଗେ    ନାନା କଉତୁକେ ଥାଇ ହେ ।
ହିଷ୍ଟସ୍ତେ ପାଦ ପ୍ରସାରି ପଦେ ପଦେ    ଅଶ୍ୱମେଧ ଫଳ ପାଇ ହେ ।
ସଂଘାତ । ନ ଟଳଇ ତେତେ ସୁଖ ହେ ।
୪୦ ନଗ୍ରରେ ଅନ୍ନ ମନେ ଏହା ଥିଲା    ଏହା କଲେ ପଦ୍ମମୁଖ ହେ ॥୧୦॥

ଟାକଥାଇ । ପଗ ସବଗରେ । ଟେର    ଫିଟା ଅବକାଶ ପାଇଂ ହେ ।
ଟଳଇ ନାହିଁ ନୟନ ରଙ୍ଗାଧରୁ    ତେଡ଼େ ସୁଖ ଗଲା କାହିଁ ହେ ।
ସଂଘାତ । ଟାଣ ଆମ୍ଭର ସଙ୍କଳ୍ପ ହେ ।
ଟେକ ଆଜନ୍ତି ବଦାପନା ନ ଗୁହିଂ    ଜୀବନ କପାଂ ରହିଲା ହେ ॥୧୧॥

୪୫ ଠବେଠବ ହୋଇ ସାତପାଞ୍ଚ ମିଶି    ଧୂପ ଦରଶନ କର ହେ ।
ଠାଠିକ ପୀୟୂଷ ଝଧି ନୟନରୁ    କେଉଂ ବହିଲେଲା ହର ହେ ।
ସଂଘାତ । ଠାକୁରଙ୍କୁ ଜଣାଇବା ହେ ।
ଠିକେ ବଷ୍ଟୁ କହେ ଶ୍ରୀ ପୁରୁଷୋତ୍ତମ ପୁଣି କେଉଂଦିନ ଯିବା ହେ ॥୧୨॥

ଡର ନ ଥାଇଁ ଅକାଳ ମରଣକୁ    ପାଦପଦ୍ମ ଦେଖୁଥାଇ ହେ ।
୫୦ ଡର ମାଡ଼ିଲା ଏବେ ସବୁ କଥାକୁ    ସେ ପାଦପଦ୍ମ ନ ଚାହୁଁ ହେ ।
ଫଘାତ । ଡେଳାଇ କ୍ଷେତ୍ର ଉତ୍ତମ ହେ ।
ଡାଳ ପକ୍ଷୀ ପ୍ରାୟେ ଅମୂଳ ହୋଇଣ    ପଞ୍ଚୁଂ ତନ୍ତୁଂରେ ବିଶ୍ରାମ ହେ ॥୧୩॥

ତାଳେ ହେ ଆମ୍ଭେ ତ ମହାପାପୀ ନୋହୁ    ଶ୍ରୀପୁରୁଷୋତ୍ତମେ ଥାଇ ହେ ।
ତମ ମେଳଣ ସାତ ପାଞ୍ଚ ସଙ୍ଗରେ    ଶ୍ରୀ ମହାପ୍ରସାଦ ଖାଇ ହେ ।
୫୫ ଫଘାତ । ତଗ ମେଳା ବୋଲି ହରିଂ ହେ
ତମ ମହାପାପ ଆମ୍ଭର ଠାକୁର    ଆସିବ ବୋଲି ନପାରି ହେ ॥୧୪॥

ଅଣିମାଦି ଅଇଶ୍ୱର୍ଯ୍ୟ ଅମ୍ଭଙ୍କୁ ତ    ଇତର ପ୍ରାୟେ ଦିଶଇ ହେ ।
ଅଣହେଳା ଇନ୍ଦ୍ର ପଦବୀକି କରି    ଶ୍ରୀ ପୁରୁଷୋତ୍ତମେ ଥାଇ ହେ ।
ଫଘାତ । ଏଣିକ ହ୍ରି ଏତେ ହୋଇ ହେ ।
୬୦ ଅଣ ଆସ୍ଥିତ ଏ ଶରୀର ଜୀବନ    ଶ୍ରୀ ପୁରୁଷୋତ୍ତମେ ଯାଉ ହେ ॥୧୫॥

ତୁମ୍ଭେ ଆମ୍ଭେ ସାତପାଞ୍ଚ ମିଶିକରି    ରଥ ଆଗପଛେ ଥାଇ ହେ ।
ସ୍ତୁତିମାନ ପଢ଼ି ପ୍ରଦକ୍ଷିଣ କରି    ଆନନ୍ଦ ହୋଇଣ ଚାହୁଁ ହେ ।
ଫଘାତ । ତପନ ତାପ ସମୟେ ହେ ।
ତୁଙ୍ଗ ଶରାଙ୍ଗ ଗୁଇକ ଆଶ୍ରେକରି    ମହାପାପ କରି କ୍ଷୟେ ହେ ॥୧୬॥

୬୫ ଥୋଇଥିଲା ଧାତା ଏତେ ଦୁଃଖ ଭୋଗ    ଅମ୍ଭଙ୍କୁ ଦେବାର ପାଇଂ ହେ ।
ଥେଣ୍ଟପଣ କରି କ୍ଷେତ୍ର ଛଡ଼ାଇଲେ    ଥୋଇଥିଲେକ ଲୁଚାଇ ହେ ।
ଫଘାତ । ଥିବାଯାଏ ଦେହ ଥିବ ହେ ।
ଥିବାଯାଏ ଆଉ ଶ୍ରୀ ପୁରୁଷୋତ୍ତମ    କ୍ଷଣେ ଅନ୍ତର ନୋହିବ ହେ ॥୧୭॥

ଦାଣ୍ଡଯାକ ପୂରି ଶୁଭେ ହରିହରି    ଗୁଣ୍ଡିଚା ନଗର ଯାଏ ହେ ।
୭୦ ଦିଅଆଦେଇ ଏକ ଆରକେ ନିର୍ମାଲ୍ୟ    କେ କରି ପାତି ନ ପାଏ ହେ ।
ଫଘାତ । ଦୂରଗଲା ଭେଦଭେଦ ଭାବ ହେ ।
ଦୋଷ ନ ଜାଣିଣ ଏମନ୍ତ ନିଗ୍ରହ    କରିଅଛନ୍ତି ମାଧବ ହେ ॥୧୮॥

ଧର୍ମ ଯେ ଥାଇ ଆମ୍ଭେ ରଥ ଦଉଡ଼ି  ସଭିଙ୍କେ ଏକା ସଙ୍କଟେ ହେ
ଧାଇଁ ବଜେ କର ମହାପ୍ରଭୁ ବୋଲି  ନେହ କରନ୍ତି ପଦ୍ମମୁଖେ ହେ ।
୭୫  ସଂଘାତ । ଧାତା କଳ୍ପକ ବନ୍ଦନ ନେଧ ।
ଧର୍ମେ ଧ୍ୱଂସ ହୋଏ ତା ସୁମରିଲେ  ଗହେ ନ ମାଡ଼ଇ ନିତ ହେ ॥୧୯॥

ନାନା ଦୁଃଖ ସୁଖ ବଞ୍ଚି ହୋଇଲୁଇଂ  ଶ୍ରୀ ପୁରୁଷୋତ୍ତମେ ଥାଇ ହେ ।
ନୀଳାଦ୍ରି ନାୟକ ମନପୂର୍ଣ୍ଣ କଲେ  ଆମ୍ଭଙ୍କୁ ... ଛଡ଼ାଇ ହେ ।
ସଂଘାତ । ନାହିଁ ... ଙ୍କ ଉତ୍ତର ହେ ।
୮୦ ନିଶ୍ଚୟେ ଯେ ସେ ଶ୍ରୀମୁଖ ଦେଖିଥିବ  ଏ ଦୁଃଖ ନକ ତାହାର ହେ ॥୨୦॥

ଚାହାନ୍ତି ଅବକାଶକୁ ଯାଇଥାଇ  ପରମ ଆନନ୍ଦ ହୋଇ ହେ ।
ପ୍ରଥମ କବାଟ ଫିଟିବା ସମୟ  ଜଗି ଯେ ଥାଇଁ ଅନାଇଂ ହେ ।
ସଂଘାତ । ପୁଷ୍ପମାଳ ଚୂଳ ବେଶ ହେ ।
ପଦ୍ମନୟନ ଯେ ପୂର୍ବ ବଶୁଥାଇ  ନିଦ୍ରା କଷାୟ ଆଳସ ହେ ॥୨୧॥

୮୫ ଫୁଲ୍ଲମାଳଚୂଳ ଉଲ୍ଲାଗି ସମୟେ  ଜଗି ଦରଶନ କରି ହେ ।
ଫିଟିଲ୍ଲ ସେ ସୁଖ ନୟନ ପଥରୁ  କେଉଂ ବିଧି ନେଲା ହରି ହେ ॥
ସଂଘାତ । ଫୁଟେ ମନ ତାହା ଦେଖି ହେ ।
ଫାଟି ନ ଯାଇ ଦେହ କାହିଁ ରହିଛି  ସେ ଅବକାଶ ନ ଦେଖି ହେ ॥୨୨॥

ବଳଆରୁ ଜଣେ ପେଲାପେଲି ହୋଇ  ସିଂହାସନ ପାଏ ଧରି ହେ ।
୯୦ ବରଜ ବାସୀଙ୍କ ଶ୍ରୀଚରଣ ତଳେ  ମସ୍ତକ ନେଇ ଲଗାଇ ହେ ।
ସଂଘାତ । ବହୁ ଦଣ୍ଡବତ କରି ହେ ।
ବହୁତ ବେଳ ବଦନ ବିଲୋକନ  କେଉଂ ବିଧିନେଲା ହରି ହେ ॥୨୩॥

ଭଗିଲା ଅମ୍ଭର ସବୁ କଉତକ  ଛାଡ଼ି ନୀଳାଦ୍ରି ନିବାସ ହେ ।
ଭସ୍ମ ଉଙ୍ଗାଇ ଶ୍ରୀଚରଣ ... ହୋଇଯାଅ ପୀତବାସ ହେ ।
୯୫ ସଂଘାତ । ଭେଳା ଭସିଲା ଅମ୍ଭର ହେ ।
ଘବେ ବସ୍ତୁ କହେ ଶ୍ରୀପୁରୁଷୋତ୍ତମୁ  ବଇଥେ ଭଗିଲା ଘର ହେ ॥୨୪॥

---

୮୫. କରି— କର ।

ମଞ୍ଚା ମଣ୍ଡପରେ ସ୍ନାନଯାତ୍ରା କଲେ ହେନାପଟା ଲଗି ଗୁହ୍ମି ହେ ।
ମୁ ଭୁମ୍ଭ ଚରଣେ ଭୁମ୍ଭେ ମୋ ଆଗରେ ନାନା ଭାବ ବୁଝାବୁଝି ହେ ।
ସଂଘାତ । ମାର୍ଜନ ଚନ୍ଦନ ମାର ହେ ।
୧୦୦ ମୁଣ୍ଡେ ଯେନ କରି ଜଳ ହୋଇଥାଇ ସେ ସୁଖ କଲ ଦୂର ହେ ॥୨୫॥

ଜଗନ୍ନାଥ ପ୍ରଭୁ ଏମନ୍ତ କହନ୍ତେ ଶୁଣିଲେ ସବୁ ପୁଆଇବା ହେ ।
ଯେତେ ଲୋକଥାଇ ଶ୍ରୀ ପୁରୁଷୋତ୍ତମ ଏକା ସାଙ୍ଗ ହୋଇ ଯିବା ହେ ।
ସଂଘାତ । ଗୀବନ ଥାଉ ଆମ୍ଭର ହେ ।
ଯେ ହୋଉ ସେ ହୋଉ ଶ୍ରୀପୁରୁଷୋତ୍ତମ୍ମୁ ଆଉ ନୋହିବା ବାହାର ହେ ॥୨୬॥

୧୦୫ ରଙ୍କ ଯେମନ୍ତ ରତ୍ନବାଞ୍ଛା କରଇ ଅମ୍ଭ ବାଞ୍ଛା ସେହି ରୂପେ ହେ ।
ରହିବ କଥା କେବଳ ସବୁଦିନେ ପୂରୁବ ଜନଙ୍କ ମତେ ହେ ।
ସଂଘାତ । ରହିବ ଏ କଥା କର୍ମେ ହେ ।
ରମାରମଣ ଶ୍ରୀଚରଣକୁ ସେବି ରହିବା ପୁରୁଷୋତ୍ତମେ ହେ ॥୨୭॥

ଲବଣଧି ତଟେ ସ୍ନାନସାରି କରି ଚକ୍ରକୁ ଯେ ଦେଇ ଗୁହ୍ମି ହେ ।
୧୧୦ ଲଗିଣ୍ଣ ଚନ୍ତା ମନେ ଅନବରତେ ଭେଟେ ସୁଖଗନ୍ଧ କାନ୍ଧି ହେ ।
ସଂଘାତ । ଲବଣ୍ୟନଧି ଶ୍ରୀମୁଖ ହେ ।
ଲୋଭ ଲଗାଇ କେତିଦିନ ଗୁହ୍ମିବା ନାଶେଯିବ ସବୁ ଦୁଃଖ ହେ ॥୨୮॥

ବଟ ବୃକ୍ଷକୁ ଅବଲୋକନ କରି ବ୍ରହ୍ମହତ୍ୟା ପାପ ହରି ହେ ।
ବେଳେବେଳେକେ ଗୁଣ୍ଡିଚା ଆଶ୍ରେ କରି ସକଳ ଦୁରିତ ହେ ।
୧୧୫ ସଂଘାତ । ବର୍ଜିବ କେବେ ଦୁର୍ଗତି ହେ ।
ବସ୍ତୁ କଣ୍ଟକକୁ ଆଶ୍ରେ କରିଥିବା ସେ ଅମ୍ଭ ସବୁ ସମ୍ପତ୍ତି ହେ ॥୨୯॥

ଶ୍ରୀଖଣ୍ଡ ଯାତ୍ରା ଜଉକବର ଲଗି ସୁନ୍ଦର ବେଶ ସେ ଦେଖି ହେ ।
ସେ ସମୟେ ମନ ଯେମନ୍ତ ହୁଅଇ ଯେ ଯାହା ମନକୁ ସାକ୍ଷୀ ହେ ।
ସଂଘାତ । ଶରୀରେ କ ପ୍ରାଣେ ଥିବା ହେ
୧୨୦ ସାଙ୍ଗ ସୁଖ ହୋଇ ଶ୍ରୀଗୁଣ୍ଡିଚି ଯାତ୍ରା ଦରଶନ ପାଇଂ ଯିବା ହେ ॥୩୦

୧୧୭. ଜଉକବର—ଜରିକବର ।]

ସଞ୍ଜଧୂପ ସାରି ତତ୍ତ୍ୱସମ ଲାଗି ସମସ୍ତ ସୁଖ ବଢ଼ୁଛି ହେ ।
ସେ କଥ ମାନ ଜୀବନ ଥାଉଁ ଥାଉଁ ହୋଇଲାକ ଆସି ଦୂର ହେ ।
ସଂଘାତ । ଶ୍ରୀ ପୁରୁଷୋତ୍ତମ ବିନା ହେ ।
ସବୁ ପ୍ରକାରେ ସବୁ ସୁଖ ସରିଲା ହୋଇଲୁଁଇଂ ଧାନହୀନା ହେ ॥୩୧॥

୧୨୫ ସାରି ଦରଶନ ପୁରାଣ ସଭାରେ ଆଗ ହୋଇ ବସି ଥାଇ ହେ ।
ସେ କଥାମାନ ଆପଣା ସଙ୍ଗୁ ଜଣେ କରିଷକେ ଭେଟ ନାହିଁ ହେ ।
ସଂଘାତ । ସେମାନ ଦେଖିବା ଗଲା ହେ ।
ସବୁଆଡେ ହାହାକାର କରି ବୁଲୁ [ବୁଲୁ] ଦିନ ନ ସରିଲା ହେ ॥୩୨॥

ହରି ହତ୍ୟା କରି ଜନପୁରେ ବୁଲି ପଛେ ହୋଇଲେ ମୂର୍ଚ୍ଛିତ ହେ ।
୧୩୦ ହରିଚରଣକୁ ଆଶ୍ରେ କରି ଆମ୍ଭେ ସେ ପୁରେ ହେଲୁଁଇ ଜାତ ହେ ।
ସଂଘାତ । ସ୍ୱାନ ଅଦୃଷ୍ଟଙ୍କୁ ଯେତେ ହେ ।
ହନ୍ତସନ୍ତ ହୋଇ ଦିନ ସରୁ ନାହିଁ ଦୁଃଖ ପାଉଥାଇଁ କେତେ ହେ ॥୩୩॥

କ୍ଷେମେ ତୀର୍ଥରାଜ ତଟେ କ୍ଷେତ୍ରରାଜ ଗିରିରାଜ ବୃକ୍ଷ ରାଜ ହେ ।
ଘୁମୁଟେ ପକ୍ଷୀରାଜ ପ୍ରାସାଦ ରାଜେ ବିଜୟ ଦେବଙ୍କ ରାଜ ହେ ।
୧୩୫ ସଂଘାତ । କ୍ଷମାଶୀଳବନ୍ତ ନାହା ହେ ।
କ୍ଷେମେ ବିଷ୍ଣୁ କହେ ଶ୍ରୀ ପୁରୁଷୋତ୍ତମ ଯେନଯାଅ ଚଉବାହା ହେ ॥୩୪॥

—ଃ୦ଃ—

---

୧୩୪. ପ୍ରାସାଦରାଜେ—ପ୍ରସାଦରାଜ ।

ଟୀକା :—

୧. ସଘାତ—ସଙ୍ଘାତ ।
୩. ଗଲା—ପତିତ ହେବା, ନଷ୍ଟ ହେବା; ସଲା—ଅରିଷ୍ଟ ।
୭. ଉପାସ୍ୱେ—ଉପାୟ ।
୯. ଝଳା—ଦୀପ୍ତ; ଅଥିର—ଅସ୍ଥିର ।
୧୧. ଟେରା—ଯବନିକା; ଠାଣ—ଗର୍ବ; ଟେକ—ଶ୍ରେଷ୍ଠ ।

୧୨. ଠାଠିକ—ମନୋହର, ସ୍ୱାସ୍ଥିକ ଶବ୍ଦଜ—ଅଠାଠିକର ବିପରୀତ । ଠକେ—ନଷ୍ଟସ୍ଥରେ ।

୧୩. ଡେଲାଇ—ହରାଇ; ଡାଳପକ୍ଷୀ—ମାଂସହୀନ ପକ୍ଷୀ ।

୧୪. ଢ଼ାଳେ—ଅବଶ୍ୟ, ନିଶ୍ଚିତ ଭାବେ; ଢ଼ମ ମେଳଣ—ଅଡ଼ମ୍ବର ଭଳି; ଢ଼ଗ ମେଳ—ଛିଟା ବାକ୍ୟରେ; ଢ଼ମ ମହାପାପ—ଗର୍ବରୂପକ ପାତ୍ର ।

୧୫. ଅଣହେଳା—ଅନାଦର, ଅନୁହେଳା ଶବ୍ଦଜ; ଅଣଆସୃତ—ଅନାସ୍ତୃତ ।

୧୭. ଥେଣ୍ଟା··ଲୁଗୁଇ—ଜଗନ୍ନାଥଙ୍କ ମୂର୍ତ୍ତି ସେବକାହାରେ ଲୁକ୍କାୟିତ ଭାବେ ଥିବା ସୂଚନା ଏଥିରେ ଥିବା ସମ୍ଭବ ।

୧୯. ବିଚ୍ଛେଦ—ବିଚ୍ଛେଦ ।

୨୧. ଆଳସ—ଅଳସ୍ୟ ।

୨୨. ଉଲ୍ଲଗି—ଉଲ୍ଲଗି, ଉଲୁଗାଇବା; ଫୁଟେ—ପ୍ରଫୁଲ୍ଲିତ ହୁଏ ।

୨୫. ସେନାପଟା—ଠାକୁରଙ୍କ ପଛପଟର କାଠର ସାଜ ।

୨୮. ଲବଣାଧି—ଲବଣାବ୍ଧି, ସମୁଦ୍ର ।

୨୯. ଅଶ୍ରେ—ଆଶ୍ରୟ ।

୩୦. ଶ୍ରୀଖଣ୍ଡ—ଚନ୍ଦନ; ଜଣକରେ—ଜରଶୋଷା ।

୩୧. ଚତୁସମ—ଚତୁଃସମ, ଚନ୍ଦନ, ଅଗର, କସ୍ତୁରୀ ଓ କୁଙ୍କୁମ; ଦୀନକ୍ଷୀଣା—ଅରକ୍ଷ, ଦୀନ ଓ କ୍ଷୀଣ ।

୩୪ କ୍ଷେମ—ମଙ୍ଗଳ; ତୀର୍ଥରାଜ—ସମୁଦ୍ର; ଗିରିରାଜ—ନୀଳଗିରି; ବୃକ୍ଷରାଜ—କଳ୍ପବଟ; ପକ୍ଷୀରାଜ—ଗରୁଡ଼; ପ୍ରାସାଦରାଜ—ଶ୍ରୀମନ୍ଦିର; ନାହା—ନାଥ, ପ୍ରଭୁ ।



ସଂ: ୬

# ଚନ୍ଦ୍ରଦୂତ ଚଉତିଶା

ରଘୁନାଥ ହରିଚନ୍ଦନ

[ ଖ୍ରୀ: ସପ୍ତଦଶ ଶତାବ୍ଦୀର ଆଦ୍ୟ ଭାଗର କାଣପୁରର ଏହି ରାଜା କବି ବିଷ୍ଣୁଦାସଙ୍କୁ ନିଜ ପାରିତୋଷିକ ଦେଇ ତାଙ୍କଠାରୁ କବିତା ରଚନା କୌଶଳ ଶିକ୍ଷା କରିଥିବା ବିଷୟ ସ୍ୱରଚିତ 'ଲୀଳାବତୀ' ନାମକ ବୃହତ୍ କାଳ୍ପନିକ ଛାନ୍ଦକାବ୍ୟ ମଧ୍ୟରେ ଲିପିବଦ୍ଧ କରିଛନ୍ତି । 'ଲୀଳାବତୀ' କାବ୍ୟ ଓ ସଂସ୍କୃତରେ କେତେକ ସଂଗୀତ ଛଡ଼ା ନିମ୍ନଲିଖିତ ଚଉତିଶା ଗୁଡ଼ିକର ମଧ୍ୟ ସେ ରଚୟିତା:—କଳକଣ୍ଠ ଚଉତିଶା, ରସଉତ୍ପଳ ଚଉତିଶା ଓ ଚନ୍ଦ୍ରଦୂତ ଚଉତିଶା । କବିଙ୍କର ଆଠଜଣ ରାଣୀଙ୍କ ମଧ୍ୟରୁ ନୂଆଗଡ଼ ରାଜଜେମା ଶକୁନ୍ତଳା ତାଙ୍କର ପ୍ରିୟତମା ଥିଲେ । କବିଙ୍କର ରଚନା ଗୁଡ଼ିକ ଶୃଙ୍ଗାର ରସାତ୍ମକ ଏବଂ ଅଳଙ୍କାରିକ ଶୈଳୀ ପ୍ରତି ନିଜର ଶ୍ରଦ୍ଧା-ବଶରୁ ସ୍ଥଳବିଶେଷରେ କୁଟିଳ । ଆଦିରସାପ୍ଲୁତ ରୀତି କାବ୍ୟକୁ ପ୍ରୋତ୍ସାହିତ କରିଥିବା ଓଡ଼ିଆ ରାଜକୁଳୀ କବିମାନଙ୍କ ମଧ୍ୟରେ ରଘୁନାଥ ଅଗ୍ରଣୀ । ]

( ରାଗ—କାମୋଦୀ )

କୃଷ୍ଣ କନକ କମଳାକ୍ଷ ଜଗତ୍ତ୍ର ପରେ
କଳାକର କିରଣ ଗୃହ୍ଣଂ,
କରନ୍ତୁ ସୁବର୍ଣ୍ଣର ବୃନ୍ଦାବନ ବିହାର
କାମ ବିକାରେ ଧୀର ନୋହି ହେ,
୫ ଚନ୍ଦ୍ରଦୂତ, କର ଗମନ ବୃନ୍ଦାବନ,
କାମିନୀ ଶିରୋମଣି ବୃଷଭାନୁ ନନ୍ଦିନୀ
କତିରେ କହ ମୋ ବଚନ ହେ ॥ ୧ ॥

ଖଞ୍ଜନ ଲୋଚନୀ ସେ ସ୍ୱରୁଚି ଚମ୍ପକ ଗୋରୀ
କୁଟିଳ କେଶୀ ମୃଦୁହାସୀ,

୧୦ କ୍ଷୀଣ ଉଦରୀ ପୀନ    ଜଘନା ଚନ୍ଦ୍ରାନନା
ମାଧବ କାଳ ପିକ ଭାଷୀ ହେ,
ଚନ୍ଦ୍ରଦୂତ, ଖଟ୍ୱାଙ୍ଗଧରଧର ଶର,
ଖର ଅପାଙ୍ଗ ତାର    ଦେଖିଲେ ବ୍ରହ୍ମା ସୁର
ଶଙ୍କର.ତପ ହେବ ଦୂର ହେ ॥ ୨ ॥

୧୫ ଗଜଗମନା ଆଗେ    କନ୍ଦର୍ପ ଧୀର ବାଗେ
ଗୋବିନ୍ଦ କାମବାଣେ ଦୁଃଖୀ,
ତଡି କେଳି ଭୁମ୍ବର    ଗୁଣଗୁଣି ମନର
ପ୍ରାଣ ରହୁଛି ପ୍ରାଣସଖି ରେ,
ଚନ୍ଦ୍ରଦୂତ, ଗୁଣସାଗର ଦୟାନିଧି ।
୨୦ ଗୋପି ଅଙ୍ଗନା ଗଣ    ମଧ୍ୟରେ ଶିରୋମଣି
ଆମ୍ଭର ସୁଖର ବାରଧିରେ ॥ ୩ ॥

ଧନ ଜଘନା ବଦନେ    କମଳେ ଅବଗାହ୍ନ
ସାରି ଖରରେ ଉଭା ହୋଇ,
ଧନ ସୁସଞ୍ଚ କୁଚ    ଶ୍ରେଣୀରୁ ବନ ବନ୍ଧ
୨୪ ପତନେ ଏମନ୍ତ ବଣଇ ହେ,
ଚନ୍ଦ୍ରଦୂତ, ଧନ କି ସୁଧା ବରଷଇ ।
ଧନ ରାହୁକ ମୁଖ    ଚନ୍ଦ୍ର ଅମୃତ ପିଇ
ଫଗର ନ ପାରି ବମଇଂ ହେ ॥ ୪ ॥

ମାରଜମୁଖୀ ବଦନେ    ସଖୀ ସମୂହ ଘେନି
୩୦ ବନ ବିହାର କରୁଥିଲା,
ମାରଜନାଥ ସୁତା    ଛଟ ନକଟ ବାଟେ
ଦଇବେ ଭେଟ ସେ ହୋଇଲା ହେ ।
ଚନ୍ଦ୍ରଦୂତ, ନୟନେ ଦେଖିଲି ତା ମୁଖ,
ନବ ମାରଜ ନେତ୍ରୀ    ଅପାଙ୍ଗ ଭଙ୍ଗି ଶରେ
୩୫ ଅନଙ୍ଗ ଦେଲା ବହୁ ଦୁଃଖ ହେ ॥ ୫ ॥

---

୨୧. ବାରଧି—ବାରିଧି । ୨୪. ଶ୍ରେଣୀରୁ—ଶ୍ରୋଣିରୁ ।

ସ୍ମରୁ ଚନ୍ଦ୍ରବଦନ    ଦେଖି ମୋର ନୟନ
ଚକୋର ତୃପ୍ତ ନୋହିଲା ।
ଚତୁସ୍ତମଣି ଛାର    ଶୋଭା ପଥେ ପ୍ରସାର
କରିବା ସନ୍ତତ ଲଭିଲି ହେ,
୪୦ ଚନ୍ଦ୍ରଦୂତ, ସ୍ମରୁଚତୁସ୍ତ ଆଗେ କହ,
ଚନ୍ଧର ଭ୍ରମର    ସୁମନ ଶିଳୀମୁଖେ
ଦଳି ହୋଉଛି ତାଙ୍କ ଦେହ ହେ ॥ ୬ ॥

ଛଇଳୀ ମଣି ସଙ୍ଗେ    ବନେ ବୁଲନ୍ତେ ରଙ୍ଗେ
ପଲାଶ ଅପଲାଶ ଦେଖି,
୪୫ କ୍ଷୀରସିନ୍ଧୁ ଜାନକୀ    ବେଲଇ ପ୍ରାଣମଣି
କର୍ପା ହୋଇଲେ ଏହୁ ଦୁଃଖୀ ହେ,
ଚନ୍ଦ୍ରଦୂତ, ଛନ୍ଦେ ମୁ କହିଲି ଏମନ୍ତ ।
ଛୁଡିଲେ ଏହୁ ସତ୍ତ୍ୱଂ    ଆପଣା ନିଜ କାନ୍ତ
ତେଣୁ ଦଣ୍ଡି [ଲା] ରତିକାନ୍ତ ହେ ॥ ୭ ॥

୫୦ ଜଳଜ ମୁଖୀ ଦିନେ    ଜଳବିହାର ସାରି
ଯମୁନା ତୀରେ ଉଭା ହୋଇ,
ଜାନୁ ପୀନଜଘନ    ତ୍ରିବଳି ନାଭିସ୍ଥାନ
ଯତନ ଲଗିଣ ଦିଶଇ ହେ,
ଚନ୍ଦ୍ରଦୂତ, ଯୋଗେ ମୁ ଯାଇ ହୋଇଲଇଁ,
୫୫ ଜୀବନ ବନ୍ଧୁ ମୋତେ    ଦେଖି ସାର୍ଦ୍ଧିକ ଭାବେ
ବଦନ ପୋତି ନ ଠେକଇ ହେ ॥ ୮ ॥

କ୍ଷୀଣ ବସନ ଫୁଟି    ଦିଶଇ ସ୍ତନ ତଟୀ
କିବା ଜଳଧରଗତ ଖ୍ରମ,
ଝଷ କେତନ କେଳି    କଦମ୍ବ କୋରକ କି
୬୦ କମଳ କଢ଼ୀ ହେବ ସମ ହେ,
ଚନ୍ଦ୍ରଦୂତ, କ୍ଷୀଣ ମଧ୍ୟାର ସିଂହ ଠାଣି;

---

୫୯. ଝଷକେତନ—ସ୍ୱଷକେତନ ।

ଝୁରୁଛି ପ୍ରାଣ ମୋର　　　ଧିଆଇଁ ସେ ରୂପକୁ
ନ ଦେଖି ସେ ନବ ତରୁଣୀ ହେ ॥ ୯ ॥

ନାଗସ୍ୱାମଣି ଝଡେ　　　ନିର୍ଜନ ସ୍ଥାନେ ବସି
୬୫　ଭବାନୀ ପୂଜା କରୁଥିଲା,
ନିର୍ମଳ ଧୂପ ଦୀପ　　　ଗନ୍ଧ ପୁଷ୍ପ ଭୋଜନ
ଦେଇଣ ଏମନ୍ତ ମାଗିଲା ହେ,
ଚନ୍ଦ୍ରଦୂତ, ନନ୍ଦନନ୍ଦନ ପତି ହଅ,
ନିରତେ ତାଙ୍କ ପଦ　　　ପଲ୍ଲବ ନ ଛାଡ଼ିବ
୭୦　ଏମନ୍ତ ଆଜ୍ଞା ହୋଇ ଥାଅ ହେ ॥ ୧୦ ॥

ଝଙ୍କିଧରଙ୍କ ପ୍ରାଣ　　　ବଲ୍ଲଭି ପୁଣ ଶୁଣ
ତାଙ୍କ ବିଚ୍ଛେଦେ ମୋର ଜୀବ,
ଝଳ ବେଗେଣ ଯିବ　　　ଟିକଏ ନ ରହିବ
ଏମନ୍ତ ଆଜ୍ଞା ମୋତେ ହେବ ହେ,
୭୫　ଚନ୍ଦ୍ରଦୂତ, ଝାଙ୍କ ଯେ ଲତାନ୍ତରେ ଥିଲି
ଟେକ ତା ପ୍ରୀତିବାଣୀ　　　ଶ୍ରବଣ ପୁଟେ ଶୁଣି
ବଶ ମୁ ତାହାର ହୋଇଲି ହେ ॥ ୧୧ ॥

ଠଣ ଧୀର ତରୁଣୀ　　　ରମଣୀ ଗୁଣମଣି
ଝଣ୍ଟି ତା ଚକ୍ଷୁ ମୋ ଦେଖିଲା,
୮୦　ଠିକ ଚତୁର ସେହୁ　　　ମୋତେ କଥା ନ କହୁ
ମୁକୁର ଆଗେ ଦେଖାଇଲା ହେ,
ଚନ୍ଦ୍ରଦୂତ, ଠାବରୁ ଉଠି ବେଗେ ଗଲା,
ଠିକେ ସଖୀ ତାହାର　　　ଲଳିତା ନାମ ଯାର
ତାହାର ଆଗରେ କହିଲା ହେ ॥ ୧୨ ॥

୮୫　ଡମରୁମଧ୍ୟା ପୁଣି　　　ସଖୀ ବଚନ ଶୁଣି
ବହୁତ ପରିହାସ କଲା ।

---

୮୫, ପୁଣି—ଝିଣୀ ।

ତାଙ୍କ ଆଣ ଗୋ ସଖି — ସେ ବଡ଼ ଚତୁରଙ୍କୁ
କାହାର ଦୋଷେକେ ଚୁଷିଲି ହେ,
ଚନ୍ଦ୍ରଦୂତ, ତୋଳାରେ ଦଶୁଛି ସେ କାଳ,
୯୦ ଉଗର ପ୍ରାଣ ମୋର — ନ ଯାଇ ରହିଅଛି
ନ ଦେଖି ସେ ମୁଖ କମଳ ହେ ॥ ୧୩ ॥

ତାଳ — ମୋତେ — ଲଭିଲି ସୁଖ ଯେତେ
ସୁଧାସା-ଲ ହୋଏ ତୁଚ୍ଛ,
ତଟତୃମାଳ ବାଣୀ — ଶ୍ରବଣେ ପୁଟେ ଶୁଣି
୯୫ ତତ୍ୱଂକ ମୁକ୍ତି ଉପଲକ୍ଷ ହେ;
ଚନ୍ଦ୍ରଦୂତ, ତାଳେହେ ତାକୁ ମୁରୁଛିଲି,
ତମପଣ ତ କଳି — ଗୋପପୁରୁ ଅଇଲି
ବରେକ କଂପାଇ ନ ଚଳି ହେ ॥ ୧୪ ॥

ଏଣୀନୟନା ଗୁଣ- — ମଣି ରମଣୀମଣି
୧୦୦ ଅନଙ୍ଗରଙ୍ଗୀ, ସୁରଙ୍ଗିମା,
ଏଣାଙ୍କ ବଦନା — ସୁସଞ୍ଜ ପୀନସ୍ତନା
ସେ ମତ୍ତ ମରାଳ ଗମନା ହେ,
ଚନ୍ଦ୍ରଦୂତ, ନାରୀଗଣ ଶିରୋମଣି,
ନାକ ନଗରନାରୀ — ନୋହନ୍ତି ତାଙ୍କୁ ସରି
୧୦୫ ସ୍ୱପ୍ନନ୍ତୁ ଟମୂର୍ତ୍ତି ଧରଣୀ ହେ ॥ ୧୫ ॥

ତରୁଣୀ ମଣି ବଦନେ — ମୋହର ତନୁ ଦେଖେ
ତା ତନୁ ଦ୍ରୁତବନ୍ଧ ଦେଖି,
ତଲ୍ୟ ନ କର ମୋତେ — ତୁନ ହୋଇ ବସିଲି
ଲୋଚକ ପୂର୍ଣ୍ଣ କର ଆଖି ହେ,
୧୧୦ ଚନ୍ଦ୍ରଦୂତ, ତବଦ ହୋଇଲଇ ଗୃହିଁ,
ତାପ କଂପାଇ ମୋତେ — କହୁଛୁ ସୁତନୁ ଗୋ
କେବଳ ଅପରାଧୀ ମୁହିଁ ହେ ॥ ୧୬ ॥

---

୯୩. ତୁଚ୍ଛ—ତୁସ୍ତ।

ଥସ୍ପେ କରଣ ମୋତେ　　　　କହ କମଳମୁଖୀ
କଂପା କରନ୍ତୁ ଗୁରୁ ମାନ,
୧୧୫　ସ୍ଥୂଳ ପୀରତ ଧନ　　　　ଦେଇ କଣିନ୍ତୁ ମୋତେ
ତାହାଂକ ହୁଅ ସାବଧାନ ହେ,
ଚନ୍ଦ୍ର ଦୂତ, ସ୍ଥାଣୁ ସପଥ ସତେ ମୋତେ,
ଥିବ ତୁମ୍ଭ ସଙ୍ଗରେ　　　　କାହ୍ନଂକ ନ ଯିବ ଗୋ
ପ୍ରମାଣ କହୁଅଛୁ ତୋତେ ॥ ୧୭ ॥

୧୨୦　ଦିନେ ବୃନ୍ଦାବନରେ　　　　ଶରଦ ଯାମିନୀରେ
ରାସ ଉତ୍ସବ ଆରମ୍ଭିଲୁ,
ଦ୍ଵିଜରାଜ ଆନନ　　　　ଗୋପ ଅଙ୍ଗନାଗଣ
ମଧ୍ୟରୁ ତାଙ୍କୁ ଘେନଗଲୁ [ହେ]
ଚନ୍ଦ୍ର ଦୂତ, ଦିବ୍ୟ କୁସୁମମାନ ତୋଳି,
୧୨୫　ଦାଡ଼ିମ ଦଣ୍ଟୀରେ　　　　ବୃକ୍ଷମାନ ରଚିଲୁ
ଶିଖଣ୍ଡ ମଣ୍ଡିତ ମଣ୍ଡଳ ହେ ॥ ୧୮ ॥

ଧରଣୀ ମଣ୍ଡନାକୁ　　　　ଘେନ ବିବିଧ ବନେ
କରନ୍ତେ ନାନାରଙ୍ଗେ କେଳି,
ଧୀର ଗମନା କହେ　　　　ଶୁଣହେ ଧୀରବପୁ
୧୩୦　ଆଉ ମୁ ନ ପାରଇ ଚଳି ହେ ।
ଚନ୍ଦ୍ର ଦୂତ, ଧୀରେ ଭଣିଲ ଶୁଣ ପ୍ରାଣ,
ଧର ମୋହର କର　　　　ଆରୋହ ସ୍କନ୍ଧ ପର
ଏବେ ଗୋ ଯିବା ଭଦ୍ର ବନ ॥ ୧୯ ॥

ମାଳେନ୍ଦବର ବେଣୀ　　　　ବାହ କନକ ଗାନ୍ଧୀ
୧୩୫　ନାହଂ ନ କଲୁ ମୋର ବାଣୀ,

---

୧୩୨. ମୋହର୍-ମୋହନ ।

ନୀରଜ ପଦ ତାର     କଣ୍ଟତେ ତୋଳିଲାରୁ
ଘ୍ରାଣ କଲି ମୁଁ ନ ଜାଣି ହେ
ଚନ୍ଦ୍ରଦୂତ, ନିଷ୍ଠୁର ନାହିଁ ମୋର ତତ୍ନଂ,
ନାଗରୀ ଶିରୋମଣି     ବୃଷଭାନୁନନ୍ଦନୀ
୧୪୦ ନିଶାରେ ଚେଇଗଲା ଯତ୍ନଂ ॥ ୨୦ ॥

ପୁଷ୍ପବତୀ ଦିବସ     ନ ଦେଖି ମୋତେ ପାଶ
କସ୍ତୁରୀ ଲେଖନୀ ଯେମନ୍ତ,
ପଟେ ମୋହର ରୂପ     ଲେଖି ମୁଖକଳାପ
ସାତ୍ତ୍ୱିକେ ଆଲିଙ୍ଗନ କଲି ହେ,
୧୪୫ ଚନ୍ଦ୍ରଦୂତ, ପ୍ରାସାଦେ ହୋଇଲଇ ଯାଇ,
ପଛ ଆଡ଼ରେ ରହି     ଦେଖୁ ଯେ ଥିଲି ମୁହିଁ
ସେ ଭାବ ପାସୋର ନ ଯାଇ ॥ ୨୧ ॥

ଫିଟି କୁଟିଳ-କଚ     ଉଚ ସଞ୍ଚ କୁଚରେ
ପଡ଼ନ୍ତେ ଏମନ୍ତ ଦିଶଇ,
୧୫୦ ଫଣୀକି ଶାତକୁମ୍ଭ     କୁଧର ଆରୋହିଛି
ଚନ୍ଦ୍ରୁ ଅମୃତ ପାନ ପାଇଁ [ହେ],
ଚନ୍ଦ୍ରଦୂତ, ଫୁଟିଲି ଜମ୍ବାଧର ଦେଖି,
ଯାଇ ରୋଳମ୍ବରାଜ     ନାଭି ହ୍ରଦରୁ କି ସେ
ଊର୍ଦ୍ଧ୍ୱଗମନ ଶୋଭାପେକ୍ଷୀ ॥ ୨୨ ॥

୧୫୫ ବଧୂବଦନୀ ଯେନ     ବନେ ବୁଲନ୍ତେ ହେଜ
ଦେଖିଲୁ ବଲ୍ଲୀ ପୁଷ୍ପବତୀ,
ବସି ମଧୁସୂଦନ     ମଧୁ କରଇ ପାନ
ଦ୍ୱିଜ ତା ଉଡ଼ାଇ ଦିଅନ୍ତି [ହେ],
ଚନ୍ଦ୍ରଦୂତ, ବନଜବଦନୀ ହଂସିଲି
୧୬୦ ବୋଇଲି ଭଲି ଦ୍ୱିଜ     କାକପୋଷ ଆତ୍ମଜ
କହନ୍ତେ ଧର୍ମ୍ମ ତ ଦିଶିଲି ॥ ୨୩ ॥

---

୧୩୮. ତତ୍ନଂ—ଜତ୍ନଂ । ୧୪୦. ଯତ୍ନଂ—ତତ୍ନଂ ।

ଭାବେ ଭଣିଲ ମୁହିଂ    ଶୁଣ ଗୋ ପ୍ରାଣ ସହି
ଭାବ ତ ଦ୍ୱିଜ ନ ଜାଣନ୍ତି,
ଭାବ ତ ସିଦ୍ଧ ଫଳ    କହେ ମଞ୍ଜୁଳ ଗିର
୧୬୫ ରସିକା ରସ ବିସ୍ତାରନ୍ତି [ହେ],
ଚନ୍ଦ୍ରଦୂତ, ଭାବବତୀ କହିଲି ପୁଣ
ଭଣ୍ଡାଭଣ୍ଡି ସେ କଲି    ଭାବରସ ସ୍ଥାପିଲି
ଧର୍ମକୁ ଏକହି ଦୂଷଣ ହେ ॥ ୨୪ ॥

ମଧୁସମସ୍ତ କାଳେ    ମାଧବୀ କୁସୁମରେ
୧୭୦ ମଧୁପ କରେ ମଧୁପାନ,
ମୃହାମଣ୍ଡନୀ ଗୃହିଂ    ମାରବିକାରେ ମୋହି
ମୋତେ ସେ କଲା ଆଲିଙ୍ଗନ [ହେ],
ଚନ୍ଦ୍ରଦୂତ, ମତେ ଚୁମ୍ବିଲି ମୁଖ ତାର,
ମାଧବୀ ମଣ୍ଡପରେ    କୁସୁମ ଶଯ୍ୟାପରେ
୧୭୫ ଚନ୍ତିଲି ସୁରତ ବିସ୍ତାର ହେ ॥ ୨୫ ॥

ଯମ ଭଗନୀ ଘାଟରେ    ବସିଥିଲି ସାନୁରେ
ଯମୁନା ତାତ ଅସ୍ତ ଜାଣି,
ଜଳଜ ତେଜକର    ଚଞ୍ଚରୀକ ଚଳନ୍ତେ
ଯୁବତୀ ଧୀରେ କହେ ବାଣୀ [ହେ],
୧୮୦ ଚନ୍ଦ୍ରଦୂତ, ଜାଣ ଏ ଯୋଗମ୍ୟ ନୋହଁନ୍ତି,
ଯେଣୁ ପଦ୍ମିନୀ ତେଜ    କୁମୁଦିନୀ ଭଜନ୍ତି
ଶଠ ନାୟକ ଏହି ମତ ॥ ୨୬ ॥

ରମଣୀ ବାଣୀ ଶୁଣି    ବୋଇଲି ପ୍ରାଣମଣି
ଏ ମଧୁସୂଦନ ସୁଜାଣ,
୧୮୫ ରସବତୀ ପଦ୍ମିନୀ    ଅଙ୍ଗସଙ୍ଗରୁ ରଙ୍ଗ
ଚିହ୍ନ ଦେଖାଉଛନ୍ତି ପୁଣ [ହେ],
ଚନ୍ଦ୍ରଦୂତ, ରସିକା ରସବତୀ ଯେହୁ,
ରସିକା ତାର ମନ    ରସକନୀ ବିହୀନ
ଯହିଁ ସେ ଥିବ ତହିଁ ଥାଉ ॥ ୨୭ ॥

୧୯୦ ଲବଙ୍ଗଲତା ତଳେ          ଲଳିତ ପବନରେ
ଲଳିତେ ଲୀଳନ୍ତେ ଡଳକ,
ଲବଣାମ୍ବୁଧି ତଟେ          ମକର ମଣ୍ଡନ୍ତେଣ
ବିରହ ଜଳ ସମୁଲ୍ଲକ ହେ,
ଚନ୍ଦ୍ରଦୂତ, ଲଜ୍ଜାନାରୀଣ ଶିରୋମଣି,
୧୯୫ ଲକ୍ଷାରସ ତାହାର          ପାଦତଳେ ଲେଖନ୍ତେ
ବେଗେ ଧଇଲ ବେନି ପାଣି ॥ ୨୮ ॥

ବନଜ ବଦନାଙ୍କ          କଜ୍ଜ୍ୱଳ ଭୁମ୍ଭ କାନ୍ତ
ଏମନ୍ତ ଉଦନ୍ତ ଦେଇଛୁ,
ବଧୂବଦନ ତାର          ଯେଣୁ ନରତେ ଚନ୍ଦ୍ର
୨୦୦ ତେଣୁ କେବଳ ପ୍ରାଣ ଅଛୁ [ହେ],
ଚନ୍ଦ୍ରଦୂତ, ବଧାତା ବିରହ ହୋଇଲା,
ବଡ଼ ଅମୂଲ୍ୟମଣି          କଣ୍ଠତଟରେ ଥିଲା
ସେ ଏବେ ଦୂରନ୍ତେ ରହିଲା ॥ ୨୯ ॥

ଷଷ୍ଠ ଦଶ ସହସ୍ର          ଶଏ ଅଷ୍ଟ କାମିନୀ
୨୦୫ ଯେବେହେଁ ଅଛନ୍ତି ମୋହର,
ସୁନ୍ଦରସୀମା ବିନୁ          ତ୍ରୁଟିକ କୋଟି ଯୁଗ
କର ଦହୁଛି କାମଶର ହେ,
ଚନ୍ଦ୍ରଦୂତ, ସୁନ୍ଦରୀ ସୁନ୍ଦର ସୁନ୍ଦର,
ସୁକେଶୀ ମୃଦୁହାସୀ          କାମକେଳି ଲାଳସୀ
୨୧୦ ତଭୁସ ଧର ପରେ ଧୀର ହେ ॥ ୩୦ ॥

ସାରଙ୍ଗ ସଖା ଶୁଣ          ଦେଖି ତୁମ୍ଭ କରୁଣ
ସାରଙ୍ଗ ନୟନ ବୁଝିବ ।
ସାରଙ୍ଗ ଛଦ ତଳ୍ପ          କଳ୍ପନା କର ସେହୁ
ଅତନୁ ଅବଶ୍ୟ ତର୍ଜିବ ହେ,
୨୧୫ ଚନ୍ଦ୍ରଦୂତ, ସାରଙ୍ଗଗମନା-ରଙ୍ଗିଣୀ,

---

୨୦୬. ତ୍ରୁଟିକ—ତୃଟୀୟ । ୨୧୪. ଅବଶ୍ୟ—ଅବଶ

ସାରଙ୍ଗକର ମୋର ସତେହେ ଲଗିବ କି
ଜଡ ସଞ୍ଜ କୁଟରେ ପୁଣି ॥ ୩୧ ॥

ସାରଙ୍ଗ ଶୋଭା ଦେଖି ସାରଙ୍ଗମୁଖୀ ଦୁଃଖୀ
ସାରଙ୍ଗ ନୟନ ବୁଜିବ ।
୨୨୦ ସଖୀ ତାର ଲଳିତା ସର୍ବଗୁଣରେ ଜିତା
ତାହାର ଆଗରେ କହିବ [ହେ],
ଚନ୍ଦ୍ରଦୂତ. ଶପଥ ନ ପିବ ତା ପାଣି,
ଷୋଳ ସହସ୍ର ସଖୀ ବେଢ଼ିଣ ବସିଥିବେ
ଦେଖି କରିବେ ଉପହାସ ହେ ॥ ୩୨ ॥

୨୨୫ ହରିବଦନୀ ହରି ହରିତେ ହରି ଦେଖି
ହରି ଭୁବନ ସୁମରିବ,
ହରି ବଇରି ହରି ଶିଳୀମୁଖରୁ ରଖି
ନୋହିଲେ ନଷ୍ଟେ ନାଶ ଯିବ ହେ,
ଚନ୍ଦ୍ରଦୂତ, ହରି ତା ତନୁରେ ଲାଗିଲେ,
୨୩୦ ହରିବାଣୀ ଶୁଣିଲେ ହରିଗମନୀ ଆଜ୍ଞ
ସତେ କି ଜୀଇଂଥିବ ଭଲେ ॥ ୩୩ ॥

ଛଳଛନ୍ଦେ ସୁଧାକର ଚଳ ଗୋପନଗର
ସୁଦନ୍ତୀ ଉଦନ୍ତ ଆଣିବ,
ଛଇଳୀ ଶିରୋମଣି ବୃଷଭାନୁ ନନ୍ଦନୀ
୨୩୫ ଗ୍ରୀମୂରେ ବନସ୍ପି କହିବ ହେ,
ଚନ୍ଦ୍ରଦୂତ, କ୍ଷୀରସିନ୍ଧୁ ଯାର ଶୟନ,
କ୍ଷମାକର ହେ ରଘୁ- ନାଥ ହରିଚନ୍ଦନ
ପୁରୁଷୋତ୍ତମର ଜୀବନ ହେ ॥ ୩୪ ॥

---

୨୩୩. ଆଣିବ—ଅଣିବୁ । ୨୩୫. କହିବହେ—କହିବୁରେ ।
୨୩୬. ଯାର ଶୟନ—ଜାନଜପାନ ।

**ଟୀକା :—**

୪. ଫୁପାଇ—ସଂକ୍ରନ୍ଦନ କରି, କାନ୍ଦି; ବମଇଂ—ବାନ୍ତି କରଇ ।
୬. ଶିଳୀମୁଖ—ଶର ।
୭. ଅପଘନ—ହରଦ୍‌ବର୍ଣ୍ଣସ୍ଥାନ ।
୮. ସାତ୍ତ୍ୱିକଭାବ—ପ୍ରେମଭାବ ।
୯. ଜଳଧିଜାତ ଧାମ—ସ୍ୱର୍ଣ୍ଣ ଶମ୍ଭୁ; ମଖା—ଜହି ।
୧୧. ଅଗ୍ୟା—ଆଜ୍ଞା; ଟେକ—ଶ୍ରେଷ୍ଠ ।
୧୩. ଦୋଷେକେ—ଦୋଷରୁ; ଦ୍ୱଙ୍ଗର—ଦାସ ।
୧୪. ଢଗଢମାଳ—ପରିହାସମୟ ଛଟା କଥା ।
୧୬. ତଲ୍ଲେ—ଲୟ, ତଲ୍‌—ଲୟ; ତବଦ—ପ୍ରବନ୍ଧ ।
୨୧. ଦ୍ୱିଜାପ—ଚନ୍ଦ୍ର ।
୨୨. ଫାଇ—ଶ୍ରେଷ୍ଠ ।
୨୩. ମଧୁସୂଦନ—ଭ୍ରମର; କାକପୋଷ—କୋକିଳ ।
୨୪. ଏକନ୍ତ—ଏକମାତ୍ର, କର୍ଣ୍ଣିତାର୍ଥକ ଦ୍ୱ ପ୍ରତ୍ୟୟଯୁକ୍ତ ।
୨୬. ସୁଜାଣ—ସୁଜ୍ଞାନ । ୩୦. ସୁନ୍ଦରୀ ସୁନ୍ଦର ସୁନର—ସୁନ୍ଦରୀମାନଙ୍କ ସୌନ୍ଦର୍ଯ୍ୟ ମଧ୍ୟରେ ଶୋଭମାନ୍ ।
୩୧. ସାରଙ୍ଗ ସଖା—ଚନ୍ଦ୍ର, ସାରଙ୍ଗଛଦ—ହଂସୁଲ ଭୁଲି; ସାରଙ୍ଗ—ପଦ୍ମ, ହସ୍ତୀ ।
୩୨. ସାରଙ୍ଗ—ଗର୍ଭୀ, ଚନ୍ଦ୍ର, ପଦ୍ମ ।
୩୩. ହରିତ—ଘାସ; ହରି—ଚନ୍ଦ୍ର, ଶୁକପକ୍ଷୀ, ହରଦ୍‌ବର୍ଣ୍ଣ, ଯମ, ଶିବ, ଫୁଲ, କରଣ, କୋକିଳ, ହଂସ ।
୩୪. ଛନ୍ଦେ—ସ୍ୱଚ୍ଛନ୍ଦେ; ଛଇଲ—ଶୋଭାମୟୀ, ଛବିଳ ଶବ୍ଦଜ ।

—୪୦୫—

# ଯୋଗୀ ଚଉତିଶା

ନାଥିଆ

[ କବିଙ୍କର ପ୍ରକୃତ ନାମଟି ନାଥ ବା ଲୋକନାଥ ହୋଇପାରେ ଅଥବା ସେ ନାଥ ସଂପ୍ରଦାୟର ବ୍ୟକ୍ତି ହୋଇଥିବାରୁ ଆପଣାକୁ ନାଥିଅ ବୋଲଇ ଥାଇ ପାରନ୍ତି । ଏହାଙ୍କର ଅନ୍ୟତର ରଚନା ଜ୍ଞାନୋଦୟ କୋଇଲି ବା ଜ୍ଞାନ କୋଇଲି ଓଡ଼ିଶା ଲୋକପ୍ରିୟ । କବିଙ୍କର କାଳ ଆନୁମାନିକ ସପ୍ତଦଶ ଶତାବ୍ଦୀ । ବ୍ରହ୍ମଜ୍ଞାନ ସହ ପରିଚିତ ନ ହେଲେ ଚଉତିଶାର ଠାର ଗୁଢ଼ରୁ ବୁଝିବା କଠିଣ । ଚଉତିଶାର 'ଯ' ପଦଟି ପୋଥିରେ ନାହିଁ ]

( ରାଗ—ତମାଳ )

କନ୍ଦର୍ପ କୌପୁନ ମାରି,     କାଉଂରି ମଣ୍ଡଳ ଅଛୁ ଆବୋରି,
ମୋ ଯୋଗୀ ଯେ,     କପାଳେ ଆସନ କରି ॥ ୧ ॥

ଖୋଜ ଦେଉ ମନ ମତି,     ଖିନ୍ନନାଳ ଘରେ ଲୁଚିଛୁ ବସି,
ମୋ ଯୋଗୀ ଯେ,     ଖଟନ୍ତି ପାଙ୍କଣପତି ॥ ୨ ॥

୫ ଗିରି ଶିଖେ ଖୋଜ ଯାଇ,     ଗୀତ ଗାଉଛନ୍ତି ଯଂତ୍ର ବଜାଇ
ମୋ ଯୋଗୀ ଯେ,     ସେ ଯେ ଗଗନ ଗୁମ୍ଫାରେ ରହି ॥ ୩ ॥

ଘଟେ କରିଅଛୁ ବାସ,     ଘଟେ ଘଟେ ପୂରିଅଛୁ ଅଶେଷ,
ମୋ ଯୋଗୀ ଯେ,     ଘଟାଇ ଅଛୁ ଅଶେଷ ॥ ୪ ॥

ଙଣାକାର ନାନାକାର,     ଅକାର ମକାର ଯେନ ଉକାର,
୧୦ ମୋ ଯୋଗୀ ଯେ,     ସେହି ଅଣାକାର ନାନାକାର ॥ ୫ ॥

ଚାରିବେଦ ଯୋଗୀ ଥାଳ,     ଚାରିଖାନଯାକ ରୁଦ୍ରାକ୍ଷମାଳ,
ମୋ ଯୋଗୀ ଯେ,     ଚନ୍ଦେ ନିବାରିଲ କାଳ ॥ ୬ ॥

ଛଉଚକ୍ର ଯୋଗୀ ଭେଦି     ଛଛନ୍ଦେ ରହିଛୁ ଶୂନ୍ୟେ ସମାଧି,
ମୋ ଯୋଗୀ ଯେ,     କାମ କ୍ରୋଧ ଲୋଭ ଛେଦି ॥ ୭ ॥

---

୭. ଘଟେ—ବାଟେ । ୯. ଉକାର—ଅକାର ।

୧୫ ଜଗି କଲ୍ପ ଯୋଗ ମୁଦ୍ରା, ଜାଗ୍ରତ ଘଟରେ ଯୋଗୀ ଗଳ୍ପ ନଦ୍ରା,
ମୋ ଯୋଗୀ ଯେ, ଜଗିଛନ୍ତି ଯାକୁ ମୁଦ୍ରା ॥ ୮ ॥

ଝଟୁଛୁ ଗଙ୍ଗା ଯମୁନା, ଝଁର ଶିଖେ ଜଗି ରହେ ସୁସୁମ୍ନା,
ମୋ ଯୋଗୀ ଯେ, ଝଲକ ପଡ଼େ ଚେତନା ॥ ୯ ॥

ନଦାନ ଭୂମିରେ ଯୋଗୀ ନାଗଫେଣା ମାଡ଼ି ଉଛନ୍ତି ଜାଗି,
୨୦ ମୋ ଯୋଗୀ ଯେ, ସେ ତ ନଦାନ ଭୂମିକି ଜଗି ॥ ୧୦ ॥

ଟେକଛି ଶୂନ୍ୟରେ ଶମ୍ଭୁ, ଟୋପି ଟୋପି ହୋଇ ପଡ଼ୁଛି ଅମ୍ବୁ,
ମୋ ଯୋଗୀ ଯେ, ଟେକ ଧୂନ କରେ କମ୍ବୁ ॥ ୧୧ ॥

ଠାବ କେ କଣ୍ଡବ ତାଙ୍କୁ ଠାଟିକେ ଗୁରୁ କହେ ଟିକାକୁ,
ମୋ ଯୋଗୀ ଯେ, ଟିକେ ଗୁରୁ କହେ ନାହିଁଆଙ୍କୁ ॥ ୧୨ ॥

୨୫ ଡର ନାହିଁ ଯୋଗୀ ଅଙ୍ଗେ, ଡମ୍ବୁରୁ ବଜାନ୍ତି ଚେଲାଙ୍କ ସଙ୍ଗେ,
ମୋ ଯୋଗୀ ଯେ, ଡାକ ଅନହତ ରଙ୍ଗେ ॥ ୧୩ ॥

ଢ଼ଳି ଗୁହାଂ ଗୋଲହାଟ, ଢ଼ଳହଳ ହୋଇ ପଡ଼େ କବାଟ,
ମୋ ଯୋଗୀ ଯେ, ଢ଼ାଳେ ଶୂନ୍ୟେ କଳ୍ପ ମଠ ॥ ୧୪ ॥

ଆଶ୍ରେ ତା ଅଛଇ ଭୂଇ, ଏକାଦଶ ଇନ୍ଦ୍ରିୟ ଅଛି ନେଇ,
୩୦ ମୋ ଯୋଗୀ ଯେ, ସେ ତ ଉଜାଣିରେ ଅଛି ରହି ॥ ୧୫ ॥

ତ୍ରିକୂଟ ଭିତରେ ସ୍ଥାନ, ତ୍ରିବେଣୀରେ ଯୋଗୀ କରେ ସ୍ନାହାନ,
ମୋ ଯୋଗୀ ଯେ, ତ୍ରିପୁଣ୍ଡ ତାହାର ମନ ॥ ୧୬ ॥

ଅବର ପୁରୁଷ ଦେଖି, ଥାଇ ଶୂନ୍ୟଙ୍କ ମଣ୍ଡଳେ ରହି,
ମୋ ଯୋଗୀ ଯେ, ସେ ଯେ ତଥାପି ଶୂନ୍ୟରେ ମଗ୍ନ ॥୧୭॥

୩୫ ଦେଖନ୍ତୁ ନୋହେ ବାହାର, ଦଦରା ଦେଖିଲେ ଦଶ ଦୁଆର,
ମୋ ଯୋଗୀ ଯେ, ଦଣ୍ଡକେ ହେଲେ ବାହାର ॥ ୧୮ ॥

ଧ୍ରୁବ ମଣ୍ଡଳ ଶୂନ୍ୟର ଧରିଛନ୍ତି ଯୋଗୀ ସଦସ୍ଥିର,
ମୋ ଯୋଗୀ ଯେ, ଧୂନ ଶୁଭେ ନିରନ୍ତର ॥ ୧୯ ॥

ନଦାନ ଭୂମିକି ଯୋଗୀ ନାଗଫେଣା ମାଡ଼ି ଉଛନ୍ତି ଯୋଗୀ,
୪୦ ମୋ ଯୋଗୀ ଯେ, ନଦାନ ଭୂମିକି ଜଗି ॥ ୨୦ ॥

---

୧୭. ସୁସୁମ୍ନା—ସୁମନା । ୨୦. ଜଗି—ଜାଗି । ୨୯. ଇନ୍ଦ୍ରିୟ ଅଛି—ଚନ୍ଦ୍ରସ୍ଥ । ୩୮. ଧୂନ—ଧ୍ୟାନ ।

ପାଶେ ଜଳୁଅଛି ବତ୍ତି, ପ୍ରକୃତିକି ନେଇ କଲ ଭେଟି,
ମୋ ଯୋଗୀ ଯେ, ପରଂବ୍ରହ୍ମ ଶୁଦ୍ଧ ଜ୍ୟୋତି ॥ ୨୧ ॥

ପାଦେ ଅଷ୍ଟପାଶୀ ଯେତ ଫୁଙ୍କାବନ୍ଧ ପରେ ଆସନ ଭିଡ଼,
ମୋ ଯୋଗୀ ଯେ, ଫେଣା ବସିଅଛି ମଡ଼ ॥ ୨୨ ॥

୪୫ ବଜ୍ର ଗିରି ବୋଲି ଯେଉଁ, ବସି ପୋଡିଛନ୍ତି ତ୍ରିଶଳ ଗୋଟି,
ମୋ ଯୋଗୀ ଯେ, ବ୍ରହ୍ମାଣ୍ଡ ବସୁଛି ଫୁଟି ॥ ୨୩ ॥

ଭେଦ କହିଛନ୍ତି ଗୁରୁ, ଭୁବଣ ନାଥିଆ ପାଇଲ ମେରୁ,
ମୋ ଯୋଗୀ ଯେ, ଭଗ୍ନ ହୋଇଅଛି ମେରୁ ॥ ୨୪ ॥

ମଠକୁ ମୃନାଳ ପଥ, ମତ୍ତ ହସ୍ତୀ ମୁଖେ ଏକଇ ଦନ୍ତ,
୫୦ ମୋ ଯୋଗୀ ଯେ, ମହିମା ନେ କରୁ ଅନ୍ତ ॥ ୨୫ ॥

ରହିଛନ୍ତି ଯୋଗୀ ହୋଇ, ରହଦବା ନକ ସେଠାରେ ନାହିଁ,
ମୋ ଯୋଗୀ ଯେ, ରଜନୀ ପାଉଛି ତହିଁ ॥ ୨୬ ॥

ଲୋଭ ମୋହ କାମ କ୍ରୋଧ ଛେଦ ପକାଇଲ ସକଳ ଭେଦ,
ମୋ ଯୋଗୀ ଯେ, ଲୟେ କରି ଯୋଗ ସିଦ୍ଧ ॥ ୨୭ ॥

୫୫ ବ୍ରହ୍ମା ନ ପାଇଲେ ଚିହ୍ନି ବ୍ରହ୍ମ ଗାୟତ୍ରୀ କରିଅଛି ଧ୍ୱନି,
ମୋ ଯୋଗୀ ଯେ, ବ୍ରହ୍ମାଣ୍ଡ ଗିଳିକ ଯେନି ॥ ୨୮ ॥

ସିଧ ରସୁକ୍ଷର ଛନ୍ଦ, ସିଷୁମ୍ନା ଦ୍ୱାରେ କରିଛି ବନ୍ଦୀ,
ମୋ ଯୋଗୀ ଯେ, ସିଦ୍ଧି ହୋଏ ତାଙ୍କ କନ୍ଦ ॥ ୨୯ ॥

ସିଧ ଯୋଗୀ ତା ବଖାଣି, ସଚରାଚର ସର୍ବେ ଜାବେ ପଶି,
୬୦ ମୋ ଯୋଗୀ ଯେ, ଶୂନ୍ୟଥାନେ ଛନ୍ତି ବସି ॥ ୩୦ ॥

ସିନ୍ଧୁବେଦ ପାରେ ସେତୁ, ସପ୍ତପାତାଳ କଲ କଠାଉ,
ମୋ ଯୋଗୀ ଯେ, ସମ କେହି ନାହିଁ ଆଉ ॥ ୩୧ ॥

ହଂଅରୁ ହେଲ ଓଂକାର, ଓଂକାରୁ ମକାର ଯେନି ଆକାର,
ମୋ ଯୋଗୀ ଯେ, ଅଣାକାରୁ ନାନାକାର ॥ ୩୨ ॥

---

୪୯. ମୃନାଳ—ମୃଣାଳ; ମତ୍ତ—ମତ୍ତ୍ରି । ୫୧ ନକ—କସୀ ।
୫୩. ଲୋଭମୋହ—ଲୁଭମହ । ୫୪. ସିଦ୍ଧ—ସିଧ୍ୟ । ୫୮. ସିଦ୍ଧ—ସିଧ୍ୟ । ୫୯. ଜାବେ—ଜଣେ । ୬୩. ହଂଅରୁ—ହଠରେ ।

୨୫ ଷଠମ ଗୁରୁ କଲେ ଦୟା, ଗ୍ରନ୍ଥ ନସଂଶୟ ହେଲ ନାହିଁଆ,
ମୋ ଯୋଗୀ ଯେ, ; କ୍ଷଣେକେ ଛୁଟିଲା ମାୟା,
ମୋ ଯୋଗୀ ଯେ ॥ ୩୩ ॥

---

## ଟୀକା :—

୧. କନ୍ଦର୍ପ କୌପୁନ— ମୁଦ୍ରା ବିଶେଷ; କାଉଂସମଣ୍ଡଳ—ହୃଦୟ ।
୨. ଖିନନାଳ—କ୍ଷୀଣ ପଥ ।
୬. ଗୁରୁଖାନ—ଅଙ୍ଗ, ମୁନ୍ଦ, କାନ, ନାକ ।
୭. ଛଚକ୍ର—ଷଟ୍ ଚକ୍ର:—ମୂଳାଧାର, ସ୍ୱାଧିଷ୍ଠାନ, ମଣିପୁର, ଅନାହତ, ବିଶୁଦ୍ଧ ଓ ଆଜ୍ଞା; ଛନ୍ଦେ—ସ୍ୱଚ୍ଛନ୍ଦେ; ସମାଦ—ଯୋଗାସନ, ସମାଧି ଶବ୍ଦକ ।
୧୧. ଧୁନ—ଧ୍ୱନି ।
୧୨. ଠାଠିକ—ସ୍ୱସ୍ତିକ ଶବ୍ଦକ, ମଙ୍ଗଳ, ଏଦ୍ୱାର ବିପରୀତ ଅଠାଠିକ, ବର୍ତ୍ତମାନ ମଧ୍ୟ ଚଳେ; ଟିକା—ଅକ୍ଷରଟିଏ ଊଣା ଅଛି ।
୧୩. ଅନହତ—ଅନାହତ ।
୧୪. ଗୋଲହାଟ—ତ୍ରିକୂଟ ଉପରର ଧ୍ୟାନ ବିନ୍ଦୁ
୧୬. ତ୍ରିବେଣୀ—ଇଡ଼ା, ପିଙ୍ଗଳା, ସୁଷୁମ୍ନା ନାଡ଼ୀ ତିନୋଟି; ତ୍ରିକୂଟ—ତ୍ରିବେଣୀରେ ମିଳନ ସ୍ଥଳ; ସ୍ନାହାନ—ସ୍ନାନ; ତୃପୁତ—ତୃପ୍ତି, ତୃପ୍ତ ଅର୍ଥ ।
୧୮. ଦେଉଳ—ଦେହ; ଦଶଦୁଆର—ଦଶହି ଦ୍ୱାର, ଦଶଟି ଛିଦ୍ର ।
୧୯. ଧୃବ—ଧ୍ରୁବ ।
୨୨. ଫୁଙ୍କାବକ—ଶରୀର ଯନ୍ତ୍ର ।
୨୮. ଚନ୍ଦି—ଚନ୍ଦ୍ରି ।
୨୯. ସିଧିରଷ୍ଟକ୍ଷର—ସିଦ୍ଧିପ୍ରଦ ଏହି ଅକ୍ଷରମାନ; ସୁଷୁମନା—ସୁଷୁମ୍ନା । ଚନ୍ଧ—ସଂକୀର୍ଣ୍ଣ ପଥ ।
୩୦. ସିଧ—ସିଦ୍ଧ ।
୩୧. ସିସୁବେଦ—ଯୋଗୀର ସାଧନାର ପ୍ରାପ୍ତି, ପରମ ।
୩୩. ନସଂଶୟ—ନିଃସଂଶୟ ।

ସଂ: ୮

# ବିପ୍ରସିଂହା ଚଉତିଶା

ବିପ୍ରସିଂହ ଦାସ

( ବିଶ୍ୱନାଥ ଖୁଣ୍ଟିଆଙ୍କର 'ବିଚିତ୍ର ରାମାୟଣ', ଭକ୍ତଚରଣଙ୍କର 'ମଥୁରା ମଙ୍ଗଳ' ତଥା ଅନ୍ୟାନ୍ୟ ବହୁ ପ୍ରାଚୀନ ରଚନାରେ ରାଗନିର୍ଦ୍ଦେଶ ସ୍ଥଳେ ଏହି ଚଉତିଶାଟିର ବାଣୀଟି ଉଲ୍ଲେଖ ଥିବା ହେତୁ ଏହା ଯେ ଏକ ସୁପ୍ରସିଦ୍ଧ ପ୍ରାଚୀନ ରଚନା ଏହା ନିଃସନ୍ଦେହ । ଅନ୍ୟତ୍ର ଏହା ବିପ୍ରସିଂହା ଚଉତିଶା ଓ ବିପ୍ରସିଂହ ଚଉତିଶା ନାମରେ ଉଲ୍ଲିଖିତ ହୋଇଛି । କବିଙ୍କ ସମ୍ପର୍କରେ କିଛି ଜଣାନାହିଁ । ଏହି ଚଉତିଶାର ବର୍ଣ୍ଣକ୍ରମ ଏହିପରି :—ଆଦ୍ୟ ଅକ୍ଷର, ତାପରେ ପ୍ରାନ୍ତ ଅକ୍ଷର, ତାପରେ ଆଦ୍ୟର ଦ୍ୱିତୀୟ ଅକ୍ଷର, ତାପରେ ପ୍ରାନ୍ତ ଅକ୍ଷରର ପୂର୍ବ ଅକ୍ଷର, ଏହି କ୍ରମରେ କ, କ୍ଷ, ଖ, ହ ଆଦି । ପୋଥିରେ 'ଠ' ପଦଟି ନାହିଁ )

( ରାଗ—ପଞ୍ଚମବରାଡି )

କୃଷ୍ଣଙ୍କର ଘେନି ସନ୍ଦେଶ ଉଦ୍ଧବ ଗୋପେ ପ୍ରବେଶ
ରଥ ରୁହାଇଲେ ନନ୍ଦ ଦ୍ୱାରେ,
କୃଷ୍ଣ ନାମ ସୁମରନ୍ତି ଦଧି ମନ୍ଥନ କରନ୍ତି
ହରି ଚରିତ ଶୁଭେ ଘରେ ଘରେ ସେ,
୫ ଉଦ୍ଧବ, କରନ୍ତି ସେ ପ୍ରଶଂସା ଗୋପକୁ,
[କୃଷ୍ଣ] (କେଉଂ) ଦୋଷେ ମୁଛିଲେ ଏହାଙ୍କୁ ସେ,

କୋଟିଏ ଜନ୍ମର ତପେ ଜନମ ଲଭିଲ ଗୋ(ପେ
କୃ)ଷ୍ଣଙ୍କ ପାଇଲ ଅଙ୍ଗସଙ୍ଗ,
କହି ବିପ୍ରସିଂହା କବି କୃଷ୍ଣ ଦୂତ ବିଗ୍ରହରଇ
୧୦ (ପୂର୍ବ କର୍ମେ ପାଉଅଛ ଲୀଳା ର)ଙ୍ଗ ସେ ॥ ୧ ॥

---

୧. ଏହି ଚଉତିଶାରେ 'କୃଷ୍ଣ'ର ପୋଥିପାଠ ସର୍ବତ୍ର 'କୃଷ୍ଣ' ବା 'କୃଷ୍ଣ' ।
୨. ଏହାଙ୍କୁ—ସ୍ୱହାଙ୍କୁ । ୨. ଅଙ୍ଗସଙ୍ଗ—ଅଙ୍ଗସଙ୍ଗେ ।

କ୍ଷଣକ ଉପରେ ତହୁଂ ଗୋପୀଏ ବାହାର ହୋଇ
(ଉଗାଳନ୍ତ ପ)ଥେ ରଥ୍ବର,
ଛାଡ଼ିଲେ ଘର କରନ୍ତି ଲଭିଲେ ପରମ ଗତି
ବୋଲେ ଧାଇଂ ଆ(ସ ବେନୁଧାର ସେ,

୧୫ ଗୋପୀମାନେ, ଛାଡ଼ିଲେ କରନ୍ତି ତାହା ଶୁଣି,
ଛଡ଼ାଛଡ଼ି ହୋଇ ଧାଇଂଲେ ତରୁଣୀ ସେ,
ଛିନାଳ ଗୋପୀ ବୋଲନ୍ତି ଛାଡ଼ିଗଲ ହେ ଶ୍ରୀପତି
ଦେଖ ଆମ୍ଭ ଅସ୍ଥି ଚର୍ମ କାୟେ,
ଛାଡ଼ିଲୁ ବେଶ ବସନ ଧୂରନ୍ତି ସୁଖ ଭୋଜନ
୨୦ ତୁମ୍ଭେ ନାସ୍ତି କଲେ ବ୍ରଜସିଂଘ କହ୍ନୁ ଯେ ॥ ୨ ॥

ଖଣ୍ଡେ ଦୂର ଧାଇଂଯାଇ ଚହ୍ନିଲେ କୃଷ୍ଣ ନୁହଇ
କେ ବୋଲଇ ପ୍ରତକ୍ଷେ ମାଧବ,
ଖେଢ଼ାଖେଢ଼ ଭାବ ଛାଡ଼ି ଅଧଜଯି ହୋଇ ଲେଢ଼ି
ନଟଗ୍ର ନାଗର ହୋଇଲେ ଆନ ଭାବ ସେ,

୨୫ ଗୋପୀମାନେ, ଖେ ଜନ୍ତନ୍ତ ରୂପ ଅନୁସର,
ଖେଦ ନ ଅଣ୍ଟଇ ଭରସା କାହାର ସେ,
ଖଞ୍ଜିତ କର୍ଣ୍ଣେ କୁଣ୍ଡଳ କଣ୍ଠେ ଲମ୍ବେ ପୁଷ୍ପମାଳ
ଦଇବେ ଉଦ୍ଧବ ଶ୍ୟାମବନ୍ତ
ଖୋସିତ ହିମୁଣ୍ଡି ଚୂଳ ପିନ୍ଧିତ ପୀତ ଦୁକୂଳ
୩୦ ବୋଲେ ବ୍ରଜସିଂଘା ଶ୍ରୀକୃଷ୍ଣ ତେମନ୍ତ ସେ ॥ ୩ ॥

ହୋଇଲେ ନିକଟେ ଯାଇ ଦେଖିଲେ କୃଷ୍ଣ ନୁହଇ
ଉଦ୍ଧବଙ୍କୁ ବେଢ଼ିଲେ ସମସ୍ତ,
ହାରିଲ ଜୁଆର କସେ ମନ ଭ୍ରମେ ଦଶଦିଶେ
ରାମପାଶସ ବ୍ରହ୍ମାଂଣ ଜନ୍ତୁ ମତ ସେ

---

୧୧. ଗୋପୀଏ—ଗୋପିସ୍ଥ । ୧୪. ବେନୁଧର—'ନୁଧ'ର ନିମ୍ନାଂଶପାଠ ରହିଛି । ୧୭. ଛିନାଳ—ଷିନାଳ । ୨୦. କହେ—କହ୍ନୁ । ୨୨. ଢେ—ଢୋ । ୨୭. ଲମ୍ବେ—ଲମ୍ବେ । ୨୮. ଶ୍ୟାମବନ୍ତ—ସ୍ୟାମବର୍ଣ୍ଣ । ୩୪. ମତ—ମତ୍ତ ।

୩୫ ଗୋପୀମାନେ, ହୋଇଲେ ଅଜ୍ଞାନ ତାହା ଶୁଣି
ହସ୍ତ ଚରଣ ନ ଚଳଇ ମୂର୍ଚ୍ଛନ ସେ,
ଧରଣୀ ଚଳୁ ରୁଧିର ସେ ସେବର୍ଣ୍ଣ ହୋଏ କାତର
ଏକ କନ୍ୟାବନ୍ତୀଏ ବୋଇଲା,
ହସ୍ତ ବଢ଼ାଇଲ ଧରି ଜଳରେ ଚନ୍ଦ୍ରମା ଦେଖି
୪୦ ବୋଲେ ବସ୍ତ୍ରସିଂଘା ତେସନ ହୋଇଲି ସେ ॥ ୪ ॥

ଗୋପୀଏ ବାରତା ପାଇ ପଥେ ଆସୁଥିଲି ଧାଇଁ
ନୋହେ ବୋଲି ଶବଦେ ଶୁଭିଲି ।
ଗୁଡ଼ ମଧୁରସ ପାନେ ମାଛୁକା ଉଡ଼େ ଯେସନେ
ଯେବର୍ଣ୍ଣେ ତିକଣ ଘଣ୍ଟେଣ ବୁଡ଼ିଲି ସେ।

୪୫ ଗୋପୀମାନେ, ଗତେ କହିଥିଲେ ଶୋକ ଯେତେ,
ଗାଢ଼େ ଅଧିକ ହୋଇଣ ଗୁଣ ଶତେ ସେ,
ଗୋବିନ୍ଦ-ଦୂତ କହନ୍ତି ଶୁଣ ଗୋ ବ୍ରଜଯୁବତୀ
ଆମ୍ଭଙ୍କୁ ପେଷିଲେ କମ୍ଳପାଣି,
ଗୋକୁଳନାଥ ବାରତା ତୁମ୍ଭ ଦୁଖସୁଖ କଥା
୫୦ ଶୁଣି ହେଲେ ଭୁଜ ଭାବେ ବସ୍ତ୍ରସିଂଘା ଭଣି ସେ ॥ ୫ ॥

ସେ ଗୋପୀ ବୋଲେ ଉଦ୍ଧବ ଆଉ କେ କସ କହିବ
ଅନୁମାନେ ଦେଖ ପ୍ରତକ୍ଷକୁ,
ଶୁଣିଲେ ତାହାର ସୁଖ ସହିବକ ଆମ୍ଭ ଦୁଖ
କ କରିବ ଭଲେ ଥାଇ ସେ ଆମ୍ଭଙ୍କୁ ହେ,
୫୫ ଉଦ୍ଧବ, ସବୁଦ୍ଧନେ ନୋହେ ସମସର,
ସୁତ କଳସ କାନ୍ତ ହୋଇଲେ ବଇର,

ସାକର ସୁଆଦ ସହିଁ ମଉଳ ଫୁଲେ କ ପାଇ
ସୁଖ କାଳେ ଦୁଖ କପା କଲା,

---

୩୭. ସେବର୍ଣ୍ଣେ—ତର୍ଣ୍ଣେ । ୩୯. ବଢ଼ାଇଲ—ବଢ଼ାଇଲି ।

ସଞ୍ଚବେ ଆମ୍ଭେ ଜଣର ଗୋରୁଙ୍କ ସଙ୍ଗେ ବେହାର
ବୋଲେ ବଚ୍ଛସିଂଘା ସିହ୍ନାଣ ହୋଇଲ୍ଲ ସେ ॥ ୬ ॥

ଯେଉଁଣ ଗୋବନ୍ଦ: ଗୁଣ ଡ୍ଡୋଳା କଲେ ଥନ ଥନ
ଏକ ଯୁବତୀ ଏକ ବୋଇଲ୍ଲ,
ଘଡ଼ିଏକ ଯେ ଯାହାର ସେ ଦୁଖ ଯେଉଁଇ ତାର
କୃଷ୍ଣ କପାଇଂ ଏଡ଼େ ନିଷ୍ଠୁର ହୋଇଲ୍ଲ ହେ,

୬୫ ଉଦ୍ଧବ, ଯେଉଁ ବୁଲୁଥିଲୁ ବନେବନ,
ଘର ସୁତ ପତି ସଙ୍କୁଚ ଏଡ଼ଣ ହେ,
ଯେଉଁଣଲୁ କାକ ଆହାର ଯେମନ୍ତେ ନିଜ ସୁତ ଦୁର
କୋକିଳ ସଂପତ୍ତି ଆଚରିଲ୍ଲ,
ଯେଉଁଣଲ୍ଲ ସେ ତାର କୃଳ ଏସେ କାକ ହେଲ୍ଲ ନିଷ୍ଠୁର
୭୦ ବୋଲେ ବଚ୍ଛସିଂଘା ତେସନ ହୋଇଲ୍ଲ ସେ ॥ ୭ ॥

ସାନଗୋଟି ବଢ଼ କଲୁ ଶିକ୍ଷ ଶିଖାଇ ରମିଲୁ
ଏବେ ଅଦ୍ଭୁତ ଆଚରିଲ୍ଲ
ସୁଜନ ଯେବେ ହୁଅନ୍ତା ପାପ ପୁଣ୍ୟ ବିଚାରନ୍ତା
ଯତ୍ନଂ ଯୋହୋଇ ମଉଳା ନ ବୁଝିଲ୍ଲ ସେ,

୭୫ ଉଦ୍ଧବ, ସାଗରମାରଣି ନନ୍ଦବାଳ
ତାର ଶରୀର ସୁବର୍ଣ୍ଣ ବେନ ଶ୍ରବଣ ପିତଳ ସେ,
ଶରୀରକୁ ଯେମନ୍ତେ ଗୁର ତେସନେ ଗୋପୀମାନେ ଧୋଇ
ନୀରଖୀର ଅଭେଦ ଯେସନ
ସେ ସୁବର୍ଣ୍ଣ ଆମ୍ଭେ ଖାର ଏ କଥା ବୁଝଇ ପର
୮୦ ବୋଲେ ବଚ୍ଛସିଂଘା ଆମ୍ଭର ଜୀବନ ସେ ॥ ୮ ॥

୭୦. ସିହ୍ନାଣ—ଛୀହ୍ନାଣ । ୭୩. ଯାହାର—ଯାହାରେ; ତାର—ତାରେ ।
୭୪. ନିଷ୍ଠୁର—ନିଷ୍ଠୁର । ୭୯. ନିଷ୍ଠୁଳ—ନିଷ୍ଠୁଳ । ୭୭. ପାପପୁଣ୍ୟ—ପାପପୁନ୍ୟ ।
୭୬. ଶରୀର—ସ୍ୟରିର; ଶ୍ରବଣ—ସ୍ୱବଣ । ୭୭. ଶରୀର—ସ୍ୟରିର ।

ନାୟିକା ଏକି ବୋଇଲା ସେ ଏବେ ନାଗର ହେଲା
ଯେଣୁ ମୁହିଂ ଏଥୁ ବୃନ୍ଦାବନ,
ତାହାଁ ମନେ ଉପଗତ ନ କଥାକୁ ଥିଲ ରୁଚି
ଦନ୍ତେ ତରଣ ଧରି ପାଦେ ପଡ଼ିଲା ପୁଣ ସେ,
୮୫ ଉଦ୍ଧବ, ନ କହିବା କଡ଼ପଣ ଗୁରୁ,
ନାସ୍ତି କଲେ ନ ବୃତାନ୍ତ ସେ ଦିନର ସେ,

ନଖ ଯେ ପୂରି ବଢ଼ଇ ସେ କେତେ ଦିନ ରହଇ
ଛିଡ଼ଇ ବଢ଼ଇ ଚନ୍ଦ୍ରମାଇ,
ନବଘନ ଦିନାଗ୍ରର ଅବଶ୍ୟ ନଜ ସୁମର
୯୦ ଦେଖିଣ ସେ ବିପ୍ରସିଂଘା କହି ସେ ॥ ୯ ॥

ସତେତେହେ ଜାଣ ଉଦ୍ଧବ ଯେତେ ଦିନ ଯାଏ ଥିବ
ଆମ୍ଭ ବିନୁ ଆନର ନୁହଇ,
ମଥୁରା ନାରୀଙ୍କ କାନ୍ତ ବୋଲଇ ପାରିବେ କସେ
ଆମ୍ଭ ଗୋପୀନାଥ ନାମ ନ ବୋଲଇ ହେ,
୯୫ ଉଦ୍ଧବ, ସୁମରନ୍ତି ଯାକୁ ଧ୍ୟାନେ ମୁନି,
ଆମ୍ଭେ ସହସ୍ରନାମର ମୃଧୁନ୍ନ ସେ,

ସେ ଯେବେ ତହିଂ ରହିଲ ତୁମ୍ଭଙ୍କୁ କେଉଁ ପେଷିଲ
ସହି ନ ପାରିବା ଏଡ଼େ ମାନ,
ଆମ୍ଭେ ଗୋପୀ ଯିବୁଁ ଧାଇଂ ସେ ନାହିଁ ଥିବେ ଅନାଇ
୧୦୦ ବୋଲେ ବିପ୍ରସିଂଘା ସରିବ ତାଙ୍କ କଡ଼ପଣ ହେ ॥୧୦॥

ଚିତ୍ତକୁ ଚିତ୍ତରେ ଭାଳି ଉଦ୍ଧବ ବୋଲେ ଗୁଆଳୀ
ତୁମ୍ଭେ ବୋଲ ଆମ୍ଭ ଗୋପୀନାଥ,
ହରି ବେଦରୁ ବାହାର ଅଶେଷ ବ୍ରହ୍ମାଣ୍ଡ ଯାର
ରୋମମୂଳ ପୁଷ୍ପମାଳା ମତ ସେ,

---

୮୨. ବୃନ୍ଦାବନ—ବୃନ୍ଦାବନେ । ୧୦୪. ମତ—ମଣ୍ଡ ।

୧୦୫ ଗୋପୀମାନେ, ତାଙ୍କ ଯା ବେଦେ ଅଗୋଚର,
ତାଙ୍କେ ଦେଖିଥିଲେ ଧନା କେତେ ସେ ତୁମ୍ଭର ଗୋ,
ଚିରକାଳ କଲ୍ପ ହୋଇ ଅଷ୍ଟଯୋଗରେ ଧିଆଇ
ଯୋଗୀ ଯାକୁ ନ ପାଇ ଦର୍ଶନ,
ଚନ୍ଦ୍ରାମଣି ଚକ୍ଷେନର ଅଙ୍ଗ ସଙ୍ଗେ ଥିଲ ତାର
୧୧୦ ବୋଲେ ବନ୍ଦ୍ରସିଂଘା ଧନ୍ୟ ତୁମ୍ଭର ଜୀବନ ଗୋ ॥ ୧୧ ॥

ବାସୁକି ଗୁହାର କଲ ମହୀଧର ନ ସହିଲ
ତେଣୁଟି ଗୋ ରଙ୍ଗା ଅବତାର,
ବିଷ ଭର ସ୍ତନ ପୃଷ୍ଠେ ଯେ ତନା ଶଙ୍କ ଗୁପତେ
ବଧ ଶେ ଷିଣ ଜୀବନ ନେଲେ ତାର ଗୋ

୧୧୫ ଗୋପୀମାନେ, ବିଷ ଦେଇ ଆତେ ପ୍ରାଣହତ,
ବାଇପଣେ ବୋଲ ତୁମ୍ଭେ ଗୋପୀନାଥ ଗୋ,
ବଡ଼ ଅଦ୍ଭୁତ ଗୁଣ ତାର ସବୁ ଘଟେ ଅବତାର
ଭଜନକୁ ବଶ୍ୟ ଭେଦ ନାହିଁ,
ବକ୍ରଧର ଗର୍ବ କଲ କାମେ [ମ]ଧର ଧଇଲ
୧୨୦ ବୋଲେ ବନ୍ଦ୍ରସିଂଘା ଗର୍ବ କଲ ଯହିଂ ସେ ॥ ୧୨ ॥

ଛୁନାଳଏ ବୋଲେ ବାଣୀ ଉଦ୍ଧବ ବଚନ ଶୁଣି
ଦେଖ ସେତେ ନିକଟ ଉଗତଙ୍କୁ,
କ୍ଷଣେହେ ବିଶ୍ରାମି ଆମ୍ଭେ ମଜିଲୁ ତାହାଙ୍କ ସଙ୍ଗେ
ବିନା ଅପରାଧେ ଲେଛୁଲେ ଆମ୍ଭଙ୍କୁ ସେ,

୧୨୫ ଉଦ୍ଧବ, ଛଦ୍ମ କହିଲ ନବଗୁଣ,
ନନ୍ଦ ପ୍ରକୃତି ଅଟନ୍ତି ଶ୍ରୀହରି ସେ,
ଛୁଡ଼ନ୍ତି ଜନ୍ତୁ ଯେସନ ଦଗଧ ହୋଇଲେ ବନ
ବିଦ୍ୟା ଶିଖି ଗୁରୁ ନ ଆଦର,
ଘୁର ବରକୋଳ କାହିଁ ଗଜ ଦସ୍ତରେ ରହଇ
୧୩୦ ବୋଲେ ବନ୍ଦ୍ରସିଂଘା ତେସନ ଶ୍ରୀହରି ହେ ॥ ୧୩ ॥

---

୧୦୭. ଅଷ୍ଟ—ଅଷ୍ଟ । ୧୧୦. ତୁମ୍ଭର ଜୀବନ—ଜୀବନ ତୁମ୍ଭର ।
୧୧୩. ସ୍ତନ—ସ୍ତନ । ୧୨୦. ଯହିଂ—ନାହିଂ । ୧୨୯. ଗଜଦସ୍ତ—ଗଜଦନ୍ତ ।

ଲୁହ ଏଁ ଧରଣ ଗନ୍ଧ ବୋଲନ୍ତି ଉଦ୍ଧବ ଗୃଷ୍ଣିଂ
ଲୁଚିଥିଲା ତିଳଚମା ପୁଟରେ,
ଲାଗିଛି କୁଙ୍କୁମ ଅଙ୍ଗେ ଥାନମୁଦ୍ରାରେ ସଭଙ୍ଗେ
ତାଙ୍କୁ ଯାଇ ମୁଁ ଭେଟିଲି ଏମନ୍ତରେ ହେ,
୧୩୫ ଉଦ୍ଧବ; ଲାଜେ ଅଛି ହେଟମାଥ ହୋଇ
ଲଘୁପଣ ମୋର ହେଲା ଫବଢ଼ାଇ ହେ,

ଲଲୁସ୍ତ ହୋଇଣ ଯେତେ ଛନ୍ଦୋଇ କହିଲେ ମତେ
ଲଗାଇ ହୃଦରେ କୋଳ କରି,
ଲେକ କ ତା ପ୍ରତେ ଯିବ ଗଲେ ତୁମ୍ଭେ ଚତୁରବ
୧୪୦ ବୋଲେ ବ୍ରଜସିଂଘା ତାହା ଜାଣେ କଂସ ଅରି ହେ ॥୧୪॥

ଜାଣନ୍ତି ଯେବେ ଦେବସ୍ଥା ସେ କଥା ମଥୁରା ଯାନ୍ତା
ଆମ୍ଭେ କପା ହୋନ୍ତୁ ସ୍ଥାନମାନ,
ଯେଖା କାନ୍ତ ଦୂର କରି ପର ପୁରୁଷ ଆବୁରି
ସୁଖେ ଯିବା ପ୍ରାପ୍ତେ ମଣିଲୁ ଆମ୍ଭେ ଦିନ ହେ,
୧୪୫ ଉଦ୍ଧବ, ଯଉବନ ଗରବେ ପଡ଼ିଲୁ,
ଜଳ ବୋଲି କୁହୁଡ଼ିକି ପଉଂଚିଲୁ ହେ

ଯେତେବେଳେ ହେ ଶୁଣିଲୁ ଶୂନ୍ୟ [ନସ] କଲା ଜାଣିଲୁ
କୁବୁଜାତ ବୁଡ଼ାଇଲା ଭେଳା,
ଯଉ ଭ୍ରମରକୁ ଆଣ କରି ଶତଦଳ ପୁଷ୍ପ
୧୫୦ ବୋଲେ ବ୍ରଜସିଂହା ଦୁଦୁରା ଚୁମ୍ବିଲା ହେ ॥ ୧୫ ॥

ରହ ରହ ଗୋପାଙ୍ଗଣୀ ଉଦ୍ଧବ ବୋଲନ୍ତି ବାଣୀ
ମଥୁରାକୁ ଏତେ ତାଙ୍କ ଦୟା,
ରେଖ ରୂପ ନାହିଁ ଯାର ନ ଜାଣନ୍ତି ବେଦବର
ଅଷ୍ଟକୁବୁଜା ହୋଇଲା ଅପସରା ଗୋ,

---

୧୩୬. ଥାନମୁଦ୍ରାରେ—ଥାନମୁଦ୍ରାମେ [ ପୋଥିପାଠର 'ମେ' ସ୍ଥଳେ 'ସେ' ଥିଲେ ଚଳନ୍ତା ]। ୧୫୦. ଚୁମ୍ବିଲା—ଚୁମ୍ବିଲା ]

୧୫୫ ଗୋପୀମାନେ, ଶ୍ରମର ମହିମା କୋହେ ଅନ୍ତ,
ରୂପ ଦେଖି ହତ ଉଗ୍ରସେନ ସୁତ ଗୋ,

ସଭରେ ହୋଇଲେ ଜାତ ପେନ ଆସୁଥିଲେ ତାତ
ବାଟରେ ଭେଟିଲେ ଉଗ୍ରସେନ,
ଋଷି ଯାହା ମନେ ଚିନ୍ତ କୋଟି କଲ୍ପେ ନ ପାବନ୍ତ
୧୬୦ ବୋଲେ ବପ୍ରସିଂହ ତାହା ଦେଖିଲ୍ ନୟନ ସେ ॥୧୬॥

ଝାଡ଼ରେ ଯେତେକ ବନ ତାହା ତ ତୁମ୍ଭେ ଦେଖିଲ
କେଶୀ ବକା ଷଣ୍ଢ ଅର୍ଘାସୁର,
ଝାସିଲ୍ କାଳନ୍ଦୀ ଜଳେ କାଳୀକ ଦଳନ୍ଧ ବଳେ
କଲ୍ ଅମୃତ କାଳନ୍ଦୀ ବିଷଜଳ ଗୋ,
୧୬୫ ଗୋପୀମାନେ, ଝଟଣ୍ଡ କଣ୍ଟକ ଅଷ୍ଟନେଷ,
ଝାଳ ପ୍ରାୟେ କଲେ ବଚ୍ଛସୁତ ଜାତ ଗୋ,

ଝିଅ ରାଜା ଜନେକର ବିଭାକଲ୍ ସମ୍ୱମ୍ବର
ତବ ହରକୋଦଣ୍ଡ ଭାଗିଲ୍,
ଝଟଣ୍ଡ କଣ୍ଟକ ପଥେ ଉଟାଳଲ୍ ଭୃଗୁନାଥେ
୧୭୦ ବୋଲେ ବପ୍ରସିଂହା ଶହସ୍ର ଗୁଡ଼ିଲ୍ ସେ ॥ ୧୭ ॥

ଯୁବତୀଏ ବୋଲେ ବାଣୀ ଉଦ୍ଧବ ବଚନ ଶୁଣି
ଆମ୍ଭର ବଚନ ନନ୍ଦବାଳ,
ଯେତେକ ଗୋପରେ ଜାତ ସମସ୍ତେ ତାହାଙ୍କ ଭୃତ୍ୟ
ଯେସନ୍ତେ ଧୂମ୍ର ନଗ୍ଧତେ ଅନଳ ହେ,
୧୭୫ ଉଦ୍ଧବ, ଯେସନ ଅନ୍ଧାର ଜଗତ୍ରକୁ,
ଯହଂ ଥିଲେ ଧ୍ୟାନ ମଦନନାଥଙ୍କୁ ସେ,

---

୧୬୨. ଷଣ୍ଢା—ଷଣ୍ଡା । ୧୬୩. ଦଳନ୍ଧ—ଦଳିଲା । ୧୬୪. ଅମୃତ କାଳନ୍ଦୀ—କାଳନ୍ଦ ଅମୃତ । ୧୬୬. ବଚ୍ଛ—ବଷ । ୧୬୭. ସମ୍ୱମ୍ବର—ସ୍ୱୟମ୍ବର । ୧୭୪. ଧୂମ୍ର—ଧୂମ । ୧୭୬ ଯହଂ—ବହୁଂ ।

ଯେତେକ ସେ ତରୁବର　　　　ନ ଗ୍ରୁଡ଼ନ୍ତି ପୁଷ୍ପଭର
ଧନ୍ଦାଂ ଛଡ଼ିଛନ୍ତୁ ଖେଗ ନାନ୍ଦାଂ
ଯମୁନା ବହନ୍ତେ ନୀର　　　　ଚେଦନ୍ତି ମୃଗ ମୟୂର
୧୮୦　ବୋଲେ ବପ୍ରସିଂଘା ତରୁବର ଶୁଷ୍କାଂ ହେ ॥ ୧୮ ॥

ନ ପାବନ୍ତି ବଚ୍ଛ କ୍ଷୀର　　　　ଦୁହନ୍ତେ ଧେନୁ ଅଥିର
ନ ପାଉନ୍ତି ବାଞ୍ଛ ଲତା ଚଳ,
ନରସ୍ତ କଦମ୍ବ ତଳୁ　　　　ନ ତେଜନ୍ତି ପୁଷ୍ପଭରୁ
ଏତେକ କୃଷ୍ଣଙ୍କୁ ପଡରେ ଗଲା ଛିଣ୍ଡି ହେ,
୧୮୫　ଉଦ୍ଧବ, ନେଲେ ଆମ୍ଭ ସୁଖଭାବ ହରେ,

ନଶି ହବା ନୟନରୁ ନ ଉହଇ ଡାର ହେ,
ନଶି ନବଦ୍ଧ ଅନ୍ଧାର　　　　ନ ଦିଶଇ ଦିନକର
ସେ କାନନ ଏମନ୍ତ ହୋଇଲା,
ନିଆ ପକାଇଲେ ଯେଝେଁ　　　　ନମଷଙ୍କେ ଭସ୍ମ ଯିବ
୧　ନନ୍ଦସୁତ ତନୁ ବପ୍ରସିଂଘା କହିଲା ସେ ॥ ୧୯ ॥

ମହତ ଅବସ୍ଥା ଜାଣି　　　　ମଣିଲୁ ଗୋପ ତରୁଣୀ
ଜାଣେ କୃଷ୍ଣ ଏମନ୍ତ ହୋଇଲା,
ମାଳତୀ କୁସୁମମାଳା　　　　ଲମ୍ବାଇଲେ କପି ଗଳା
ସେ ଯେଝେଁ ତାହାର ଭାବ ନ ଜାଣିଲା ହେ,
୧୯୫　ଉଦ୍ଧବ, ମାନବେ ଦେବଗୀରତ ଜାଣ୍ଟାଂ,
ମଲୁ ଗୋପୀ ଆମ୍ଭେ ଦୁଃଆଡେ ନୋହୁ ହେ,

ମୁରୁଚ୍ଛିଲୁ ବୋଲକର　　　　ମନରେ ଥିଲୁ ବସ୍ତୁର
ସେ ଦିନେ ସପନେ ଦେଇ ରତି,
ମାହାପି ଆସୁ କୁରଙ୍ଗ　　　　ମୃଗ ତୃଷ୍ଣା ନୀର ଦେଖି
୨୦୦　ବୋଲେ ବପ୍ରସିଂଘା ସେ ତ ନପାଇ ସମ୍ପତ୍ତି ହେ ॥ ୨୦ ॥
[ X　X　X ] ॥ ୨୧ ॥

---

୧୮୩. ନରସ୍ତ—ନରଶ୍ରେଷ୍ଠ ; କଦମ୍ବ—କଦମ୍ବ । ୧୯୯. ମାହାପିଆସୁ—ମାହାପ୍ରିଆସ; ମୃଗତୃଷ୍ଣା—ମୃଗସଙ୍କ୍ଷ । ୨୦୦. ନ ପାଇ ସମ୍ପତ୍ତି—ପାଇଣ ସମ୍ପତ ।

ଭଗତଙ୍କ ଦେଖି ଦୁଖ ମଥୁରା ନାଥଙ୍କ ସୁଖ
ଯୁବାକାଳେ ଯାଇଲେ ଗୋବନ୍ଦ,
ଭୁଆ କରି ଇନ୍ଦ୍ରି ସିଧି ଭବମାୟା ଦାମ ଛେନ୍ଦି
ଯାର ଦ୍ରୁଶନ ମାତ୍ରକେ ତୁଟେ ଧନ୍ଦ ହେ,
୨୦୫ ଉଦ୍ଧବ, ଭଗତ ମୁକତି ଗତି ଯାଉ,
ଭଲପଣ ନ ରଖିଲେ ଆମ୍ଭଠାରୁ ହେ,

ଭଣ୍ଡି ଗଲେ ଆମ୍ଭ ହରି ଆସିବୁ କଂସ ସଂହାରି
ମହତଙ୍କ ବୋଲ ହୁଏବେ ସତ,
ବୋଲେ ବପ୍ରସିଂଘା ଗୋପୀ କହନ୍ତି ଶୁଣ ଉଦ୍ଧବ
୨୧୦ କପା ନୋଇଲେ ଯେ ତୁମ୍ଭର ସଙ୍ଗତ ହେ ॥ ୨୨ ॥

ଠାକୁର ହୋଇବା ସୁଖ ଯେବେ ଜାଣେ ଭୃତ୍ୟ ଦୁଃଖ
ନୋହନ୍ତେ କାହ୍ନୁଂକ ବଡ଼ପଣ,
ଠିକ ନାୟେକାଙ୍କ ମେଳେ ଠଣ ସୁଖକୁ ହୋଇଲେ
ତାଙ୍କ ମନରେ ଶୋଚନା କେତେମାନ ହେ,
୨୧୫ ଉଦ୍ଧବ, ଠଣ ଦେଖି ଗୋପୀ ହେଲୁ ଦୁଖୀ,
ଟିକେ ଶୂନ୍ୟ କଲ୍ପ ଠୁଳ ନିରମାଖି ହେ,

ଠଣ ପ୍ରତିମା ମୂରତି ଜଗତେ ପ୍ରକାଶ ଜ୍ୟୋତି
ଆମ୍ଭ କଥାକୁ ପାଶରିବେ କାହ୍ନୁଂ
ଠକାର ଭଞ୍ଜନା ହୋଇ ଅନୁମାନ ଦେଉ ଥାଇ
୨୨୦ ବୋଲେ ବପ୍ରସିଂଘା ଅବନ ମାଧୋଇ ହେ ॥୨୩॥

ବୋଲନ୍ତି ଉଦ୍ଧବ ହସି ଶୁଣ ଗୋ କୁଟିଳ କେଶୀ
ତାଙ୍କର ବରସ ନାହିଁ ଚଢେ,
ବାସନା ତୁମ୍ଭର ତତ୍ତ୍ୱ ଯେସନ୍ତେ ମଣିମାଳା ମତ
ଦଇବେ ଜଗତ୍ର ଆଦ୍ୟ ମତେ ଗୋ,

୨୧୭. ଜ୍ୟୋତି—ଯୋତି । ୨୨୩. ତତ୍ତ୍ୱ—ତତ୍ୱ; ମତ—ମତ୍ । ୨୨୪. ମତେ —ମଞ୍ଚ ।

୧୨୫ ଗୋପୀମାନେ, ବଶ୍ୱାସେ ଏକାନ୍ତେ ମତେ ଗଲ,
ବାସୁଦେବଙ୍କ ଶ୍ରୀହସ୍ତେ ଲେଖ ଲକ୍ଷ ଦେଇ ଗୋ,
ବସ ସମସ୍ତ ଏହୁଣା    ଉଦ୍ଧବ ବୋଲନ୍ତି ବାଣୀ
ପଢ଼ ନେଇ ପ୍ରଭୁଙ୍କ ଶ୍ରୀହସ୍ତ,
ବୋଲେ ବଢ଼ସିଂଘା ଟଗୋପେ    ଶୁଭିଲ ହରି ଚହଳ
୧୩୦ ଦେଖି ଉଦ୍ଧବ ହସ୍ତରେ କାଗଜ ହେ ॥ ୨୪ ।

ତରେଣ ଯୁବତୀ ବେନି    ହସ୍ତ ପ୍ରସାରନ୍ତି ଧାଇଁ
ଆମ୍ଭେ କାହିଁ ପଢ଼ିବୁ ଶ୍ରୀହସ୍ତ,
ଉହ୍ନ ଉହ୍ନ କାମ ଜ୍ୱର    ତାପୁଛି ତନୁ ଆମ୍ଭର
ନୟନ ବାଟରେ ଯିବ ଧୋଇ ପଦ ହେ,
୧୩୫ ଉଦ୍ଧବ, ତୋହାରୁ ଅଧିକ ଅଟେ ନାଣ
ଉକା କରି ଗଲ ନନ୍ଦର ନନ୍ଦନ ହେ,

ଡାକୁଥାଉ ହରି ବୋଲି    ଦଧି ବିକୁଥାଉ ବୁଲି.
ନ ଦେଖି ନ ଭୁଞ୍ଜୁ ଅନ୍ନ ପାଣି,
ଓଳାଇ ନନ୍ଦନନ୍ଦନ    ଲେଖାକୁ ହେଲୁ ଭାଜନ
୧୪୦ ଦଇବ ସଂଯୋଗେ ବ୍ରଜସିଂଘା ଭଣି ହେ ॥ ୨୫ ॥

ଫୁଟିଲେ ଯେହ୍ନେ ମୂଧୂନ    ଫାଇ ତେସନ କାମେଣ
ଫାଇ ଦୁଖ ସବୁଙ୍କର ମନ,
ଫଳନ୍ତି ସରସକାଳ    ଶଶୀର ଶୋଭା ତେସନ
କୃଷ୍ଣ ଲେଖ ତାହାଙ୍କୁ ଅଦ୍ଭୁତ ଗହନ ସେ,
୧୪୫ ଉଦ୍ଧବ, ଫେଡ଼ କହ କସ ବୋଲିଅଛି,
ପୁଣି ବେନୁଧର ନୋଇଲେ କ ଲେଛି ହେ,

ଫଣୀଭୂଷଣ ଅଇର    ନଖହସ୍ତ ବନ୍ଦୀ କର
ଆଉ କେତେ ମଥୁରା ରହଣି,

---

୧୩୯. ଓଳାଇ—ଡୋଳାଇ । ୧୪୧. କାମେଣ—କମେନ ।
୧୪୩. ଶଶୀର—ସ୍ୱୀଭର । ୧୪୭. ପୁଣି—ଫୁଣି ।

ପୁଟିଲ ମାଳତୀ ବନ — ନିଷ୍ଫଳ ଅମ୍ଭ ଜୀବନ

୨୫୦ ନାବସ୍ଥଣ ବନୁ ବଡ୍ରସିଂଘା ଭଣି ହେ ॥ ୨୬ ॥

ଢ଼ଳଢଳ ପଦ୍ମତୋଳା — ଜାଣେ ବନ ପୁଷ୍ପମାଳା

କଳ୍ପତରୁ ମୂଳେ ବେଣୁଧଙ୍କି,

ତାଙ୍କୁଣି ତାଙ୍କିଲେ ଯେତେ — ଅଛ ନଫର ଭକ୍ତେ ଡେହ୍ନେ

ଘର କରନ୍ତରେ ଯେତେ ଡେଡ଼ା ହେ,

୨୫୫ ଉଦ୍ଧବ, ତାଳେ ଚଶି ଟପୋଜିଲ୍ଲୁ ନଜ,

ତାଳେ ଶୁକ ପକ୍ଷୀ ହେଲେ ଦେବରାଜ ହେ,

ତାମପଣେ ସେ ନାଗେଶ — ଅନ୍ତେ ହଶେଷେ ଗୁଆଳୀ

କ୍ଷୀର ଦୃତ ବାସନା ଆମ୍ଭର,

ତାଳେ ନ ଦେଖିଲ୍ଲ ଲୋକେ — ଧେଇଁଲେ ହୋଇବେ ବାଇ

୨୬୦ ବୋଲେ ବଡ୍ରସିଂଘା ତେସନ ବେଭାର ହେ ॥୨୭॥

ପରମ ଯୋଗୀନ୍ଦ୍ରମଣି — ପର ଅପର ରମଣୀ

ବସ୍ତୁରଲେ କ ବୁଦ୍ଧି ଆମ୍ଭର,

ପ୍ରେମ ତାଇ ଉଷ୍ଣ ଗଲେ — ଲଗିବ ଏକା ହଜଲେ

ଏକା ପ୍ରତିଆଶା କରଇ ବସ୍ତୁନ ହେ,

୨୬୫ ଉଦ୍ଧବ, ପୂର୍ବେ ତା ପିଅର ଅଛୁ ମାଈ,

ପରେ ମରୁଭଚ ଆପେ ସଂସାର ହେ,

ପୁଅଙ୍କୁ ଲୋଡ଼ିବା ଚେତେ — ପ୍ରେମ ଡାକ ଚନ୍ଦ୍ରଂ ସତେ

ଅନୁକ୍ଷଣେ ଶୁଦ୍ଧ ଚଇତନ,

ପସ୍ଥରନ୍ତ ଦେଖି କାକ — କୃଷ୍ଣଙ୍କୁ କହିବ ଦୁଖ

୨୭୦ ବୋଲେ ବଡ୍ରସିଂଘା ପାସୋରିଲେ ଶୁଣ ହେ ॥୨୮॥

ଅଣ ଆପୁତରେ ଗଲା — ଆଣିପଣନ୍ତ ରହିଲା

କଂସଇ ହୋଇଲ୍ଲ ପ୍ରାଣ ଷପ୍ତେ,

---

୨୫୯. ନିଷ୍ଫଳ—ନିଷ୍ଫଳ । ୨୬୮. ଶୁଦ୍ଧ—ମୂର୍ଖ । ୨୭୦ ଶୁଣ—ସୁଖ ।

ଅଣ ଆପୃଚରେ ଯେବେ      ଦୋଷ ଆମ୍ଭେ କଲୁ ତେବେ
ଭଜନ ନୋହୁ ଆମ୍ଭେ ତାଙ୍କ ସେବକଇ ହେ,
୨୨୫   ଉଦ୍ଧବ, ଆଣିଅଛୁ ଅର୍ଘ୍ୟର ତଣ୍ଡୁଳ
ଆଣିଅଛୁ ଧାତା କମଣ୍ଡଳୁ ହେ,

ଆଣିମୁ ଯେବେ ଗୋସାଇଁ      ଖୀରରେ ଖଣ୍ଡ ମିଶାଇ
ଦେବୁ ଲଗ୍ଣ ଯେ ତୋହର ପାଣ,
ଅଣ ଆପୃଚରେ ଯେବେ      ଗୋପୀ ଦୋଷ କରୁଅଛୁ
୨୮୦   କ୍ଷେମାକର ବତ୍ସସିଂଘା ଦୋଷ ॥ ୨୯ ॥

ନଷ୍ଟପ୍ରେ ଜାଣ ଉଦ୍ଧବ      ନ ଆସିଲେ ସେ ମାଧବ
ନ ଫାଟୁଛି ଆଉ ଦୁଖ ସହୁ,
ନଆରେ ଝାସି ମରିବୁ      ଦେଖି ମଲେ ତୁ କହିବୁ
କୃଷ୍ଣ ନଷ୍ଟନ୍ତେଣ ଥାଉ ପଛେ ରହୁ ହେ,
୨୮୫   ଉଦ୍ଧବ, ନାଡ଼ରୁ ଛୁଟିଲା ପଦ୍ମ ଗୋଟି,
ନଷ୍ଟେ ଧନକର କୃଷ୍ଣ ନୋଇଲେ ଲେଉଟି ହେ,

ମୂଢ଼ଇ ଘଟ ସୁବର୍ଣ୍ଣ      ଭାଗିଲେ ହୋଏ ଘଟଣ
ମାଟି ପିଣ୍ଡ ଗୋଟି କୃଷ୍ଣ ଦେଖ୍ୟା,
ନଜାଣୁ କଣ୍ଠ ଧଆଇ      ବାଘନଧି ଆଗୁଦଲା
୨୯୦   ସେହୁ ଆଶେ ବତ୍ସସିଂଘା କହୁ ସେ ॥ ୩୦ ।

ତଲୋକରେ କଥା ଥାଇ      ତନୁ ଚର୍ମର ମୂଢ଼ଇ
ଦୂବଦୃଷ୍ଟ ହୋଇଚ ଆମ୍ଭର,
ଆରତ ଭଞ୍ଜନ ବାନା      ଦୁଃଖୀର ଦୁଃଖ ଭଞ୍ଜନା
ଆମ୍ଭ ବାହାର ଭିତରେ ଅଧିକାର ହେ,
୨୯୫   ଉଦ୍ଧବ, ସ୍ତିଗ୍ଧ ବଧେ ନାହିଁ ତାର ଭୟେ,
ତାର ବୁଧିର ସକାଶୁ ବୁଦ୍ଧି ହୋଏ ହେ,

---

୨୮୦.କ୍ଷେମାକର—କ୍ଷେମାକର । ୨୮୨.ସହୁ—ସହି । ୨୮୬.ଧନକର—ଧନଙ୍କର ।
୮୯. ଧଆଇ—କଆଇ । ୨୯୩. ଦୁଖୀର—ଦୁଖର । ୨୯୫. ବଧେ—ବେଧେ ।

ସ୍ତ୍ରିରି କେତେ ନାହିଁ କାହିଁ    ପୁରୁଷ ଏକ କା ସେନ୍ତ
ହେନମାକୁ ଦିନା ଏତେ ଦୁଃଖ,
ଛୁଟାଇବା ଯେବେ ଆଶ    ଭଣେ ବପ୍ରସିଂଘା ଦାସ
୩୦୦ [illegible] ଚେଜଲେ ବଡ ସୁଖ ହେ ॥ ୩୧ ॥

ଧର୍ମ ଦିନା ସେ ଧାଣିଲ    ଧଜର୍ଯ୍ୟ ବୃଦ୍ଧି ଗୁଡ଼ିଲ
ଆମ୍ଭେ ଯେ ବଣୁଆ ସେ ବଣର,
ଧ୍ରୁବ ସେ ଏତେକ କଲ    ଗୁଆଳୀ ଜାଣ ହୋଇଲ
ତାଙ୍କୁ ମୁଁ ଚୁହୁଁବା କେଵଣ ପ୍ରକାର ହେ
୩୦୫ ଉଦ୍ଧବ, ଚଇଲ ଦଷୀର ପ୍ରାୟେ ଚତ
ଧୀର ଅମୃତ ମୋଣୋହ୍ନ ବଷ ମତ ହେ,

ଧନ୍ୟ ଲେ ଦଧି ମନ୍ଥାସି    ବଟନେକେ ହୋଏ ତୋଷୀ
ଧମ୍ମପଣ ରକ୍ଷବ ତାହାର,
ଧନହର ନାମ ସ୍ତ୍ରିରି    ଭବଜଳୁ ହୋଏ ପାର
୩୧୦ ଧନ୍ୟ ସେ ସୁଜନ ବପ୍ରସିଂଘା ଭଣି ହେ ॥ ୩୨ ॥

ଥୋକାଏ ବୃଦ୍ଧ ଗୁଆଳୀ    କହନ୍ତି ଶୋକ ସମ୍ଭାଳ
ଉଦ୍ଧବ ପାରବୁ ଏତେବ କରି,
ଥିବ ସ୍ଥିର ଯୁଗେ କାନ୍ତି    ଗଙ୍ଗା ଯେସ୍ତେ ଭଗୀରଥି
ଅଗ୍ରୁରୁ ତାରଲେ ସେ ଯେମନ୍ତ କରି ହେ,
୩୧୫ ଉଦ୍ଧବ, ଥିବ ଯେତେ ଦନ ଏ ଶରୀର,
ଅରେ ଜଣାଇବ ଶ୍ରୀକୃଷ୍ଣ ଚ୍ଛମୂର ହେ,
ଥଣ୍ଟେ ଚତ ହୋଇଥିବ    ଏମନ୍ତ ବେଳେ କହିବ
ଥିବେ ନାହିଁ ମଥୁରା ରମଣୀ,
ଥୋକାଏ ରହି କହିବ    ଯେମନ୍ତେ ହୋଇ ଆସିବ
୩୨୦ ତୁମ୍ଭେ କ ନଜାଣ ବପ୍ରସିଂଘା ଭଣି ସେ ॥ ୩୩ ॥

---

୨୯୭. ସ୍ତ୍ରିରି—ସ୍ଥିର । ୩୦୩. ଧ୍ରୁବ—ଧ୍ରୁବ । ୩୦୬. ମତ—ମନ୍ତ୍ର ।
୩୦୮. ମନ୍ଥାସି—ସନ୍ଥାସି । ୩୦୯. ସ୍ତ୍ରିରି—ସ୍ଥିର । ୩୧୩. ଯୁଗେ—ଦଗେ ।
୩୧୬. ଶରୀର—ସ୍ୟଇର ।

ଏଣ୍ଡେ ତୁନ ହୋଇ ଶୁଣି　　　　ଉଦ୍ଧବ ବୋଲନ୍ତି ବାଣୀ

ଆଜ୍ଞା କଲେ ଆସିବେ ଗୋପକୁ,

ଏଥୁ ତାର ଯଶ ମୋର　　　　କରନେ ଥିଲେ ତୁମ୍ଭର

ଆଗ୍ୟା ହୋଇଲେ ମୁ ନେମଇ ତୁମ୍ଭଙ୍କୁ ଗୋ,

୩୨୯　　ଗୋପୀମାନେ, ଏକଚଦକଣ ବନମାଳ,

ଦେଲେ ଅପୂର୍ବ ରସରେ ଚୋ-ଚକଳ ଗୋ

ଦୂତକର ମେର ବାଣୀ　　　　ଯିବାର ଏଅ ମେଲାଣି

ନଷ୍ଟେ ତୁମ୍ଭେ ମଥୁରାକୁ ମିତ୍ର,

ଦେହକୁ ଦୁଃଖ ନଦେବ　　　　ଗୋଚର ଭାବରେ ଥିବ

୩୩୦　　ବୋଲେ ଭଦ୍ରସିଂହ ତୁମ୍ଭେ ଅବଶ୍ୟ ଯାଇବ ଗୋ ॥ ୩୪ ॥

---

ଟୀକା :—

୧. ରୁହାଇବା—ରହିବାର ଣିଜନ୍ତ ରୂପ, ଖୋଇବା, ଚହେ—ଚରିତ; ମୁହୁବା—ମୁରୁଛିବା, ଲୋଭ ଛାଡ଼ିବା ।

୨. ଉତାରେ—ଉଚ୍ଚାରେ; ରହ୍ମବର—ରଥ, ରଥବର ଶବ୍ଦଜ; କାରଜ—କାର୍ଯ୍ୟ, କୃତ ଶବ୍ଦଜ; ହୁନାଲି—ବିରହୀ, ହୁଲ ଶବ୍ଦଜ ।

୩. ପ୍ରତକ୍ଷ—ପ୍ରତ୍ୟକ୍ଷ; ଖେଡ଼ାଖେଡ଼—ଖେଳାଖେଳି; ପୁନ୍ସ—ପୁଷ୍ପ ।

୪. ସମଯାସ—ପରଶୁ, ସମସ୍ପର୍ଶ ଶବ୍ଦଜ; ମୁଧୁନ—ମୁଣ୍ଡ, ମୂର୍ଦ୍ଧନ୍ ଶବ୍ଦଜ; ସେଣ୍ଟେ—ସେହିପରି; ହୋଏ—ହୁଏ ।

୫. ନୋହେ—ନୁହେଁ; ମାଛୁବା—ମାଛି, ମକ୍ଷିକା ଶବ୍ଦଜ; ଟକଣ—ତେଲ ।

୬. ସମ୍ବସର—ଏକାପରି; କଳସ—ଘଟି, କିନ୍ତୁ ଗୃହ ଅର୍ଥରେ ପ୍ରଯୁକ୍ତ, ଗୃହିଣୀ ଗୃହମୂର୍ତ୍ତ୍ୟେତ; ମଉଲ—ମଙ୍ଗଳ; ସମ୍ଭବ—ସ୍ୱୟଂ; ଓବହାର—ବହାର; ସିହାଣ—ଚତୁର, ସିଆଣିଆ ।

୭. ବନେବନ—ବନେବନେ; ସଙ୍କୁଚ—ଲଜ୍ଜା, ସଙ୍କୋଚ; ଯେସଣ୍ଟେ—ଯେପରି; ସଂପଦ—ଗୁଣ, ସମ୍ପତ୍ତି ଶବ୍ଦଜ ।

୮. ସୋହୋଦ୍ର—ଭାଇ, ସହୋଦର ଶବ୍ଦଜ; ବୁଢବା—ରହିବା ।

୯. ନାଽୟକା—ନାୟିକା, (ନାୟକା); ବସରିବା—ପାଶୋରିବା, ବିସ୍ମରଣ ଶବ୍ଦଜ; ଚରଣ—କୂଟା, ତୃଣ ଶବ୍ଦଜ; ନିଜ—ନିତ୍ୟ; ସୁମରିବା—ସ୍ମରଣ କରିବା ।

୧୦. ଚନ୍ଦୁ—ଚନ୍ଦ; ମୁଣ୍ଡନ—ଶୀର୍ଷ, ମୂର୍ଦ୍ଧନ୍ ଶବ୍ଦଜ; କାକେ—କାହିଁକି ।

୧୧. ଚିତ—ମନ, ଚିତ୍ତ; ଗୁଆଲୀ—ଗୋପବାଳୀ; ଧିଆଇ—ଧ୍ୟାନକରି; ଦ୍ରଶନ—ଦର୍ଶନ (ଦରଶନ); ତତ୍କେକ—ସମୁଦ୍ରେକ ।

୧୨. ପୋଛନା—ପୁଛନା; ଅଦିକାର—ନର୍ଲିପ୍ତିବ ।

୧୩. ଭଗତ—ଭକ୍ତ, ଭକତ; ମଜିଲ୍—ମଞ୍ଜିଲ୍; ଲେଝିବା—ତ୍ୟାଗକରିବା; ଛଦ୍ମ—ଛଳ ବଚନ, ଛଦ୍ମ ଶବ୍ଦଜ; ଛନ୍ଦ ପ୍ରନ୍ଧ କୁଟ—ଛନ୍ଦର ସମାହାର ନ । ଘର; ଗଜଦନ୍ତ—ହାତୀଦାନ୍ତ ଗଜଦଂଷ୍ଟ୍ର ଶବ୍ଦଜ ।

୧୪. ସଂଘଟବା—ଦାବେଇ ରଖିବା, ସଂଗ୍ରହଣ ଶବ୍ଦଜ; ଘଇ—ଗ୍ରୀଧା; ତିଳତମା—ତିଲୋତ୍ତମା; ସଭଙ୍ଗେ—ତରଙ୍ଗିତ ହୋଇ; ହେଟମାଥ—ମୁଣ୍ଡପୋତିବା ଅବସ୍ଥା, ଲଘୁପଣ—ଲଜ୍ଜିତ୍ୟ; ଫବଡ଼ାଇବା—ଫୋପାଡ଼ିବା, ଦୂର କରିବା; ଘକୁସ୍ତ—କାତର ପ୍ରାର୍ଥନା; ବନୋଇ—ବନସ୍ଥ ହୋଇ ।

୧୫. ବେବସ୍ଥା—ବ୍ୟବସ୍ଥା ଶବ୍ଦଜ, ଯୋଗାଡ଼; ଅବୁଝିବା—ଅଦବିବା ।

୧୬. ଅଷ୍ଟକୁବ୍ଜୀ—ଅଷ୍ଟଶସ୍ତ୍ର କୁବ୍ଜା; ଅପସ୍ରୁ—ଅପ୍ସରା (ଅପଛରା); ପାବନ୍ତ—ପାଅନ୍ତ ।

୧୭. କାଳନ୍ଦୀ—କାଳିନ୍ଦୀ; ଝଗଡ଼—ବିବାଦ; ବଛ—ବାଛୁରି, ବତ୍ସ ଶବ୍ଦଜ; ଜନେକ—ଜନକ; ସୟମ୍ବର—ସ୍ୱୟଂବର; ପ୍ରଶୁନାଥ—ପରଶୁରାମ; ଶସ୍ତ୍ର—ଶସ୍ତ୍ର

୧୮. ବେନ—କଥା, ଅଦେଶକର୍ତ୍ତା [ ବୈଦେହୀଶ ବିଳାସରେ ଏପରି ପ୍ରୟୋଗ ରହିଛି ] ପୁଷ୍ପଉର—ପୁଷ୍ପଚମ୍ପକ; ରଉ—ରଜ୍ଜୁ; ମୟୂର—ପକ୍ଷୀବିଶେଷ ( ମଂଜୁର )

୧୯. କରସ୍ତ—ପରତ୍ୟକ୍ଷ; ଦନଙ୍କର—ଦନକାର, ସୂର୍ଯ୍ୟ; କମଷ—କମ୍ପଷ ।

୨୦. ମାହାପିଆସୁ—ମହାପିପାସୁ ।

୨୨. ଭ୍ରୁଆ—ଭର୍ତ୍ତା; ଇଛା—ଇଚ୍ଛା; ସିଧି—ସିଦ୍ଧି; ଦାମ—ରଜ୍ଜୁ; ଧନ୍ଦ—ବ୍ୟସ୍ତତା, ଧନ୍ଦା; ସଂଘାରିବା—ସଂହାର କରିବା; ବୋଲ—କଥା ।

୨୩. ଠଣ—ସୁନ୍ଦର, ଶୋଭା; ମୁରଛି—ମୂର୍ଚ୍ଛି; ଜଗତ—ଜଗତ; ଠୁଳ—ସ୍ଥୂଳତା; ଠକାର—ଠକାମି; ରଞ୍ଜନା—ଭୂଷଣ (ରଚନା); ଅବନ—ଧୃଷ୍ଟ,ଅବନସ୍ଥ ।

୨୪. ତତ୍ତ୍ୱ—ସତ୍ୟ, ପ୍ରକୃତ; ଲିହିବା—ଲେଖିବା; ଘଇବା—ଡ଼ାକିବା; ଶ୍ରୀହସ୍ତ—ଚିଠି (ହାତରେ ଲେଖା ପତ୍ର ଶ୍ରୀହସ୍ତ, ଡ଼ାକିବା କଥା ଅନ୍ୟ କେହି ଲେଖିବା ଚିଠି ଶ୍ରୀମୁଖ କିନ୍ତୁ ଉଭୟ ଶବ୍ଦ ପତ୍ର ଅର୍ଥରେ ସାଧାରଣତଃ ବ୍ୟବହୃତ ହୋଇଥାଏ); କାକତ—କାଗଜ, 'ପିଢ଼ା ତଳେ କାକତ, ମୋ ହାତ ରକତ—ଶିଶୁଗୀତ (କାକତ ଯାବନିକ ଶବ୍ଦ କିନ୍ତୁ ଏହାର ବ୍ୟବହାର

ଓଡ଼ିଶାରେ ହେଉଥିବା ଜଣାଯାଏ । ପର ପଦରେ କାଗଜରେ 'କାଳିରେ ଲେଖା ହେଉଥିବା ସ୍ପଷ୍ଟ ସୂଚନା ରହିଛି । ସାରଳା ମହାଭାରତରେ ମଧ୍ୟ 'କାଗଜ'ର ବ୍ୟବହାର ଅଛି )।

୨୫. ପସାରିବା—ପ୍ରସାରଣ କରିବା; ଢଙ୍କା କରି—ଆଚ୍ଛାଦ ଦ୍ୱାରା; ଅର୍ଦ୍ଧ—ଅଧା; ଓଡ଼ିଲାଇ—ହଜାଇ; ଲେଖା—ପଦ, ଚଉଡ଼ି; ଭର୍ଜନ—ଭଜନ ।

୨୬. ଗାଢ଼—ଅଧିକ; ଫଳନ୍ତସରସୱାନ—ଅର୍ଥ ଅବୋଧ୍ୟ; ଫଣୀଭୂଷଣ ଅରି—ମଦନ; ନଶହସ୍ତ—ନାଃଶସ୍ତ୍ର ।

୨୭. ଢଳଢଳ—ଢଳଢ଼ଳ; ଫେର - ସାପର ଲମ୍ବ ଦେହ; ଢ଼'ଲେ ଶୁକପକ୍ଷୀ—ଶୁଆ ମଣିଷପରି କଥାବାର୍ତ୍ତା କହୁଥାଏ ତାହା ଦେଖିବାକୁ ମନୋହର କିନ୍ତୁ ତାହାର ସ୍ଥିର ନିବାସ ନାହିଁ, କୃଷ୍ଣ ସେହିପରି [ ଏହାର ପାଠ ତାଲେ ଶୁକପକ୍ଷୀ ହୋଇଥିଲେ ଅଧିକତର ସଙ୍ଗତ ହୁଅନ୍ତା—ସ୍ଥିର ବସା ନ ଥିବା ଅବସ୍ଥା ବୁଝା ପାଆନ୍ତା; ତୁଳନାରେ କେଶବ କୋଇଲିର 'ଢ଼'ଳରଡ ଶୁଆ ପ୍ରାୟେ ଉଡୁଥାନ୍ତି ହରି ଦେଖ' ]

୨୮. ରମଣି—ରମଣ; ପୃଚେ—ପୃଷ୍ଠେ, ପୁରୁବେ; ପିଠିର ଅନ୍ତୁ ମାରି—ନନ୍ଦ ଅର୍ଥାତ୍ ଆନନ୍ଦକୁ ନାଶ କରନ୍ତୁ ।

୨୯. ଅଣିପଣ—ଗର୍ବ; ଅଣଅପୁତ—ଅନାସକ୍ତି; ଷଚ୍ଚେ—ଷଣ୍ଢ; ଡଣ୍ଡିଲୁ—ଅର୍ଥ ଅବୋଧ୍ୟ । ଅଣିମୁ—ଅଣିବୁ; ଖେମା—କ୍ଷମା ।

୩୦. ନଷ୍ଟିନ୍ତେ—ନଷ୍ଟ ହୋଇ; ଦନକରି—ଦନ୍ତ ଚାଳି; ନୋଇଲେ—ନଇଲେ, ନଆସିଲେ; ଘଟଣ—ଗଠନ (ଘଟଣ); ଦେସ୍ତି—ଅସ୍ତି; ବାରନାଧି ଅଚ୍ଛଦନ୍ତି—ଭାଗବତର ବର୍ଣ୍ଣନା କ୍ରମାନୁସାରେ ଉଦ୍ଧବ ଗୋପକୁ ଆସିବା ପରେ କୃଷ୍ଣ ସମୁଦ୍ର ମଧ୍ୟରେ ଦ୍ୱାରକା ନିର୍ମାଣ କରି ତହିଁ ମଥୁରା-ବାସୀଙ୍କୁ ଆଶ୍ରୟ ଦେଇଥିଲେ ।

୩୧. ଦୁରଦୃଷ୍ଟ—ମନ୍ଦଭାଗ୍ୟ, ଦୁରଦୃଷ୍ଟ; ଉସ୍ପେ—ଉସ୍ମ; ବୁଧି—ବୁଦ୍ଧି; ଘେନମାନ୍ତୁ—ଘେନିବାକୁ, ନିଜର କରିନେବା ହେତୁ ।

୩୨. ଧଇର୍ଯ୍ୟ—ଧୀରତା, ଧୈର୍ଯ୍ୟ ରହିଲ; ପକ୍ଷୀର ପ୍ରାୟେ ଚିତ—ଗୋଟିଏ ସ୍ଥାନରେ ଅମୃତ ପାଇଲେ ମଧ୍ୟ ତାକୁ ଛାଡ଼ି ନାନା ସ୍ଥାନ ବୁଲିବାକୁ ପକ୍ଷୀ ଇଚ୍ଛା କରେ । ମଜ୍ଜାସି—ମନ୍ଥନ କାରଣୀ [ ଏହି ଶବ୍ଦର ପ୍ରୟୋଗ ଅନ୍ୟତ୍ର ଦେଖା ଯାଉନାହିଁ କିନ୍ତୁ ରକ୍ଷା କରିବା ବ୍ୟକ୍ତିକୁ ରକ୍ଷାସି ବୁହାଯାଉଥିବା କଥା ପ୍ରାଚୀନ ସାହିତ୍ୟରେ ମିଳେ ]

୩୩. ଭଗ୍ୟରଥି—ଭଗିରଥ; ଥୟେ—ଥୟ, ସ୍ଥିର ।

୩୪. ନେମର—ନିବ; ଦଇତଦଳନ—ଦୈତ୍ୟଦଳନ; ଅପୁବ—ଅପୂର୍ବ (ଅପୁରୁବ); ପିବଇ—ପିବ ।

---

ସଂ: ୯

# ବନବାସ ଚଉତିଶା

ହଂସ ପାତ୍ର

[ କବି ହଂସପାତ୍ରଙ୍କର ପରିଚୟ ଓ କାଳ ଅଜ୍ଞାତ । ବାତ୍ସଲ୍ୟ ରସାପ୍ଲୁତ ଏହି କମନୀୟ କବିତାଟିର ଭାଷା ସପ୍ତଦଶ ଶତାବ୍ଦୀର ହେବା ଅନୁମାନ ହୁଏ । ]

କାନ୍ଦି କହେ କଉଶଲ୍ୟା,
କଅଁଳା ପୁଅ ରଘୁନାଥ ମୋହୋର ଗୋ,
କାହିଁ ବୋଲେ ବନ ଗଲ, ମୋ ରାମ ଯେ ॥ ୧ ॥

ଖେଳାଉଳ ରଘୁମଣି,
୫ ଖାଇବେଳେ ମଳ ବଦନ ଶୁଖିବ ଗୋ,
ଖଙ୍ଗେତେ ଛିନ ପରାଣୀ, ମୋ ରାମ ଯେ ॥ ୨ ॥

ଗଲେ ଯେଉଁ ବନୁ ରାମ,
ଗୁଣ୍ଡୁ ଗୁଣ୍ଡୁ ରାଜ ଧବ ନ ସରଇ ଗୋ,
ମୋତେ ନେଇ ଜନା ଯମ, ମୋ ରାମ ଯେ ॥ ୩ ॥

୧୦ ଘୋର ବନେ କି କରିବେ,
ଘୋର ବରଷାରେ କେଉଁ ବୃକ୍ଷ ତଳେ ଗୋ,
ନାନା ଦୁଃଖ ପାଉଥିବେ, ମୋ ରାମ ଯେ ॥ ୪ ॥

ନିଶା କାଳେ କି କରିବେ,
ନୁଆ ବୃକ୍ଷେ ସେ ତିନ ଗୋଟି ପରାଣୀ ଗୋ,
୧୫ ଡାଳ କୁଡ଼ିଆରେ ଥିବେ, ମୋ ରାମ ଯେ ॥ ୫ ॥

ଚନ୍ଦ୍ରମା ବଦନ ରାମ,
ଚୁମ୍ବିଂଲେ ତା ମୁଖ ସନ୍ତୋଷ ହୁଅଇ ଗୋ,
ତନୁ ନନ୍ଦେ କୋଟି କାମ, ମୋ ରାମ ଯେ ॥ ୬ ॥

---

୭. ବନୁ—ଧନୁ । ୧୪. ବୃକ୍ଷେ—ବସେ ।

ଛଡ଼ାଇ ଅଶ କେ ନେଲ,
୨୦ ଘୋର ଜୀବନ କଟାଇ ରହୁଅଛୁ ଗୋ,
ବିଧାତା ଏ କଷ୍ଟ ଦେଲା, ମୋ ରାମ ଯେ ॥ ୭ ॥

ଜନେକ ନନ୍ଦନୀ ସୀତା,
ଯୁବା ବୟେସେ ବନବାସ ବସିଲେ ଗୋ,
କୃପା ନ ମଲା ବିଧାତା, ମୋ ରାମ ଯେ ॥ ୮ ॥

୨୫ ଝଂଡେ ଝାଡ଼େ ବୁଲୁଥିବେ,
ଝାଡ଼ ଫଳମାନ ତୋଳି ଖାଉଥିବେ ଗୋ,
ନାନା ଦୁଃଖ ପାଉଥିବେ, ମୋ ରାମ ଯେ ॥ ୯ ॥

ନୃପତି କୁଳେ ଜନମ,
ନୃପତି ନନ୍ଦନୀ ସଙ୍ଗତେ ଯୋଜନ ଯେ ଗୋ,
୩୦ କାହୁଁ ବଞ୍ଚୁଥିବେ ଦନ, ମୋ ରାମ ଯେ ॥ ୧୦ ॥

ଟାଣ ପଣ ଆମ୍ଭ ଗଲା,
ଟାଣ ଧାଇଁ ରାମ ବନକୁ ଗବନ ଗୋ,
ଏଣେ ଦଶରଥ ମଲା, ମୋ ରାମ ଯେ ॥ ୧୧ ॥

ଠାକୁର ହୁଅନ୍ତେ ଥିଲେ,
୩୫ ଠାବ ନ କରି ମନ୍ଥଡ଼ୀ ବୋଲେ ଗଲେ ଗୋ,
ଜାଣିଲେ ରୁହାନ୍ତୁ ଦଣ୍ଡେ, ମୋ ରାମ ଯେ ॥ ୧୨ ॥

ଡାଳିମ୍ବ ଦଶନ ମୁଖ,
ଡୋଳା ପୁତୁଳାକୁ କେ କାଢ଼ି ନେଲା ଗୋ,
ମୁ କେତେହେ ସହିବ ଦୁଖ, ମୋ ରାମ ଯେ ॥ ୧୩ ॥

୪୦ ଡାଳେ ଝୁରିବନ ଦେହ,
ଡାଳେହେ ମନକୁ ମୁରୁଛି ନୁହଇ ଗୋ,
ମୁ କି ବୁଧି କରିବ କହ, ମୋ ରାମ ଯେ ॥ ୧୪ ॥

ଅଣ ଆପେତ ହୋଇଲା,
ଅଧମ ବୁଧିରେ ବନକୁ ଗବନ ଗୋ,
୪୫ ଅଣବନ୍ଧ ଏହା କଲା, ମୋ ରାମ ଯେ ॥ ୧୫ ॥

---

୩୦. ବଞ୍ଚୁଥିବେ—ବଚୁଥିବେ; ଦନ—ଧନ ।

ଛୁଲେ ଗଲେ କହୁଦେଖି,
ତିନ ଘରଣୀ କେନେ କଷ୍ଟ ସହିବେ ଗୋ,
ତାଙ୍କ ସଙ୍ଗତେ ନଥିବେ କେହି, ମୋ ରାମ ଯେ ॥ ୧୬ ॥

ଥିବାର ସତ ସରୂପ,
୫୦ ଥିଲେ ବଂଶ ପାଇଲେ ରାଜା ହୁଅନ୍ତେ ଗୋ,
ମୁ କେତେହେ କରିଛି ପାପ, ମୋ ରାମ ଯେ ॥ ୧୭ ॥

ଦୟାସାଗର ଶ୍ରୀରାମ,
ଦ୍ରହାସ ବଦନେ ପଙ୍କଜଲୋଚନ ଗୋ,
ଶୋହୁଛୁ ପୀତ ବସନ, ମୋ ରାମ ଯେ ॥ ୧୮ ॥

୫୫ ଧନ୍ୟ ସେ ମନ୍ଥରା ଭଲ,
ଧନୁ ଭଙ୍ଗି ରାଜାମାନଙ୍କୁ ଜିଣିଲେ ଗୋ,
ହରି ହୋଇଲେ ଅବଳା, ମୋ ରାମ ଯେ ॥ ୧୯ ॥

ନୃଆ ମଦନ ଜବା ଏ,
ନୃପତି ନନ୍ଦନ ସଙ୍ଗତେ ଘେନି ଗୋ,
୬୦ ଇନ୍ତ କାମ ପ୍ରାୟେ ଶୋଏ, ମୋ ରାମ ଯେ ॥ ୨୦ ॥

ପାପୀ ଏ ଅଯୋଧ୍ୟାପୁର,
ପାପୀ ବିଧାତା ବନବାସ କରିଲେ ଗୋ,
ରାମ ଗଲେ ବନ ଘୋର, ମୋ ରାମ ଯେ ॥ ୨୧ ॥

ଫୁଲ ନାନାବର୍ଣ୍ଣ ଶୋଭା,
୬୫ ଫୁଲ ତ୍ରିମୁଣ୍ଡିରେ ବାନ୍ଧିଛି ଗଭା ଗୋ,
ଚନ୍ଦ୍ରମା ମୁଖକୁ ଶୋଭା, ମୋ ରାମ ଯେ ॥ ୨୨ ॥

ବେନି ପୋଏ ମୋର ଗଲେ,
କାନ୍ତୁର କାଳେ କେତେ କଷ୍ଟ ସହିବେ ଗୋ,
ଜନମ ଏ କଷ୍ଟ ଦେଲେ, ମୋ ରାମ ଯେ ॥ ୨୩ ॥

---

୫୩. ଦ୍ରହାସ—ଦ୍ରାହସ । ୫୪. ଶୋହୁଛୁ—ମୋହୁଛି ।
୫୮. ଜବାଏ—ଜ ପ୍ରାୟେ । ୬୪. ଫୁଲ—ଫୁଲ । ୬୫. ଫୁଲ—ଫୁଲ ।

୭୦ ଭୋକ ଲଗିବାର ବେଳେ,
ଭୋକ ବଞ୍ଚୁଥିବେ ଫଳମୂଳ ଖାଇ ଗୋ,
ତନୁ ଝୀନ ହେବେ ଡ଼ାଳେ, ମୋ ରାମ ଯେ ॥ ୨୪ ॥

ମାତାଗଣମାନେ ଆସି,
ମୂର୍ତ୍ତି ଯୋଡ଼ି କରି ଭାଜନ୍ତି କାନ୍ଦନ୍ତି ଗୋ,
୭୫ କଉଶଲ୍ୟା ପାଶେ ବସି, ମୋ ରାମ ଯେ ॥ ୨୫ ॥

ଜୀବନ ପଛକେ ଯାଉ,
ଯୋଇ ଜାନକୀର ସହ୍ୟ ପଶିବା ଗୋ,
ଯୁଗେ ଯୁଗେ କଥା ଥାଉ, ମୋ ରାମ ଯେ ॥ ୨୬ ॥

ରାଣୀହଂସ ପୁରେ ପଶି,
୮୦ ରାମ କାହିଁ ବୋଲି ଡାକିଣ କାନ୍ଦନ୍ତି ଗୋ,
ସବୁ ରାଣୀମାନେ ବସି, ମୋ ରାମ ଯେ ॥ ୨୭ ॥

ଲାବଣ୍ୟ ସୁନ୍ଦର ମୁଖ,
ଲୋଚନ ବେନି ରଙ୍ଗପଦ୍ମ ପ୍ରାପ୍ତେକ ଯେ,
ଦେଖି ପାଉଥାଉ ସୁଖ, ମୋ ରାମ ଯେ ॥ ୨୮ ॥

୮୫ ବୃକ୍ଷ ତଳେ ଥିବେ ଶୋଇ,
ବାଳୁତ ନନ୍ଦନ ସୁମିତ୍ରା ନନ୍ଦନ ଯେ,
ସାଙ୍ଗେ ଛନ୍ତି ବଇଦେହୀ, ମୋ ରାମ ଯେ ॥ ୨୯ ॥

ଶିରେ ଜଟାଭାରେ ବନ୍ଧି,
ଶ୍ରୀଅଙ୍ଗଯାକ ବିଭୂତି ବିଲେପନ ଯେ,
୯୦ ତାଙ୍କ ସଙ୍ଗତେ ନ ଗଲେ କେହି, ମୋ ରାମ ଯେ ॥ ୩୦ ॥

ଶେଯ ସିଆଡ଼ି ଲତାରେ,
ନିଗମ ବନରେ କାହିଁ ନିଦ୍ରାଗଲେ ଗୋ,
କେହି ନାହିଁ ସଙ୍ଗତରେ, ମୋ ରାମ ଯେ ॥ ୩୧ ॥

---

୭୧. ବଞ୍ଚୁଥିବେ—ବଚୁଥିବେ । ୭୨. ଡ଼ାଳେ—ଡାଳେ । ୮୨. ଲାବଣ୍ୟ—ଲାବାଣ୍ୟ । ୮୮. ଜଟାଭାରେ—ଜଟାଧୁରେ । ୮୯. ବିଭୂତି—ଭିଭୂତି ।

ସୁକୁମାର ତନୁ ଗୋଟି,
୯୫ ସ୍ୱର୍ଣ୍ଣ ପଲଙ୍କ ତେଜ ରଘୁନାଥ ଯେ,
କାହୁଁ ଶୋଇଥିବେ ଲୋଟି, ମୋ ରାମ ଯେ ॥ ୩୨ ॥

ହନୁମାନ ଆସି କହେ,
ଛାଡ଼ିଲେ ରାମ ନିକଟେ ପରବେଶ ଯେ,
ଶୋକ ଛାଡ଼ ତୁମ୍ଭେ ମାଏ, ମୋ ରାମ ଯେ ॥ ୩୩ ॥

୧୦୦ ଛାଡ଼ିଲା ଶୋକ ସବୁ ବି,
ଗ୍ରାବ ହଟପାଟ କିଛୁ ନ ଜାଣଇ ଯେ,
ନମସ୍କାର କରି ଶ୍ରୀହରି, ମୋ ରାମ ଯେ ॥ ୩୪ ॥

—୪୦୩—

**ଟୀକା :—**

[ ଶକୁନ୍ତଳା ଚଉତିଶା (ପୃ ୧) ଓ ଏହା ଗୋଟିଏ ପୋଥିର ଲେଖନକାର କଣେ । ପୋଥିରେ 'ଛ' ଓ 'ଷ' ଉଭୟ ଅକ୍ଷର ପାଇଁ ଷ ଏବଂ ଲ ଓ ଳ ଉଭୟ ଅକ୍ଷର ପାଇଁ କେବଳ ଳ ବ୍ୟବହାର କରାଯାଇଛି କିନ୍ତୁ ପାଠୋଦ୍ଧାର ବେଳେ ପାଦଟୀକା ନ ଦେଇ ପାଠ ତାକୁ ସ୍ୱତନ୍ତ୍ର କରି ଦିଆ-ଯାଇଛି । ଅନୁସ୍ୱାରର ଅସ୍ୱବଗତ ବ୍ୟାଖ୍ୟା ନିମ୍ନରେ ଦିଆଯାଉନାହିଁ । ]

୨. ଖେଡ଼ାଉଳ—ଖେଳା ଶବ୍ଦରୁ, କ୍ରୀଡାଦ୍ୱାରା ପ୍ରଭାବିତ, 'ଖେଡ଼'ରୁ ଉଦ୍ଭୂତ, କ୍ରୀଡ଼ାସକ୍ତ (ଖେଡ଼ୁଆଳ); ରଘୁମଣି—ରଘୁନାଥ ।
୩. ଦବ—ଦବସ: କନା—ଅବା, ବଳଲ ଖ୍ରବନା ।
୫. ନୁଆ—ନୁଆଣିଆ । ୯. ଝାଡ଼—ବଣ । ୧୧. ଗବନ—ଗମନ ।
୧୨. ଠାବ—ଅବସ୍ଥାନ; ରୁହାନ୍ତୁ—ରଖାଇଥାନ୍ତୁ ।
୧୩. ପୁତ୍ତଳା—ପିତ୍ତଳା; କାଢ଼ବା—କାଢ଼ିବା । ,୧୭. ସରୁପ—ସ୍ୱରୂପ, ପ୍ରକୃତ ।
୧୮. ଦ୍ରୁହାସ—ଦରହାସ; ଶୋହନ୍ତୁ—ଶୋଭା ପାଇଛି ।
୨୦. ଶୋଏ—ଶୋଭାପାଏ (ଶୋଭେ); ନୃପଟ୍ଠ—ନୃପଷ୍ଠ ।
୨୨. ତ୍ରିମୁଣ୍ଡି—କେଶ ବିନ୍ୟାସ ଭେଦ, ତିନିବେଣୀ ହୋଇ ବାନ୍ଧିବା ଜୁଡ଼ା ।
୨୪. ଖୀନ—କ୍ଷୀଣ । ୨୭. ଲୋଇ—ଜୁଇ, ଚିତାଗ୍ନି ।
୩୦. ବଲ୍ଲେପନ—ବିଲେପନ । ୩୧. ଲଗମ—ଅଗମ୍ୟ ।

# ଚଉପଦୀ ଭଜନ

ଦ୍ୱାରକା ଦାସ

[ କବି ଦ୍ୱାରକା ଦାସ ଜଣେ ଜଣାଶୁଣା ବ୍ରହ୍ମଜ୍ଞାନୀ । ଜନ୍ମ ଖ୍ରୀ. ୧୭୭୧ । ପିତା ରାମ ଦାସ, ଜାତିରେ ଶୂଦ୍ର । ଖୋରଧା ରାଜାଙ୍କ ବେବର୍ତ୍ତା ପଦନ ପଟ୍ଟନାୟକ ଏହି ଦାରିଦ୍ର୍ୟ ପୀଡ଼ିତ କବିଙ୍କର ପୃଷ୍ଠପୋଷକ ଥିଲେ ଏବଂ ତାଙ୍କର ଜ୍ୟେଷ୍ଠପୁତ୍ର କବିଙ୍କର ଶିଷ୍ୟ ହୋଇଥିଲେ । ଦ୍ୱାରକା ଦାସଙ୍କ ରଚନା ମଧ୍ୟରେ ଲକ୍ଷଣ ଗୁପ୍ତଗୀତା, ଗୁପ୍ତଗୀତା, ପ୍ରେମରସ ଚନ୍ଦ୍ରିକା, ଶିବ ପୁରାଣ, ପବନେ ଚୀତ, ସାତ ପୋଇ, ଗୋବିନ୍ଦ ଗୀତା, ଭାଗବତ ଭାଷ୍ୟ, ଛପୋଇ, ଭାଗବତ ତ୍ରୟୋଦଶ ସ୍କନ୍ଧ ଆଦି ପ୍ରଧାନ । ନିମ୍ନ ଚଉପଦୀର ଅନ୍ୟ ଏକ ପାଠ ମିଳୁଛି ଯହିଁରେ କବିଙ୍କ ନାମ ଗୌରାଙ୍ଗ ବୋଲି ଦତ୍ତ ଅଛି । ପ୍ରାଚୀନ ସାହିତ୍ୟରେ ଚୌରର ଏହା ଏକ ଦୃଷ୍ଟାନ୍ତ । ପାଦ ଟୀକାରେ ଦ୍ୱାରକା ଦାସ ଭଣିତ ଥିବା ପାଠକୁ (କ) ଏବଂ ଗୌରାଙ୍ଗ ଭଣିତ ଥିବା ପାଠକୁ (ଖ) ଭାବେ ଚିହ୍ନିତ କରାଯାଇଛି । ]

( ରାଗ—ରସକୁଲ୍ୟା )

କାଳନ୍ଦୀ ଶିଖେ କମଳ ଫୁଟିଛି,
ଛିନ୍ନନାଳେ ନିରଞ୍ଜନ ଖେଳୁଛି ।
ଗୋଲ୍ଲହାଟ ଯେ ଗଗନ ଶିଖରୁ,
ଘଟଣ ପ୍ରତିମା ବଜେ ସେଠାରୁ ଯେ
୫ ଉଦେ ଅସ୍ତ ରବି ଚନ୍ଦ୍ର ଯେ
ଗନ୍ଧନ୍ତା କହନ୍ତା ବହନ୍ତା ଶୁଣନ୍ତା
ଏକା ଘରୁ ଭିନ୍ନ ଭିନ୍ନ ଯେ ॥ ୧ ॥

---

୧. ଫୁଟିଛି (ଖ)—ଫୁଟିଅଛି (କ) । ୩. ଗୋଲ୍ଲହାଟ (କ)—ଗୋଲ୍ଲହାଟେ (ଖ) ।
୫. ରବି (କ)—ଭୂମି (ଖ) । ୬. କହନ୍ତା ବହନ୍ତା (କ)—ବହନ୍ତା କହନ୍ତା (ଖ) ।
୭. ଏକା (କ)—ଏକ (ଖ) ।

ଛଅ ଚଉବନ ଛପନେ ଛଅ,
ଜୀବ ପରମ ଏକା ଘରେ ବନ୍ଦୀ ।

୧୦ ଝର ଝର ଜଳ ଧାର ବହୁଚି,
ନାବ ଖଟାଇ ତଟଇ ବସିଚି-ଯେ,

ଟେକ ଭୁଧର ଉଜାଣି ଯେ ।
ମୂଳ ଶୂନ୍ୟରୁ ନ'ନାକାର ବହୁଚି
ଗୁରୁ ସେବଥିଲେ ଜାଣି ଯେ ॥ ୨ ॥

୧୫ ଉପର ଫିଟିଚି ଗୃହ ଦୁଆରୁ,
ଭ୍ରମ ପବନ ମାରୁଛି ନାସାରୁ ।

ଅନାହତରୁ ଶବଦ ଶୁଭୁଚି,
ତ୍ରିକୂଟା ତ୍ରିକୂଟ ସ୍ଥାନେ ଲୁଚିଛି ଯେ,

ଥପୁ କର ପଞ୍ଚୁ ମନ ଯେ,
୨୦ ଦେଉଳ ଭିତରେ ଦେବତା ରହିଛି
ପାଇଲେ କର ଦରଶନ ଯେ ॥ ୩ ॥

---

୮. ଛପନେ (କ)—ଛପନ (ଖ) ।
୯. ଏକା (କ)—ଓସୂକ (ଖ) ।
୧୧. ବସିଚ (କ)—ବାନ୍ଧୁଛି (ଖ) ।
୧୨. ଟେକ (ଖ)—ଟେକ (କ); ଭୁଧର (କ)—ପ୍ରବ୍ବା (ଖ) ।
୧୩. ମୂଳ···ବହୁଚ (କ)—ମୂଳଶୂନ୍ୟ ପରେ ଭଜନା ଲାଗିଛି ।
୧୪. ସେବଥିଲେ (କ)—ସେବାକଲେ (ଖ) ।
୧୬ ଭ୍ରମ (କ)—ବେଗ (ଖ); ମାରୁଛି (କ)—ମାରଇ (ଙ) ।
୧୭. ଅନହତରୁ ଶବଦ (କ)—ଅଣହେତୁର ଶବଦେ (ଖ) ।
୧୮. ତ୍ରିକୂଟା···ଲୁଚଛି (କ)—ତ୍ରିକୂଟେ ତ୍ରିକୂଟା ବାସ କରଛି (ଖ) ।
୨୦. ଭିତରେ (ଖ)—ବାହାରେ (କ); ରହିଛି (କ)—ବସିଛି (ଖ) ।

ଧରି ନାମ ହୃଦପୁରେ ଜପିବୁ,
ନିରାକାର ନିରଞ୍ଜନ ଦେଖିବୁ ।

ପଲକ ପିଛୁଡ଼ା ଉଡ଼ିବ ଯେବେ,
୨୫ ଫୁଙ୍କାବନ୍ଧେ ନୃତ୍ୟ ଦେଖିବୁ ତେବେ ଯେ,

ବୃନ୍ଦାବନେ ବିଜେ ହରି ଯେ ।
ଭଗତ ଭାବକୁ ବିଜେ କରିଛନ୍ତି
ଘଟେ ଘଟେ ଛନ୍ତି ପୂରି ଯେ ॥ ୪ ॥

ମୁକୁନ୍ଦ ମାଧବ ମଧୁସୂଦନ,
୩୦ ଜୀବ ପରମ ନାମ ଭିନ୍ନ ଭିନ୍ନ ।

ଗାଉଛନ୍ତି ପବନ ଶୂନ୍ୟରୁ ବାଣୀ,
ଲହରୀ ଘାତର ମାରୁଅଛି ପାଣି ସେ,

ବନ୍ଧୁନାଳେ ଆଡପାଡ ଯେ,
ଶୂନ୍ୟ ପୁରୁଷ ଶୂନ୍ୟରେ ରହିଅଛି
୩୫ ଜପ ଜପଇ ମରୁତ ଯେ ॥ ୫ ॥

---

୨୨. ନାମ···ଜପିବୁ (କ)—ମନକୁ ଅମନ ପଶିବୁ (ଖ);
୨୩. ନିରାକାର ନିରଞ୍ଜନ (କ)—ନିରଞ୍ଜନ ନିରାକାର (ଖ) ।
୨୪. ପଲକ (ଖ)—ପଲଙ୍କ (କ), ପିଛୁଡ଼ା ଉଡ଼ିବ (କ)—ନପଡ଼ି ରହିବୁ (ଖ) ।
୨୫. ଫୁଙ୍କାବନ୍ଧେ (କ)—ଫୁଙ୍କାନାଳେ (ଖ) ।
୨୭. ବିଜେ କରିଛନ୍ତି (କ)—ପ୍ରସନ୍ନ ହୁଅନ୍ତି (ଖ) ।
୨୯. ମୁକୁନ୍ଦ (ଖ)—ମକୁନ୍ଦ (କ) ।
୩୦. ଭିନ୍ନ ଭିନ୍ନ (କ)—ଭିନ ଭିନ (ଖ) ।
୩୧. ଗାଉଛନ୍ତି···ବାଣୀ—ଗାଉଛନ୍ତି ପବନ ଶୂନ୍ୟରୁ ଆଣି (କ)—ଗାଉଛନ୍ତି ଶବଦ ଶୂନ୍ୟରୁ ବାରି (ଖ) ।
୩୨. ଲହରୀ···ପାଣି (କ)—ଲହରି ନିଶ୍ଚଳ କରିବ ପୁଣି (ଖ) ।
୩୪. ରହିଅଛି (କ)—ବିହରେ (ଖ) ।
୩୫. ଜପ (କ)—ଜୀବ (ଖ) ।

ସକାର ଅକାର ମକାର ଯେନ୍,
ସକାର ଯେନଣ ତା ବେଦ ଧ୍ୱନ ।

ହରେ ଆଠକ୍ଷର ସମାଧ୍ୱ ବୃତ୍ତି,
କୃଷ୍ଣ ବ୍ରହ୍ମର ଷୋଳଅକ୍ଷରୀ ଯେ,

୪୦ କ୍ଷମା କର ମୋର ଦୋଷ ଯେ ।
ସ୍ଥିର ଦ୍ୱାରକା ଏ ଗୀତରେ ଭଣିଲେ
ଗୁରୁପାଦେ କରି ଆଶ ଯେ ॥ ୬ ॥

—ଃ୦ଃ—

---

୩୭, ଯେନଣ ତା ବେଦ (କ)—ଯେନ ସେ ବେଦର (ଖ) ।
୩୯. ବ୍ରହ୍ମର—ବ୍ରହ୍ମକ୍ଷରୀ (କ) (ଖ) ।
୪୧. ସ୍ଥିର...ଭଣିଲେ (କ)—ଯେତେ ଗଡ଼ବର୍ଗ ଭାବରେ କହିଲେ (ଖ) ।
୪୨. ଗୁରୁ...ଆଶ (କ)—ଗୁରୁ କହିଥିଲେ ଘୋଷ (ଖ) ।

ସଂ: ୧୧

# ଛଳଶ୍ଳେଷଯମକାନୁପ୍ରାସ ଚଉତିଶା

( ପୋଥିପାଠ:— ନାଥଦାସଙ୍କ ଛଳଶ୍ଳେଷଯମକାନୁ ଚଉତିଶା )

ଲୋକନାଥ ଦାସ

[ ଅଳଂକାରିକ କାବ୍ୟ ରଚନା କ୍ଷେତ୍ରରେ କବି ଲୋକନାଥ ଦାସ ସିଦ୍ଧହସ୍ତ । ପିତା ଜଗନ୍ନାଥ ବିଦ୍ୟାଧର ମହାପାତ୍ର ଖୋରଧା ରାଜା ଦିବ୍ୟସିଂହ ଦେବ ( ଖ୍ରୀ. ୧୬୯୦—୧୭୧୮ )ଙ୍କର ବନ୍ଧୁ ତଥା ଜଣେ ପଦସ୍ଥ କର୍ମଚାରୀ ଥିଲେ । କବିଙ୍କ ଜନ୍ମ ଖ୍ରୀ. ୧୬୬୫ ନିକଟରେ । ପିତାଙ୍କ ଜୀବିତାବସ୍ଥାରେ କବି 'ଲୋକନାଥ ଦାସ' ନାମରେ ବୃନ୍ଦାବନ ବିହାର, ସର୍ବାଙ୍ଗ ସୁନ୍ଦରୀ, ଚିତ୍ରକଳା, ପଦ୍ମମାଳା ଓ ଚିତ୍ରୋତ୍ପଳା ନାମକ କାବ୍ୟମାନ ରଚନା କରିଥିଲେ । ପିତାଙ୍କ ମୃତ୍ୟୁପରେ କବି ଜ୍ୟେଷ୍ଠପୁତ୍ରଭାବେ ବିଦ୍ୟାଧର ମହାପାତ୍ର ପଦବୀ ଲାଭ କରିଥିଲେ । ଏହା ପ୍ରାୟ ଖ୍ରୀ. ୧୭୦୦ର କଥା । ଏହାପରେ ସେ ନୀଳାଦ୍ରି ମହୋତ୍ସବ, ରସକଳା ଓ ପଦ୍ମାବତୀ ପରିଣୟ ନାମକ କାବ୍ୟମାନ ଲେଖିଥିଲେ । ଶବ୍ଦାଳଙ୍କାରମୟ କ୍ଲିଷ୍ଟତା ତଥା ଶୃଙ୍ଗାରରସାଶ୍ରିତ ଅଭବ୍ୟତ୍ୱ ସତ୍ତ୍ୱେ ଲୋକନାଥ ଜଣେ କଳ୍ପନାବିଳାସୀ କବି ଭାବେ ପ୍ରତିଷ୍ଠା ଲାଭ କରିଛନ୍ତି । ନିମ୍ନ ଚଉତିଶାଟିକୁ ଛାଡ଼ିଲେ 'ବା ଚଉତିଶା' ନାମକ କବିଙ୍କର ଅନ୍ୟ ଏକ ଚଉତିଶା ମଧ୍ୟ ମିଳୁଛି । ]

( ରାଗ—ମେଳାପକାମୋଦୀ )

କୃଶାଙ୍ଗୀ କମଳଜ- ମୋହିନୀ କମଳଜ-
ନେତ୍ର ବହ୍ନୀନେ କୁଞ୍ଜବନେ,
କହନ୍ତି ସୁଧାକର- ହାସିନୀ ସୁଧାକର-
ମୁଖୀ ମାରଦ ଦରଶନେ, ହେ,
୫ ଜଳଧର, କଜ୍ଜଳ ଯୋଡ଼ି ବେଣୀ କର,
କପାଂ ପୋନିବ ଆମ୍ରଗୀର,
କର୍ପୂର ତନୁ ନାଶ କରିବାର ଉଚିତ
କାଳିକା ନାମରୁ ଭ୍ରମର ହେ ॥ ୧ ॥

କ୍ଷୀଣାଙ୍ଗୀଗଣ ପତ୍ତି ବସ୍ତ୍ରାନେ ଗଣପତ୍ତି-
୧୦ ପିତା-ପର-ଶଯ୍ୟରେ ହଳି,
ଖେଦରେ ପୟୋଧରେ କରନ୍ତି ପୟୋଧରେ
ନୟନୁ ଅଶ୍ରୁ-ଜଳ ଢ଼ାଳି ହେ,

ଜଳଧର, ଖଣ୍ଡୁଛି ଯାହା ଆମ୍ଭ ପ୍ରାଣ,
କ୍ଷୀରଦ ସାବଧାନେ ଶୁଣ,
୧୫ ଖେଦେ କହୁଛ ଯନ୍ତୁ ଧାରାଧର ନାମରୁ
ପର୍ଜ୍ଜଣ ନେବାର ତୋ ଗୁଣ ॥ ୨ ॥

ଗୋକୁଳ ଭ୍ରମକର ବସ୍ତ୍ରାନେ ଭ୍ରମଂକର
ଚନ୍ଦନ ଅନଳ ଯେସନ,
ଗରଳ ବଧୂଜନୁ ନ ଦେଖି ବନ୍ଧୁ-ଜନୁ
୨୦ ବନ୍ଧୁ ବନ୍ଧୁର ସୁବଦନ ହେ,

ଜଳଧର, ଗୋବନ୍ଦ ସଙ୍ଗତେ ଆମ୍ଭର,
ଗରବ ଗଲା ଦେଶାନ୍ତର,
ଗାଢ଼େ ମନମଥନ କରିବାର ବଧାନ
ଶମ୍ବରଦ ନାମରୁ ତୋର ହେ ॥ ୩ ॥

୨୫ ଘନ-ଜଘନା ଘନ- କୁନ୍ତଳା ଘନାଘନ
ନାଦ ଶ୍ରବଣେ ହାରି ଜ୍ଞାନ,
ଘଟଣା ଘନରସ ସ୍ମରି ଘନ ରସ-
ଧରକୁ ବୋଲନ୍ତି ବଚନ ହେ,

ଜଳଧର, ଘେନାଇଂ କହିଲେ ଆମ୍ଭର,
୩୦ ଘେନୁ ତ ନାହଂ ଜଳଧର,
ଘେନ କହୁଛୁ ଯନ୍ତୁ ତୋ କାଳ ସରୂପରୁ
ଯୁଗତ ପରଣ ନେବାର ହେ ॥ ୪ ॥

---

୧୨. ଅଶ୍ରୁ—ଅଶ୍ରୁ । ୨୫. ଘନ-ଜଘନା—ଘନଜଘନାଘନା ।

ନାହିଂ ଦୋଷ ନକର କଂପାଇ ସନ୍ଧି କର-
ଷଟ୍ଟୁ ତେଜକଲେ ନାରୀପୂଣ,
୩୫ ନପାଇ ମଧୁପର ଅଧର ମଧୁମର
ରସ ଯାଉଛି ଆମ୍ଭ ପ୍ରାଣ ହେ,

ଜଳଧର, ନର୍ଦୋଷେ କୁସୁମସାୟକ,
ନେଉଛି ଆମ୍ଭର ବଟବକ,
ନାରୀମାନଙ୍କ ଘରୁ ଖଚର ସକାଶରୁ
୪୦ ଯାଚନା ନୋହଇ ଅଧିକ ହେ ॥ ୫ ॥

ଚନ୍ଦନ ଚଣ୍ଡକର ସଦନ ଚଣ୍ଡକର
ଚନ୍ଦ୍ର ବଦନ କୃଷ୍ଣ ହନୁ,
ବୃନ୍ଦେ ଅତନୁ ତନୁ କରୁଛି ତନୁ ତନୁ
ପ୍ରଚଣ୍ଡକର ଦନୁ ଦନୁ ହେ,
୪୫ ଜଳଧର ଚନ୍ଦ୍ରାମଣିକ ଆଶ୍ରେ କର,
ଗୃନ୍ଦେ ଜୀବ ନେବାର ସେ କାଳେ ଉସଧର-
ଠାରେ ତ ଆନ ନ ବସ୍ତୁର ହେ ॥ ୬ ॥

କ୍ଷେମେ ସୁଦରଶନ- ଧରଙ୍କ ଦରଶନ
୫୦ ହନା ତୋ ନଘୋର ହପଦ,
କ୍ଷିତିରେ ପୁନର୍ଭବ ଲେଖନ୍ତେ ପୁନର୍ଭବ
ମୋକ୍ଷମା ବୋଲନ୍ତ ଜଳଦରେ,

ଜଳଧର, ଗୁରୁ ଅପ୍ରାଧ ଆମ୍ଭ ବାରେ,
କ୍ଷରଦ ବସ୍ତୁର ମନରେ,
୫୫ ଗୁଣ୍ଡୁ କୁ ଘନ ରସ- ଧର ଯା ଘନ ଘୋଷ
ଏ କ ଉଚିତ ପଦ୍ମମାରେ ହେ ॥ ୭ ॥

---

୫୪. କ୍ଷରଦ—କ୍ଷୀରେଦ ।

ଜଗତ ଜୀବନଦ ଏ ତୋର ଜୀବନଦ
କୃଷ୍ଣ ହୁଅନ୍ତେ ପାଶୁ ଦୂର,
ଜଗତେ ଅପଘନ ଯାହାଙ୍କୁ ଅପଘନ
୬୦ ତହୁଙ୍କୁ ହୃଦୟୁ ଆନ୍ତର ଦେ,

ଜଳଧର, ଯଶୋଦାନନ୍ଦନ ବହୁନେ,
ଜୀବନ ଯାଉଛି ମଦନେ,
ଜାଣେନ୍ତ ନାହିଂ ପର- ଜନ ବେଦନାଭର
ହେଣୁ ଚଞ୍ଚଳାବନ୍ତ ଜନେ ॥ । ॥

୬୫ ଝୁମଟେ କେଶୀପର ବନ୍ଧୁ ସୁକେଶୀ ପର-
ଭୂତ ବଟମ୍ବ ଶୋକ 'ବନ୍ତ୍ର,
ଝୀନ ଝପ କମଳ ନୟୂମ [ସ]କମଳ
ଘନକୁ ଏମନ୍ତ ବୋଲର ରେ,

ଜଳଧର, ଝସବକତନର ବେଦନା,
୭୦ ଝଗଡ଼େ ପଢ଼ ହେଲୁ ବଣା,
ଝୁରି କହୁଁକୁ ଯାନ୍ତ ଆପଦ ସକାଶରୁ
ଅଧିକ ନୋହଇ ଯାତନା ॥ ୯ ॥

ନରେଖି ଘନ ଘନ- ଜଘମ୍ବ ଘନଦନ
ନଶ୍ୱାସ ପକାଇ ଜର୍ଦ୍ଧ୍ୱକୁ,
୭୫ ନ ଦେଖି ଚନ୍ଦ୍ରହାସ ଅତନୁ ଚନ୍ଦ୍ରହାସ
ପ୍ରାୟେ ମଣିଲେ ବିଦ୍ୟୁତକୁ ରେ,

ବିଦ୍ୟୁଲ୍ଲତା, ନନ୍ଦନନ୍ଦନେ କର ଆଶ,
ନାଶ ଯାଉଛୁ ନାସ୍ତି ବଂଶ,
ନାହିଂ ଆନ୍ତଙ୍କ ହିଂସା କଲେ ରୁଚିର ବେଶ
୮୦ ଚଞ୍ଚଳା ନାମରୁ ତା ଦୋଷ ॥ ୧୦ ॥

ଟିକାକେ ନୀଳକଣ୍ଠ- ମୋହିମ୍ବ ନୀଳକଣ୍ଠ
ଧ୍ୱନି ଶ୍ରବଣେ ଜ୍ଞାନ ହାର,

ଝାଁଣ୍ଟୁ ବନପ୍ରିୟ- ଘୃଷିଣ ବନପ୍ରିୟ
ବୋଲି ଡାକନ୍ତି ଉଚ୍ଚ କରରେ,

୮୫ ମାଳକଣ୍ଠ, ଝାଣେ ଦେଇ ଅଧର ରସ,
ଝିକାକେ କରିଗଲେ ନାଶ,
ଝାଣେ କାମ ନଃଶିକ ଏକଥା କାଂଷା ହେବ
ମାଳକଣ୍ଠର କଣ୍ଟ ଦୋଷ ॥ ୧୧ ॥

ଠାକୁର ନବର ତ ଚିନ୍ତ ଅନବରତ
୯୦ ନୟନୁ ବହେ ଅଶ୍ରୁ ବାରି,
ଠିକ ସାରସ ଧର ସୁମଣି ରସ ଧର
ଦଂଶିଲ ପ୍ରାପ୍ତେ ହୋଇ ନାଶ ରେ,

ମାଳକଣ୍ଠ, ଠୁଳ କର ଦୁଃଖସାଗର,
ଠାକୁର ଦେଲେ ଆମ୍ଭ ଶିର,
୯୫ ଠିକେ ତୋର ବଦନ କରିବାର ବଧାନ
ଶିଖୀ ନାମରୁ ଧର୍ମ ତୋର ॥ ୧୨ ॥

ଡରେଣ କୁବଳୟ- ନୟନ କୁବଳୟ
ମଦନ କାବ ସ୍ଥାପ୍ୟେ ମଣି,
ଡାଳମ୍ବଦନ୍ତୀ ବର- ବର୍ଣ୍ଣିଲା ଦନ୍ତୀକର-
୧୦୦ ଚଣ୍ଡି କାମକୁ କହେ ବାଣୀ ହେ,

ପଞ୍ଚଶର, ତୋକାପ୍ରତିମା କୃଷ୍ଣ ତନୁ,
ଡହୁଛି ଅତନୁ କୃଶାନୁ,
ଡରନ୍ତି ତିନପୁର ଜନମାନେ ତୋହର
ଏ ମଧୁଗୁଣ ପୁଷ୍ପଧନୁ ॥ ୧୩ ॥

୧୦୫ ଡ଼ୁଳ ମେଦନା ପରେ ପ୍ରିୟ ବୃନ୍ଦନା ପରେ
କଲେ ସୁରତି ସୁମରଣ,

---

୯୬. ଶିଖୀ—ଶଶି ।

ତାଳ ଅଧୀରେକ୍ଷଣ　　　　ବୋଲନ୍ତି ଧୀରେ କ୍ଷଣ
ଅନ୍ତରେ ମଦନକୁ ପୁଣ ହେ,

ପଞ୍ଚଶର, ତାଳେ ତୁ ନକର ବଗୁର,
୧୧୦　ତାଳୁଛି ବଂଶି ସାଗରି,
ତାଳେ ହେ ଅମଙ୍ଗଳ　　　　କରିବା କଥା ମୂଳ
ଶିକ୍ଷିବୁ କାହିଁରୁ ତୋର ॥ ୧୪ ॥

ଅତନୁ ବଶ୍ୟ ମତ-　　　　ମୋହିମା କୁସୁମଙ୍ଗ-
ମଣ୍ତିମା ଅତ ଆରମ୍ଭରେ,
୧୧୫　ଅନଙ୍ଗ କରପଦ　　　　ହେତୁରେ କରପଦ
ଯୋଡ଼ି କହନ୍ତି କେତକୀରେ ରେ,

କେତକ ତୁ, ଅଶେଷ ଭ୍ରମୁନି ନ ଘେନ,
ଅବଶ୍ୟ ନାଶୁ ବିଯୋଗିମା,
ଏବେ ପଞ୍ଚାଣ ନାଶ　　　　କରିବୁଛୁ ଅବଶ୍ୟ
୧୨୦　ଯେଣୁ କଣ୍ଟକ ଅଛୁ ଘେନ ॥ ୧୫ ॥

ତାମରସ ଚଞ୍ଚଳ-　　　　ନୟନା ସଚଞ୍ଚଳ
ସରସ ଶ୍ୟାମ ଘନ ଦେଖି,
ତରୁଣ କୃଷ୍ଣସାର-　　　　ନୟନା କୃଷ୍ଣ ସାର
ସୁରତ ଚିନ୍ତି ହେଲେ ଦୁଃଖୀ ରେ ।

୧୨୫　ଜଳଧର, ତୋର ମିତ ଜୀବନେ କର,
ତ ଲୋକଜନେ ସୁଖଧାରୀ,
ତୁମ୍ଭର ପ୍ରମଦାଙ୍କୁ　　　　ବିନାଶ କରିବାକୁ
କାରଣ କ୍ଷଣପ୍ରଭା ସରି ॥ ୧୬ ॥

---

୧୧୩. ବଶ୍ୟ—ବଂଶୁ ।　୧୧୬. କେତକ ତୁ—କେତକେତୁ ।
୧୧୮. ଅବଶ୍ୟ - ଅବଶ ।　୧୧୯. ଅବଶ୍ୟ—ଅବଶ ।
୧୨୦. ଯେଣୁ—ଯେଣୁ ।　୧୨୮. କ୍ଷଣପ୍ରଭା—ସ୍ୱର୍ଣ୍ଣପ୍ରଭା ।

ସ୍ଥଳସାରସ ପଦ　　　　　　　　ସକଳ ରସ ପଦ

୧୩୦　　ବାଣୀ ନୋହନ୍ତେ ଶ୍ରୁତି ପୂର,

ଥିବ ଯାହା ଜୀବନ　　　　　　　　ତନ୍ତ୍ରିଂରୁ ହା ଜୀବନ-

ରୁଦ୍ରାକ୍ଷି ବୋଲି ନ ବସ୍ତ୍ରର ହେ,

ଜଳଧର, ଥରୁଛି ହୃଦୟୁ ଆମ୍ଭର,

ଥରେ ଆମ୍ଭଙ୍କୁ ରକ୍ଷାକର,

୧୩୫　　ସ୍ଥାଣୁପର ଅନଳ　　　　　　　　ନାଶିବାର ସମୀର

ବାତ ନାମରୁ ଖ୍ୟାତ ତୋର ॥ ୧୭ ॥

ଦେଖି ସକଳ ବାମ-　　　　　　　　ନେତ୍ରୀ ସକଳ ବାମ-

ଦେବ ମସ୍ତକ ଭୂମଣ୍ଡନ,

ଦର୍ପିତମଣି ରତି　　　　　　　　ଚନ୍ଦ୍ର ରମଣୀ ରତି-

୧୪୦　　ପତିରେ ହାରି ନିଜ ଜ୍ଞାନ ହେ,

କଳାକର, ଦୋଷ ତ ନାହିଁ ତୁମ୍ଭଠାରେ,

ଦହୁଛ କେଉଁ ସୂତ୍ରରେ,

ଦୁଃସହ ନାଶ ହେତ　　　　　　　　କରିବାର ଉଚିତ

ରୁଦ୍ର ଶିରୋମଣି ନାମରେ ହେ ॥ ୧୮ ॥

୧୪୫　　ଧ୍ୟାନରେ ମନ୍ମଧର-　　　　　　　　ପୂର୍ବୀଶ ମନ୍ମଧର

ଧର ନପାରେ ଧରି ଯାକୁ,

ଧନ୍ୟ ସେ ମଧୁପୂର　　　　　　　　ନାଗରୀ ମଧୁପୂର

ବଚନେ ବନ୍ଦୀ କଲେ ତାଙ୍କୁ ହେ,

କଳାକର, ଧରି କହିଲେ ତୁମ୍ଭ କର,

୧୫୦　　ଧରିବ ନାହିଁ ଶଶଧର,

ଧର୍ମ ଧ୍ୱଂସକ ଭାବ　　　　　　　　ଏ ତୁମ୍ଭର ସ୍ୱଭାବ

ଯେଣୁ ତୋ ନାମ ରକ୍ଷକର ହେ ॥ ୧୯ ॥

---

୧୩୦. ଶ୍ରୁତିପୂର—ଶ୍ରୀତିପୁର । ୧୩୭. ଖ୍ୟାତ—ଖ୍ୟାତ ।
୧୩୯. ଦର୍ପିତମଣି—ଦର୍ପିତମଣି । ୧୫୧ ଧର୍ମ—ଧର୍ମ ।
୧୫୨. ରକ୍ଷକର—ରକ୍ଷକର ।

ଅରୁଣ-ବନ୍ଧୁ ବୃଷି　　　　ତରୁଣ ବନ୍ଧୁ ବୃଷ୍ଟି
ଜବା ଅମ୍ବଷ୍ଠ କେକା ଶୁଣି,
୧୫୫　ଅଙ୍ଗନା ସନ୍ତୁଷ୍ଟି　　　　କହନ୍ତି ସନ୍ତୁଷ୍ଟି-
ଛତିକ ବୋଲନ୍ତି ତରୁଣୀ ରେ,

ମାଳକଣ୍ଠ, ଆମ୍ଭଙ୍କୁ ଯଶୋଦା କୁମର,
ଅନାଥ କରି ହେଲେ ଦୂର,
ନାହିଁ ଆମ୍ଭଙ୍କୁ ଜାଣ　　　　ଜଳେ ତ କାହୁଁ ଦୋଷ
୧୬୦　ବରନ୍ତି ନାମରୁ ଛୋଡ଼ର ରେ ॥ ୨୦ ॥

ପକ୍ଷୀଙ୍କ କଳବାଣୀ　　　　ଶୁଣି ବ୍ରଜଜ ବାଣୀ-
ହତି ନିକୁଞ୍ଜ ରତ ଗୁଣି,
ପ୍ରିୟଙ୍କୁ ପ୍ରିୟକଣ୍ଠ　　　　ବୋଲନ୍ତି ପ୍ରିୟ କର
ଭକ୍ଷଣ ବିନା ତାଙ୍କ ବାଣୀ ହେ,

୧୬୫　ପକ୍ଷୀଗଣ, ପର୍ଣ୍ଣ ପୁଷ୍ପ ପୀରତି,
ପିଣ୍ଡିକୁ ହରଇ ସେ ଖ୍ୟାତି,
ପତ୍ର ପର୍ଣ୍ଣ ନେମ　　　　ଏଣୁ ଅର୍ଥେ ଜନମ
ପତ୍ରୀକ କଲ୍ପ ପ୍ରଜାପତି ରେ ॥ ୨୧ ॥

ଫୁଲ କାନନେ ହରି-　　　　ସନ୍ନିଧାନନେ ହରି
୧୭୦　କରଣେ ବୋଲୁଛନ୍ତି ଯାହା,
ଫାଟି ନଯାଇ ଜୀବ　　　　ଯେଣୁ ନିର୍ଦ୍ଦୟୀ ଜୀବ-
ବନ୍ଧୁ ହୋଇଲେ ଚିନ୍ତ ତାହା ସେ,

ଗୋପୀମାନେ, ଫୁରୁଣା ଧାର ଚିନ୍ତାଭରେ,
ସ୍ଫୁଟେ କହନ୍ତି ମରୁତ ରେ,
୧୭୫　ସ୍ଫୁଟ ଏ ଜଗତରେ　　　　ଦୁଃସହ ଦୁଃଖ ନରେ
ଲଭନ୍ତି ବାତ ସକାଶରେ ॥ ୨୨ ॥

---

୧୬୮. କଲ୍ପ—କଳା ।

ବଧୂକୁ ବ୍ରଜରାମା — ବୋଲନ୍ତି ବ୍ରଜ ରମା-
ଭୁଜ ପାଶରେ ଶୀଘ୍ରେ ହେଉ,
ଖେଳିବ ରସେ କ୍ଷଣେ — ଏକା ଝୁରିବେ କ୍ଷଣେ
୧୮୦ ଜନ୍ମକୁ ହେଲେ ଏତେ ସବୁ ହେ,

ଶଶଧର, ବହୁତ ଦିନେ ଭଗବାନ,
କାହେ ନ ଦେଲେ ଦରଶନ,
ବୋଇଲେ ହେବ କସ — ଲଭୁଛୁ ସୁଖ ଲେଶ
ବିପତ୍ତିରେ କେବଣ ଜନ ॥ ୨୩ ॥

୧୮୫ ଭିନ୍ନ ଅଞ୍ଜନ କାନ୍ତ — ଆଶ୍ରିତଜନ କାନ୍ତ
କରି ଭୁମ୍ଭଙ୍କୁ ପାଇ କରି,
ଭଜିଲୁ ଭୟକୁଳ — ଘୁଞ୍ଚୁ ଉଭୟ କୂଳ
ଭୃତ୍ୟ ବତ୍ସଳ ନରହରି ହେ,

ଜଳଧର, ଭଗବାନଙ୍କୁ ଆଶ୍ରେ କରି,
୧୯୦ ଭାସି ଯାଉଛୁ ଗୋପନାରୀ,
ଭଜୁଛୁ ଯାହା ମୃତ୍ୟୁ — ଏଥକୁ ଏଡ଼ ହେଲୁ
ଯେଣୁ ତା ନାମ ବାଳୀଅରି ॥ ୨୪ ॥

ମହତ ଖ୍ୟାତିକୂଳ — ଲଭିଣ ଖ୍ୟାତିକୂଳ
ବୋଲନ୍ତି ଭ୍ରମରକୁ ପୁଣ,
୧୯୫ ମଦନ ଧନଞ୍ଜୟ — ଦହୁଛୁ ଧନଞ୍ଜୟ-
ସଖା ବହ୍ନିନେ ଆମ୍ଭ ପ୍ରାଣ ହେ,

ଷଟପଦ, ମହତ କୁସୁମ ସାୟକ,
ମାରୁଛୁ କୁସୁମସାୟକ,
ମୁଖର ଶିଳୀମୁଖ — ସକାଶୁ ପର ଦୁଃଖ
୨୦୦ ହୋଇବା ନୋହଇ ଅଧିକ ହେ ॥ ୨୫ ॥

---

୧୯୯. ସକାଶୁ—ସ୍ୟକାଶୁ ।

ଯଶୋଦାସୁତ ରଙ୍ଗ                    ସୁମଣ୍ଡ ସୁତରଙ୍ଗ
ସୁରଙ୍ଗ କୁରଙ୍ଗ ନୟନା,
ଯମ ସଦୃଶ ମଣି                    ଚନ୍ଦ୍ରକୁ ହାସ ମଣି
କୃଷ୍ଣ ଏନା ବୋଲନ୍ତ ବାଣୀ ହେ,

୧୦୫ ଶୀତକର, ଯୌବନ ନେଉଛୁ ମନୋଜ,
ଯୁବଣ୍ଡ ବୋଲନ୍ତ ଜଳଦ,
ଜୀବନ ଦାନେ ତବ                    କଂପା ଭୟ ହୋଇବ
ଯେଣୁ ତୋ ନାମ ଦ୍ୱିଜରାଜ ॥ ୨୬ ॥

ରସ ସାଗର ଗର-                    ଆପତ୍ତି ଗରଗର
୧୧୦ ମୋହ୍ନମା ପିକଧ୍ୱନି ଶୁଣି,
ରଜନୀକର ଦର-                    ହାର [ନକର ଦର]
ଲଭ ବୋଲନ୍ତ ତାକୁ ବାଣୀ ହେ,

ଚୁତକର, ରମଣୀଜନଙ୍କ ଜୀବତ
ରଖିବୁ ନାହିଂ ପରଭୃତ
୧୧୫ ରାଜୀବଜ ଭିଆଣ                    ସକଳ ଜନ ପ୍ରାଣ
ନେବାକୁ ଦିବାକର ସୁତ ହେ ॥ ୨୭ ॥

ଲାବଣ୍ୟସିନ୍ଧୁ ରସ                    ଲଭଣ ସିନ୍ଧୁର ସ-
ମସ୍ତ ରାଜହଂସ ଗମନା,
ଲୋକନେ କଳାକର                    ବୋଲେ ବିକଳାକର
୧୨୦ ଯାଚୁ ତ ବରଜ ତରୁଣୀ କର,

ଶୀତକର, ଲଲାମ ଶରୀରକୁ କାମ,
ଲକ୍ଷ କର କରଣ ତମ,
ଲକ୍ଷେ ରୂପେ ଭିଆଣ                    ବଧୂର ନାରୀଗଣ
ନାଶ କରିବାର ସ୍ୱଧର୍ମ ॥ ୨୮ ॥

---

୧୦୯. ଗରଅପତ୍ତି—ଘରଅପତ୍ତି; ଗରଗର—ଗରଧର । ୧୧୩. ଚୁତକର—ଚୁତକର । ୧୧୪. ପରଭୃତ—ପରଭୃତ । ୧୨୪. ସ୍ୱଧର୍ମ—ସ୍ୱଧର୍ମ ।

୨୨୫ ବଳାସୀ ଗୁରୁତର ରସ ବସ୍ତୁରୁ ତର-
ଳାୟିତ ନେତ୍ରା ଶୋକଭରେ,
ବଦନ ପ୍ରତିବିମ୍ବ ଚନ୍ଦ୍ରକୁ ପ୍ରତି ବିମ୍ବ-
ଅଧର୍ଣ୍ଣ ବୋଲନ୍ତି କାତରେ,

ଶୀତକର, ବ୍ରହ୍ମାଣ୍ଡ ଈଶ୍ୱର ମୁଖର,
୨୩୦ ବିନାଶ କଲେ ଯେବେ ନାଗ୍ରି,
ବୋଲିବା ଧର୍ମ ନାଶ କରିବା କଥା ଦୋଷ
ନଶାଚରକୁ କ ବସ୍ତୁର ହେ ॥ ୨୯ ॥

ଶ୍ୟାମା ବିଷପ୍ରସୂନ ନୟୂନ୍ମ ସପ୍ରେସ ନ
ତରୁକୁ ବୋଲନ୍ତି ନିଷ୍ଠୁର,
୨୩୫ ଶୀଘ୍ରେ ସ୍ୱର୍ଗୀବପତି ନେଉଛୁ ଜୀବ ପତି
ବିନା ରତିପ୍ରଭୁ ଆମ୍ଭର ହେ,

ପୁଷ୍ପତରୁ, ସକଳ ଦ୍ୱିଜ ରାଜପୁରେ,
ସୁରତ ଦେଉ ମଧୁପରେ,
ସବୁକାଳ ଭ୍ରମର ପ୍ରଫୁଲ୍ଲ ହୋଇବାର
୨୪୦ ଉଚିତ ବିଟପୀ ନାମରେ ॥ ୩୦ ॥

ଶ୍ରବଣେ କଳରବ ଭ୍ରମର, କଳରବ
ବୋଲନ୍ତି ପେଷିଚ୍ଛୁ ଯତନେ,
ଶମନ ପ୍ରତିଭଟ ସ୍ମର ସଂପ୍ରତି ଭଟ-
ମାନଙ୍କୁ ବିଯୋଗୀ ନାଶନେ ରେ,

୨୪୫ ରତିପତି, ଶ୍ରୀହରିସୁତ ପଞ୍ଚଶର,
ସୁମୁଖୀ ରତି ପ୍ରାଣେଶ୍ୱର,
ଫହର ନାଗରପ୍ରୁ ଯାହା ମାରୁ ନିଶ୍ଚୟ,
ଏ ମଧୁପ୍ରିୟ ଗୁଣ ଚୋର ରେ ॥ ୩୧ ॥

---

୨୨୬. ଲାୟିତ—ଲାମ୍ବିତ । ୨୩୬. ବିନା ରତିପ୍ରଭୁ—ରତିପ୍ରଭୁବିନା ।
୨୪୩. ସପ୍ରତି—ସମ୍ପ୍ରତି । ୨୪୪, ନାଶନେ—ନାଶନ ।

ସୁରତ ବିଶାରଦ ସ୍ମର ସଦୃଶାଙ୍ଗ
୧୫୦ ଶଶିବଦନ ପୀତବାସ,
ସନ୍ତାପଭୂ ବନରେ ପକାଇ ଭୁବନରେ
ଆମ୍ଭଙ୍କୁ ପାଇବ କି ଯଶ ହେ,

ଜଳଧର, ସକଳରକ୍ଷଣ ବୋଲିଣ,
ସମର୍ପି ହେଲୁ ନାରୀଗଣ,
୧୫୫ ସତ୍ୟ ସଙ୍ଗ ପ୍ରକାରେ ଚକ୍ରଧର ନାମରେ
କିଂପା ରଖିବ ଆମ୍ଭ ପ୍ରାଣ ॥ ୩୨ ॥

ହରିଙ୍କି ବାମଅଙ୍କ କହିବୁ ବାମ ଅଙ୍କ
ଉପରେ ବସାଇ ଯାହାକୁ,
ହରିତ ଶ୍ୟାମପୁର ଦୁଃସହ ଶ୍ୟାମପୁର
୧୬୦ ଯାତନା ଦେଉଛୁ ଆମ୍ଭଙ୍କୁ ହେ,

ଶୀତକର, ହରିଚରଣ ଆଶ୍ରେ କର,
ହତ ହୋଉଛୁ ଏବେ ନାରୀ,
ହତ କରିବ ପ୍ରାଣ ଏ କୁମ୍ଭର ନିର୍ଯାଣ
ଯେଣୁ ତୋ ନାମ ଜୀବ ଅରି ॥ ୩୩ ॥

୧୬୫ କ୍ଷୀଣାଙ୍ଗୀ ସୁକଳାପୀ ବୋଲନ୍ତି ସୁକଳାପୀ
କଳାପ କୁନ୍ତଳା ଚନ୍ଦ୍ରକୁ
ସୂକ୍ଷ୍ମ ଭ୍ରୁ ସଲକ୍ଷଣ ନ୍ୟାୟରୁ ସଲକ୍ଷଣ
ଶ୍ରୀକୃଷ୍ଣ ସୁନ୍ଦର ମୁଖକୁ ହେ,

ଶୀତକର, କ୍ଷିତିମଣ୍ଡଳେ ବରଧର,
୧୭୦ କ୍ଷେମଦ ନୋହିଲ କାହାର,
କ୍ଷୀରୋଦ ସୁତା ନାଥ ଚରଣେ ଲୋକନାଥ
ଦାସ ମାନସ ମଧୁକର ହେ ॥ ୩୪ ॥

ଟୀକା :—

[ ଶ୍ଳେଷ ଓ ଛନ୍ଦର ପ୍ରୟୋଗ ସହ ପ୍ରତି ପଦରେ ଯମକ ରକ୍ଷା କରିବା ଲାଗି ଚେଷ୍ଟା କରାଯାଇଥିବା ହେତୁ ଭାଷା ଅନେକ ସ୍ଥଳେ କୃତ୍ରିମ ହୋଇ ପଡ଼ିଅଛି । ସମ୍ପୂର୍ଣ୍ଣ ଟୀକା ପ୍ରକାଶ କରିବାକୁ ଗଲେ ଟୀକା ମୂଳକୁ ଡେଇଁ ଚାଲି ପଡ଼ିବ । ନିମ୍ନରେ କେତେକ ପ୍ରଧାନ ଶବ୍ଦର ଅର୍ଥ ଦିଆଗଲା ]

୧. କମଳଜ—ପଦ୍ମ; କମଳଜ ମୋହିନୀ—ପଦ୍ମିନୀ; ସୁଧାକର—ଅମୃତମୟ; ସୁଧାକର—ଚନ୍ଦ୍ର; କର୍ବୁର—ସ୍ୱର୍ଣ୍ଣ, ରାକ୍ଷସ; କାଳିକା — ମେଘ, ଚଣ୍ଡିକା ।

୨. ପୟୋଧର—ମେଘ, ସ୍ତନ; ଭୀରୁ—ନାରୀ, ଭୀତ; ଧାରାଧର—ମେଘ, ଖଣ୍ଡା ।

୩. ହିମକର—ଚନ୍ଦ୍ର, କର୍ପୂର; ବଧୂବନ୍ଧୁ—ଚନ୍ଦ୍ରକିରଣ; ବଧୂ—ବଧୂ; ଭନ୍ତୁ—ପ୍ରଭୁ; ମଥନ—ବିନାଶ; ଶମ୍ବରଦ—ମେଘ, ବଜ୍ରଦନ୍ତ ।

୪. ଘନାଘନ—ବର୍ଷାମେଘ; ଘନସ୍ନେହ—ଗାଢ଼ ପ୍ରେମଭାବ; ଜଳଧର—ମେଘ; କାଳ—କଳା, ମୃତ୍ୟୁ; ଯୁଗତ—ଯୁକ୍ତ ।

୫. ମଧୁପୂର—ମଧୁସୂଦନ; ମଧୁପ—ଭ୍ରମର; ଜଳଦ—ମେଘ, ରାକ୍ଷସ ।

୬. ଚଣ୍ଡକର—ଉଷ୍ଣତାକାରୀ, ଉଗ୍ରତାକାରକ; ତନୁତନୁ—କୃଶରୁ କୃଶତର; ରସଧର—ଜଳଧର, ବିଷଧର ।

୭. ପୁନର୍ଭବ—ନଖ, ପୁନର୍ବାର; ଷରଦ—ଜଳଦ, ନାଗକାରୀ; ପଦ୍ମିନୀ—ପଦ୍ମିନୀ, ଶ୍ରେଷ୍ଠନାରୀ ।

୮. ଅଟଘନ—ଶରତକାଳ, ଦେହ; ଚଞ୍ଚଳାବନ୍ତ—ବିଦ୍ୟୁତଯୁକ୍ତ, ଧନଶାଳୀ ।

୯. ଝମଟେ—ଶୀଘ୍ରେ; କେଶୀପର—ଶ୍ରୀକୃଷ୍ଣ; ଛନ୍ନ—ବନା; ଝୀନ—କ୍ଷୀଣ; ସକମଳ—ସଜଳ; ଝଷକେତନ—କନ୍ଦର୍ପ; ଝଗଡ଼େ—ଜଞ୍ଜାଳରେ ।

୧୦. ଚନ୍ଦ୍ରହାସ—ଚନ୍ଦ୍ରର ଜ୍ୟୋତି, ଖଡ୍ଗ; ଚଞ୍ଚଳା—ବିଦ୍ୟୁତ୍, ବେଶ୍ୟା ।

୧୧. ନୀଳକଣ୍ଠ ମୋହିନୀ—ଶିବମୋହିନୀ ଅର୍ଥାତ ଅତ୍ୟନ୍ତ ମନୋରମା । ନୀଳକଣ୍ଠ—ମୟୂର, ଶିବ; ବନପ୍ରିୟ—କୋକିଳ, ଅରଣ୍ୟ ପ୍ରିୟ ।

୧୨. ସାରସଧର—ପଦ୍ମପାଣି ବିଷ୍ଣୁ, ଚନ୍ଦ୍ରଚୂଡ଼ ଶିବ; ରସଧର—ସର୍ପ; ଶିଖୀ—ମୟୂର, ଅଗ୍ନି ।

୧୩. କୁବଳୟ—ପଦ୍ମ, ଧରାମଣ୍ଡଳ; ଦନ୍ତୀବର—ହାତୀ; ଡହୁଛ—ଦହନ କରୁଛ (ଦହୁଛ); କୃଶାନୁ—ଅଗ୍ନି ।

୧୪. ଅଧୀରେକ୍ଷଣ—ଚଞ୍ଚଳ ନୟନ; ଶିବରିପୁ—ମଦନ, ମଙ୍ଗଳ ବିରୋଧୀ ।

୧୫. ଆରତ—ପୀଡ଼ା, ଆର୍ତ୍ତ ଶବ୍ଦଜ; କରପତ୍ର—କରତ, କରପଲ୍ଲବ; କେତକ—କେତକୀ ଫୁଲ; ଦୟିନ—ବନୟ; ବିଯୋଗିନୀ—ବିରହିଣୀ ।

୧୬. ତାମରସ—ସାରସପକ୍ଷୀ; କୃଷ୍ଣସାର—ମୃଗ ବିଶେଷ; ଜୀବନେବର—ଜଳଦ୍ୱାର ।

୧୭. ଜୀବନରୁହାକ୍ଷି—ପଦ୍ମନେତ୍ରା; ସ୍ଥାଣୁଅରି—ମଦନ; ବାତ—ପବନ, ଜ୍ୱର ।

୧୮. ବାମନେତ୍ରୀ—ସୁନ୍ଦରୀ ସ୍ତ୍ରୀ; ଦୟିତ—ସ୍ୱାମୀ; ସକଳ—କଳାଯୁକ୍ତ; ରୁଦ୍ରଶିରୋମଣି—ଶିବଙ୍କ ଶିରୋଭୂଷଣ, ପ୍ରଚଣ୍ଡରାଗୀ ।

୧୯. ମହୀଧରମୂର୍ଦ୍ଧୀଶ—ପାର୍ବତୀପତି; ମହୀଧର—ବାସୁକୀ; ଧର—କୂର୍ମରାଜ; ଋକ୍ଷବର—ନକ୍ଷତ୍ରେଶ ଚନ୍ଦ୍ର, ଭାଲୁ ।

୨୦. ଅରୁଣବନ୍ଧୁ—ପଦ୍ମ; ତରୁଣ—ଲଳିତ; ବନ୍ଧୁରାକ୍ଷି—କମନୀୟ ଅକ୍ଷି; ସରସ୍ୱତୀ—ବଚନ, ବାଗ୍‌ଦେବୀ; ବରହୀ—ମୟୂର (ବର୍ହୀ), ଅଗ୍ନି (ବହ୍ନି) ।

୨୧. ଝଷ ଶୀଘ୍ର, ଝଷିତ ଚଞ୍ଚଳ; ନେମ—ନେବ; ପତ୍ରୀ—ପକ୍ଷୀ, ବାଣ ।

୨୨. ଦ୍ୱନ୍ଦ—ପଦ୍ମ, ଚନ୍ଦ୍ର; ଫୁରୁଣା—ଆନନ୍ଦ; ବାତ—ପବନ, ମୂର୍ଚ୍ଛାରୋଗ ।

୨୩. ଭ୍ରଜ—ଯାଅ; ଦେହର—ଦେଖି; କ୍ଷଣେ—ଉତ୍ସବରେ, କ୍ଷଣମାତ୍ର; ବିପତ୍ତିରେ—ବିପଦରେ, ପଦ୍ମବନ (ବିପଦ୍ମରେ) ।

୨୪. ଛନ୍ନ—ମର୍ଦ୍ଦିତ; କାନ୍ତ—କାନ୍ତିବିଶିଷ୍ଟ, ପତି; ଭସ୍ମକୂଳ—ଭସ୍ମଗର୍ଭ; ଉଭସ୍ମକୂଳ—ପିତାକୁଳ ଓ ପତିକୁଳ; ଅଗ୍ରେ—ଅଗ୍ରମ୍ଭ; ବାଳୀଅରୁ—ବାନରରାଜ ବାଳୀର ଶତ୍ରୁ, ନାରୀର ଶତ୍ରୁ ।

୨୫. ଝିଲ୍ଲୀକୂଳ—ଭସ୍ମମାନ, ସ୍ୱାମୀମାନେ; ଧନଞ୍ଜୟ—ଅଗ୍ନି, ଅର୍ଜ୍ଜୁନ ।

[ ଶ୍ରୀକୃଷ୍ଣଙ୍କୁ ଏଠାରେ ଧନଞ୍ଜୟ ସଖା କହିବା ଦ୍ୱାରା ପ୍ରସଙ୍ଗର ଆନୁପୂର୍ବିକତାରେ ବ୍ୟାଘାତ ଘଟୁଛି ]

ଶିଳୀମୁଖ—ଭ୍ରମର, ବାଣ ।

୨୬. ଦ୍ୱିଜରାଜ—ଚନ୍ଦ୍ର, ବ୍ରାହ୍ମଣଶ୍ରେଷ୍ଠ ଯେ ଦାନ ପାଇବାକୁ ଯୋଗ୍ୟ ।

୨୭. ଗରଅପତ୍ତି—ଗରଳନାଶକ; ଗଦଗଦ—ଅସକ୍ତ; ରଜନୀଚର—ଚନ୍ଦ୍ର; ଦରହାର—ଭସ୍ମନାଶକ; ଜୀବିତ—ଜୀବନ; ଗ୍ଲାନିଦଜ—ବ୍ରହ୍ମା; ଦ୍ୱିବାକର ସୁତ—କାକପୋଷ କୋକିଳ, ଯମ ।

୨୮. ସିନ୍ଦୁର—ଦାତା; ଲେଖକନେ—ଦେଖିକରି; ବିକଳାକର—ବୈକଲ୍ୟ ଅର୍ଥରେ ବିକଳର ଆଧାର ।

୩୦. ଶ୍ୟାମା—ଯୁବତୀ; ଜଳପ୍ରସୂନ—ପଦ୍ମ; ରଜୀବ ପତି—କନ୍ଦର୍ପଙ୍କ ନାମ ମୀନକେତନକୁ କବି ମୀନବାହନ ଅର୍ଥରେ ପ୍ରୟୋଗ କରିଛନ୍ତି; ରତିପ୍ରଭୁ—କନ୍ଦର୍ପ । ସକଳ ଦ୍ୱିଜରାଜ ପୁରେ—କଳାଯୁକ୍ତ ପୂର୍ଣ୍ଣଚନ୍ଦ୍ର କାଳରେ । ମଧୁପରେ—ଭ୍ରମରକୁ, ମଧୁସୂଦନ କୃଷ୍ଣଙ୍କୁ । ପ୍ରଫୁଲ୍ଲ—ଫୁଲମଣ୍ଡିତ, ଆନନ୍ଦିତ; ବିଟପୀ—ବୃକ୍ଷ, ବେଶ୍ୟା ।

୩୧. କଳରବ—କୋକିଳ, କଳଧ୍ୱନି; ପ୍ରତିଭଟ—ଯୋଦ୍ଧା । ଭଟ—ଭଟ, ବୀର; ବିଯୋଗୀ—ବିରହୀ । ମଧୁପ୍ରିୟ—ମଧୁ ବା ମଦ୍ୟପ୍ରିୟ, ବସନ୍ତବନ୍ଧୁ ମଦନ ।

୩୨. ବିଶାରଦ—ନିପୁଣ; ସୁବିଶାରଦ—ବିଶାରଦ ଅର୍ଥ; ସନ୍ତାପକ—ଦୁଃଖଦାୟକ; ଚକ୍ରଧର—କୃଷ୍ଣ, କୁଟିଳବୁଦ୍ଧି ବିଶିଷ୍ଟ ।

୩୩. ଶ୍ୟାମଅଙ୍କ—ମୃଗାଙ୍କ ଚନ୍ଦ୍ର, ରମଣୀୟ କୋଳ । ହରିତ ଶ୍ୟାମପୁର—ସବୁଜ ରଙ୍ଗର ଭୟାନକ ପୁଷ୍ପ । ଶ୍ୟାମଚୂର—ଭଗ୍ନପୃଷ୍ଠ [ ଅଥବା ଶ୍ୟାମଶାସନ ଯମ ଅର୍ଥରେ ଭୁଲ୍ ପ୍ରୟୋଗ ] ନିର୍ବାଣ—ସିଦ୍ଧି ଅର୍ଥରେ ଅପପ୍ରୟୋଗ । ଜୀବଅରି—ବୃହସ୍ପତିଙ୍କ ଶତ୍ରୁ, ପ୍ରାଣୀର ଶତ୍ରୁ ।

୩୪. [ ଏହି ପଦର ପ୍ରଥମ ଦୁଇପଦର ଅର୍ଥ ଅସ୍ପଷ୍ଟ ] ଦରଧର—ଶଙ୍ଖଧାରୀ କୃଷ୍ଣ; କ୍ଷେମଦ—କଲ୍ୟାଣକର । କ୍ଷୀରୋଦସୁତା ନାଥ—ଶ୍ରୀପତି ।



ସଂ: ୧୨

# ଜାନକୀ ସ୍ମରଣ ଚଉତିଶା

କୃଷ୍ଣ ଦାସ

[ ପ୍ରାଚୀନ ଓଡ଼ିଆ ସାହିତ୍ୟର ଅଗଣନ କବିଗଣଙ୍କ ମଧ୍ୟରେ ପଦଲାଳିତ୍ୟ ଲାଗି କୃଷ୍ଣ ଦାସେ ସହଜେ ବାରି ହୋଇ ଯାଆନ୍ତି । ତାଙ୍କର ଅକ୍ଷୟ କୀର୍ତ୍ତି 'ରସ କଲ୍ଲୋଳ' ମଧୁର ରସର ରତ୍ନାକର ରୂପେ ଖ୍ୟାତି ପାଇଛି କିନ୍ତୁ ତାଙ୍କର ଚଉତିଶା ଗୁଡ଼ିକ ଅଧିକତର ସ୍ୱାଦୁ, ଅଧିକତର ରୁଚିର । ସେ 'ରସ କଲ୍ଲୋଳ' ଛଡ଼ା ଜଗମୋହନ ଛାନ୍ଦ, ନାବକେଳି, ଅଳଂକାର ବୋଲି ଆଦି ଗ୍ରନ୍ଥ ରଚନା କରିଛନ୍ତି । ତାଙ୍କର ଯେତେ ସଂଖ୍ୟକ ଚଉତିଶା ମିଳୁଛି ତହିଁରୁ ଏହା ସ୍ଥିର କରିଯାଇପାରେ ଯେ ଚଉତିଶା ରଚନା ତାଙ୍କର ସବୁଠାରୁ ପ୍ରିୟ ଥିଲା । ଏହାଙ୍କର ଚଉତିଶାଗୁଡ଼ିକୁ ଏକତ୍ର କରିଗଲେ ତାହା ଆକାରରେ ତାଙ୍କର ଅନ୍ୟ ରଚନାକୁ ବଳି ପଡ଼ିବ— ରସଗୁମ୍ଫନ ଦୃଷ୍ଟିରୁ ମଧ୍ୟ ସେସବୁକୁ ବଳି ପଡ଼ିବ । ଏହାଙ୍କର ପ୍ରକାଶିତ ଚଉତିଶା ଗୁଡିକ ହେଲା:—(୧) ଅଭିମାନ ବା କୃପାହିତ ଜଣାଣ ବା ଜଣାଣ ଚଉତିଶା, (୨) କମଳାକାନ୍ତ, (୩) ଗୁଣ୍ଡିଚ୍ଚା ଭ୍ରମଣ ବା ଗୁଣ୍ଡିଚ୍ଚା ବିଜୟ ବା ଗୁଣ୍ଡିଚ୍ଚା ଉତ୍ସବ, (୪) ସ୍ନାନ ସ୍ମରଣ ବା ସ୍ନାନ ଉତ୍ସବ ବା ସ୍ନାନଯାତ୍ରା, (୫) ସ୍ୱପ୍ନାଦର୍ଶନ, (୬) ଅମୃତନିଧି, (୭) ଅନୁରାଗ ରତ୍ନାକର, (୮) ଦୃଷ୍ଟାନ୍ତ, (୯) ରାଧିକା ସ୍ମରଣ, (୧୦) ଉଦ୍ଧବ, (୧୧) ଗୋପୀ ସନ୍ଦେଶ, (୧୨) ବଇଳ, (୧୩) ବାଇକୀ, (୧୪) ନବଘନ, (୧୫) ଘନଶ୍ୟାମ, (୧୬) କଳାକର, (୧୭) ପ୍ରାଣସଖୀ, (୧୮) ଦୀନବନ୍ଧୁ, (୧୯) ଗୋପୀ ସନ୍ଦେଶ ଚଉତିଶା ଇତ୍ୟାଦି । ଏମନ୍ତ ସୁମଧୁର ରସଗର୍ଭିତ ଚଉତିଶା ଛଡ଼ା କୋଳାହଳ, କୃଷ୍ଣ ବିହାର, ରସ ବିନୋଦ, କୃଷ୍ଣକାମୋଦ, ନୟନ ପ୍ରଶଂସା, ଯମକ ରତ୍ନାକର ଆଦି ଅନେକ ମନୋହର ରଚନା ମୁଁ ପାଇଛି । ବିଶ୍ୱାସ ହେଉଛି କୃଷ୍ଣ ଦାସଙ୍କର ଅନ୍ୟାନ୍ୟ ଚଉତିଶା ଖୋଜିଲେ ମିଳିବ । କୃଷ୍ଣଦାସ ଉପେନ୍ଦ୍ର ଭଞ୍ଜଙ୍କର ସମସାମୟିକ । ଜଣେ ଭକ୍ତ ରୂପେ ସେ ପ୍ରତିଷ୍ଠା ପାଇବା ବିଷୟ ଦାର୍ଢ୍ୟତା ଭକ୍ତିରେ ବର୍ଣ୍ଣିତ ହୋଇଛି । କୃଷ୍ଣ ଦାସ ସୌଜନ୍ୟ ପ୍ରକାଶ କରି ଅନେକଠାରେ ନିଜକୁ ଦୀନକୃଷ୍ଣ ଦାସ ବୋଲିଅଛନ୍ତି । ସେ ନିଜକୁ ଦୀନ ବୋଲି କହିଛନ୍ତି ବୋଲି ଆମେ ତାଙ୍କୁ ଦୀନ କହିବା ଅସୁନ୍ଦର କଥା । ହଣ୍ଟର ସାହେବଙ୍କ ପର୍ଯ୍ୟନ୍ତ ଏହାଙ୍କୁ କୃଷ୍ଣଦାସ କୁହାଯାଉଥିଲା । ହଣ୍ଟର ଭୁଲରେ ଦୀନକୃଷ୍ଣ ନାମ ଦେଇଦେଲେ । ଏ ଭୁଲଟି ସେତେବେଳୁ ଗଡ଼ି ଆସୁଛି । ]

( ରାଗ—ଆଶାବରୀ )

କମଳଲୋଚନ ରାମ ମାଲ୍ୟବନ୍ତେ ରହି ।
କରନ୍ତି ରୋଦନ ଉଚେ ସୀତା ସୀତା ହୋଇ ।
ପ୍ରାଣମଣି ରେ, କି କଲୁ ତୁ ମୋତେ ।
କାହିଁ ଗଲୁ ଏକା କରି ପକାଇ ପର୍ବତେ ॥ ୧ ॥

୫ ଖଣ୍ଡି ସବୁ ସୁଖ ଦୁଃଖ ଦେଲୁ ବଇଦେହି ।
କ୍ଷଣେହେ ତୋ ହୃଦୟରେ ଦୟା ହେଲା ନାହିଁ ।
ପ୍ରାଣମଣି ରେ, ଖେଦେ ହେଲି ବହି ।
ଖରରୁ ଗ୍ରହିକ ଆସ ବୋଲନ୍ତା କେ ନାହିଁ ॥ ୨ ॥

ଗୁଣମଣି ଭରସା ମୁ କରିଥିଲି ତୋତେ ।
୧୦ ଗଳା କାଟି ଚନ୍ଦନରେ ଗଲୁ ତୁ ଗୁପତେ ।
ପ୍ରାଣମଣି ରେ, ଗଲି ନଷ୍ଟେ ନାଶ ।
ଗଇଶିକ ଗୋଚି କଲୁ ଏମନ୍ତ ନିବଶ ॥ ୩ ॥

ଘର ଛାଡ଼ି ଘୋର ବନେ ପଶିଲେହେ ଆସି ।
ଘେନ କେହୁଗଲା ହାହା ମଉପିକଭାଷୀ ।
୧୫ ପ୍ରାଣମଣି ରେ, ଘନ ପୀନସ୍ତନା ।
ଘେନଲା ନାହିଁ ଦଇବ ଏ ମୋର ବେଦନା ॥ ୪ ॥

ନର୍ମଳ ଚନ୍ଦ୍ରବଦନା ନାହିଁ କରୁ କରୁ ।
ନ କଲ ମୋ ବୋଲ କପାଂ ଅଇଲୁ ରମ୍ଭୋରୁ ।
ପ୍ରାଣମଣି ରେ, ନସୂନପ୍ରତିମା ।
୨୦ ନ ରଖିଲା ଦଇବ ଆମ୍ଭର ସୁଖସୀମା ॥ ୫ ॥

ଚନ୍ଦ୍ରମୁଖି ଚନ୍ଦ୍ରମୁଖ ହେବାରୁ ଅନ୍ତର ।
ଗ୍ରହିଆଡ଼େ ଘୋଟିଲା ମୋ ଘନ ଅନ୍ଧକାର ।
ପ୍ରାଣମଣି ରେ, ଚକୋର ଲୋଚନ ।
ଚକଚ ହୋଇ ସନ୍ତତେ କରଇ ରୋଦନ ॥ ୬ ॥

---

୮. ହେ—ଜେ । ୧୨. ଗଲୁ—ହେଲୁ । ୨୨. ମୋ ଘନ—ମଦନ ।

୨୫ ଛଇଳମଣି ଗ୍ଭଡ଼ିଲୁ ଦୁଃଖ ଦେଖି ମୋର ।
ଛନ୍ଦ କଥାମାନ ଏବେ ଜାଣିଲି ତୋହର ।
ପ୍ରାଣମଣି ରେ, ଘ୍ଭର ଏ ଜୀବନ ।
ଗ୍ଭଡ଼ି ନ ଯାଇ କାନ୍ତଂକ ଗୁଣ ଛୁ ଏମାନ ॥ ୭ ॥

ଯାହା ବୋଲନ୍ତି ସ୍ପର୍ଶରେ ନଧନ ହୋଇଲେ ।
୩୦ ଯାଆନ୍ତି ନାଶ ଉପେଖି ଜାଣିଲି ତା ଭଲେ ।
ପ୍ରାଣମଣି ରେ, ଜାଣିଲି ତୋ ପ୍ରୀତି ।
ଜାଣୁମଣି ହୋଇ କପାଂ କଲୁ ଏହ୍ନ ରୀତି ॥ ୮ ॥

ଝଲକବରନା ନେତ୍ର ପଲକ ନ ସହୁ ।
ଝଳ ଅଙ୍ଗେ ଆଭରଣମାନଙ୍କ ନ ବହୁ ।
୩୫ ପ୍ରାଣମଣି ରେ, ଝଲନ୍ତି ମେଦେହ ।
ଝାଡ଼ି ଗିଚ୍ଚ ଅନ୍ତର ସହିଲା ଏବେ ଦେହ ॥ ୯ ॥

ନସ୍ତୁମ କରଇଥିଲୁ ମଧୂ ଶୟନରେ ।
ନ ଗ୍ଭହଂଚ୍ଚ ଆନ ଯୁବଣ ଙ୍କ ନୟନରେ ।
ପ୍ରାଣମଣି ରେ, ନ ଲଂଘିଲି ତାହା ।
୪୦ ନାଗରୀ ରତନ ଏବେ ଆରମ୍ଭିଲୁ ଏହା ॥ ୧୦ ॥

ଟଙ୍କଧର ଧନୁ ଭଙ୍ଗିବାରୁ ଯେତେ ଟାଣ ।
ଟେକ କନଙ୍କ ତନ୍ତ୍ରଂକ ହେଲା ଶତେ ଗୁଣ ।
ପ୍ରାଣମଣି ରେ, ଟହ ଟହ ହସି ।
ଟାହ୍ନ କରିବେ ବଇରି ଠାବେ ଠାବେ ବସି ॥ ୧୧ ॥

୪୫ ଠାବ କରି ନ ପାରିଲି କାନ୍ତଂ ଗଲୁ ସଖି ।
ଠଣ ଚନ୍ଦ୍ରମୁଖି ମୋତେ କଲୁ ନରିମାଖି ।
ପ୍ରାଣମଣି ରେ, ଠାକୁରାଣୀ ହୋଇ ।
ଠକ ବେଭାର କରିବା ଉଚିତ ନୋହଇ ॥ ୧୨ ॥

---

୩୮. ମାନଙ୍କେ—ମାନଙ୍କ ।

ତାଳମୃଣାଳଦଣ୍ଡନା ଡମରୁ ମଧ୍ୟମା ।
୫୦ ତାକ କପାଂ ଶୁଣୁନାହୁଂ ରାଜର୍ଷି କେମା ।'
ପ୍ରାଣମଣି ରେ, ତିକା ମୋତେ କଲୁ ।
ତୋଲାଗୁ ଲୁଅ ବୁହାଇ ଏଡ଼ା ସୁହାଇଲୁ ॥ ୧୩ ॥

ତାଲେହେଁ ମୁଁ ରହିଛି ମୋତେ ଗଲୁ କରିଦେଇ ।
ତନୁ ଜୀବନ ନ ଯାଇ ରହିଛି କପାଂଇ ।
୫୫ ପ୍ରାଣମଣି ରେ, ତୋକନ୍ତୁନାଁ ବିଷ ।
ତଗ ମେଳ ସମସ୍ତେ କରିବେ ଉପହାସ ॥ ୧୪ ॥

ଆଣି ଦେନ୍ତି ପଣେ ଧନୁଶର ଅଛି ବନ୍ଧି ।
ଏଡ଼ା ଯେବେ ନ କରିବି ଅଧୁନର ଏନ୍ଧି ।
ପ୍ରାଣମଣି ରେ, ଏ ପ୍ରମାଣ ମୋର ।
୬୦ ଅବଶ୍ୟ ଶତ୍ରୁକୁ ଦେଖାଇବ ଯମପୁର ॥ ୧୫ ॥

ତପନକୁଳ ପ୍ରତାପ ନୋହିଲେ ନୋହଇ ।
ତରୁଣୀମଣି ଏ ଧନୁଶର ଅଛି ବନ୍ଧି ।
ପ୍ରାଣମଣି ରେ, ତାଙ୍କୁ ତ ଦେଖିବୁ ।
ତ୍ରିବଳଶୋଭନ ଯେବେ ଜୀବନରେ ଥିବୁ ॥ ୧୬ ॥

୬୫ ଥୋଇ ଅଛି ପ୍ରାଣ ଅଙ୍ଗେ ଏ କଥା ସୁମରି ।
ଥଯ୍ୟେ କର ତେଜ ନାହିଁ ଅନଙ୍ଗ ବଇରି ।
ପ୍ରାଣମଣି ରେ, ଥରେ ଥରେ ଜ୍ଞାନ ।
ସ୍ଥାନ ଯୋଖି ବନ୍ଧିବାକୁ କରଉଛି ଭିନ୍ନ ॥ ୧୭ ॥

ଦ୍ୱିଜରାଜମୁଖି ଆରେ ଦ୍ୱିରଦଗମନା ।
୭୦ ଦୟାଜଳନିଧି ବାରେ ଦୟା କରୁ କନା ।
ପ୍ରାଣମଣି ରେ, ଦୁଃଖ କାଳେ ମୋତେ ।
ଦୂର କରିବାକୁ ସଧ ବଳାଇ କେମନ୍ତେ ॥ ୧୮ ॥

---

୬୦. ଅବଶ୍ୟ ଶତ୍ରୁ—ଅବଶଶତ୍ରୁ । ୭୧. ଦୂର—ଜୁର; ସଧ—ସତ ।

ଧିକ ମୋର ଧନୁଶର ଧରିଅଛି ନାହା ।
ଧରଣୀମଣ୍ଡନ ତୋତେ ନୋହିଲା ଯା ସାହା ।
୭୫ ପ୍ରାଣମଣି ରେ, ଧାତା ଏହା କଲା,
ଧ୍ରୁବଲୋକ ହ୍ନାଏ ଏହି ଅପବାଦ ଗଲା ॥ ୧୯ ॥

ନ କରଇ କାଳ କାହା କ ନୋହଇ ଦେହ ।
ନୃପସୁତା ସୁହାଇଲୁ ଏତେକ ବିରହ ।
ପ୍ରାଣମଣି ରେ, ନାହିଂ ନାହିଂ ନହିଂ ।
୮୦ ନାଥ ଥାଉ ଅନାଥ ହୋଇଛି ନାଶି କାହିଂ ॥ ୨୦ ॥

ପୌର୍ଣ୍ଣମୀଚନ୍ଦ୍ର ବଦନ ଅହା ବରିଦେଲି ।
ପରମଇଶ୍ବର ଏବେ ଗୁଡ଼ିଲୁ କାହିଂ ।
ପ୍ରାଣମଣି ରେ, ପାଉଥିବୁ ଦୁଃଖ ।
ପ୍ରସନ୍ନକୁ ଗୁଡ଼ିଥିବ ସୁନ୍ଦର ଶ୍ରୀମୁଖ ॥ ୨୧ ॥

୮୫ ପାଇ ଶୋକଭରେ ଅବନକ ଥିବୁ ଗ୍ରୀହିଂ ।
ଫୁଲ୍ଲ ପଦ୍ମନେତ୍ର ନୀର ଯାଉଥିବ ବହି ।
ପ୍ରାଣମଣି ରେ, ଫୁଲୁଥିବ ନାସା ।
ଫାଟି ଯାଉଥିବ ହୃଦ ଦେଖି ଏ ବରଷା ॥ ୨୨ ॥

ବିକଳ ସେ ହୋଉଥିବୁ ମେଘ ଦମକକୁ ।
୯୦ ବିହାରୁଥିବ ମୟୂର ଡାକରେ ତୋ ବୁକୁ ।
ପ୍ରାଣମଣି ରେ, ବିଜୁଳି ଝଟକ ।
ବେଭାରେ ରଖି ନ ଥିବ ଧଇର୍ଯ ବିବେକ ॥ ୨୩ ॥

ଭେକ ଡାହୁକ ଡାକରେ ପଡୁଥିବ ଡକା ।
ଭୁବନଧି ଭୁ ତେଣିକି ଏଣିକି ମୁ ଏକା ।
୯୫ ପ୍ରାଣମଣି ରେ, ଭସିଲାଇଂ ଦୁହେଂ ।
ଭଗାରି ପରସ୍ପେ ହୋଇ ହସିବେ ସଭିଏ ॥ ୨୪ ॥

---

୭୬. ଧ୍ରୁବ—ଧ୍ରୁବ । ୮୦. ନାହିଂ—ନାହିଂ । ୮୬. ନେତ୍ର—ନେତ୍ର ।

ମହାଦେବଧନୁ ଭଙ୍ଗିବାରୁ କଲେ ରୋଷ ।
ମହାରଜାମାନଙ୍କର ପଡ଼ିଲା ନିଶ୍ୱାସ ।
ପ୍ରାଣମଣି ରେ, ମଧୁର ବଚନା ।
୧୦୦ ମୋତେ ତୋହର ବେଦନା ଲାଗିଅଛି ସିନା ॥ ୨୫ ॥

ଯେଉଂ ଦିନୁ ମୋହର ଧଇଲୁ ଭୁଲି ପାଣି ।
ଜାଣୁମଣି ସୁଖଲେଶ ନ ପାଇଲୁ ଜାଣି ।
ପ୍ରାଣମଣି ରେ, ଯେତେ ଯେତେ କଥା ।
ଯେବେ ତା କହି ବସିବା ହେବ ମହାବ୍ୟଥା ॥ ୨୬ ॥

୧୦୫ ରାଜବଧୂ ରାଜଜେମା ଆଜନମ ସୁଖୀ ।
ରବଶଶି ସହଜେ ନ ପାରୁଥିଲେ ଦେଖି ।
ପ୍ରାଣମଣି ରେ, ରାକ୍ଷସ ମନ୍ଦିରେ,
ରହିଲୁ ସହିଲୁ ଦୁଃଖ ଦୁର୍ଗମ ବନ୍ଧରେ ॥ ୨୭ ॥

ଲହୁଲି ବୟସି ଏତେ ଥିଲା ତୋତେ ଯୋଗ ।
୧୧୦ ଲଭିବାକୁ ବିଷମ ବିରହ ବ୍ୟାଧି ଭୋଗ ।
ପ୍ରାଣମଣି ରେ, ଲଲାଟ ଲେଖନ ।
ଲକ୍ଷ କୋଟି କଳ୍ପରେ କେବେହେ ନୋହେ ଆନ ॥ ୨୮ ॥

ବିଧାତା ବାରେହେ ଯେବେ ହୋଇବ ପ୍ରସନ୍ନ ।
ବିମ୍ବାଧରି ତୋର ମୁଖ କରିବି ଦର୍ଶନ ।
୧୧୫ ପ୍ରାଣମଣି ରେ, ବିଶାଳନୟନା ।
ବାଞ୍ଛା କଳ୍ପତରୁ ମୋତେ ଦେଖା ଦେଉ କନା ॥ ୨୯ ॥

ସୁବୁଦ୍ଧି ସୁଜାଣ ସରୂରୂପେ ସୁଲକ୍ଷଣୀ ।
ସୁବେଣୀ ସୁବାଣୀ ସର୍ବ ସୁଖର କାରଣୀ ।
ପ୍ରାଣମଣି ରେ, ସାହିତ୍ୟପଠିଣୀ ।
୧୨୦ ସଙ୍ଗୀତ ରସ କୁଶଳା କାମକଳାଧନ ॥ ୩୦ ॥

ସୁବେଶୀ ସୁକେଶୀ ସୁକୁମାରୀ ମନ୍ଦହାସି ।
ସତେହେ ତୋ ଶ୍ରୀମୁଖ ଦେଖିବ ମଦାଳସୀ ।
ପ୍ରାଣମଣି ରେ, ସହିବ ମୋ ଦୁଃଖ ।
ସଂପୂର୍ଣ୍ଣ ଚନ୍ଦ୍ରଲପନ ଦେବୁ ମୋତେ ସୁଖ ॥ ୩୧ ॥

୧୨୫ ଶାତକୁମ୍ଭ କୁମ୍ଭସ୍ତନୀ ସୁକୁନ୍ଦ ଦଶନା ।
ସମତ୍ତ ହଂସଗମନା ହଂସକଶୋଭନା ।
ପ୍ରାଣମଣି ରେ, ସରସିଜନେତ୍ର ।
ହବୁ ସହ୍ଵଲ୍ ମୋ ଲାଗି ପରମପବିତ୍ର ॥ ୩୨ ॥

ହୃଦୟରେ ପ୍ରିୟା କଥା ସୁମରି ସୁମରି ।
୧୩୦ ହାହା ସୀତା ବୋଲି କପାଳରେ କର ମାରି ।
ପ୍ରାଣମଣି ରେ, ହରାଇଲି ତୋତେ ।
ହରାଉଛୁ ପ୍ରାଣ ଏବେ ମଦନ କରତେ ॥ ୩୩ ॥

କ୍ଷଣକେ କ୍ଷୋଭ କରନ୍ତି ରଘୁକୂଳ ନାହା ।
କ୍ଷଣକେ ତ୍ରିଭଙ୍ଗୀ କରି ହୁଅନ୍ତି ଉତ୍ସାହା ।
୧୩୫ ପ୍ରାଣମଣି ରେ, କ୍ଷତ୍ରବରମଣି ।
କ୍ଷେମେ ଧନ କୃଷ୍ଣ ଦାସ ଏ ରସ ବଖାଣି ॥ ୩୪ ॥

———

୧୨୪. ଚନ୍ଦ୍ରଲପନ—ଚନ୍ଦ୍ରକଳାପ ।

**ଟୀକା :—**

୧. ଉଚେ—ଉଚ୍ଚେ । ୨. ବୋଲନ୍ତା—ବୋଲିବା ବ୍ୟକ୍ତି ।
୩. ଗଇରକ—ସ୍ଵର୍ଣ୍ଣ, ଗୈରିକ । ୪. ହାହା—ଅହା, ହାୟ ।
୫. ରମ୍ଭୋରୁ—ରମ୍ଭା ଅର୍ଥାତ୍ କଦଳୀ ତର ଜାନୁ ଯାହାର ।

୭. ଛଇଲ୍ଲ—ସୁନ୍ଦରୀ, ଛବଲ ଶବ୍ଦଜ, ଛଇଲର ସ୍ତ୍ରୀଲିଂଗ ରୂପ; ଗୁଣିବା—ସ୍ମରଣ କରିବା ।

୮. ନିଧନ—ନର୍ତ୍ତନ; ଉପେକ୍ଷି—ଉପେକ୍ଷା କରି, ତ୍ୟାଗକରି; କାଶୁମଣି—ସୁନ୍ଦରୀ ।

୯. ଝଲକବରନା—ଯାହାର ଦେହର ବର୍ଣ୍ଣ ଦୀପ୍ତ; ନେଇ ପଲକ ନ ସହୁ—ପଲକ ମାତ୍ର ବିରହ ନ ସହୁ, ବିରହ ଉପୁଜୁଥାଇ ଭୟ; ଝଲ—କାନ୍ତିଯୁକ୍ତ; ଝଲି—ଲାଗିହୋଇ ରହିବା; ଝାଡ଼—ବଣ ।

୧୦. ଶୟନ—ଶଯ୍ୟା । ୧୧. ଚନ୍ଦ୍ରଧର—ଶିବ; ଠାଣ—ସମ୍ମାନ; ଠେକ—ବଡ଼ ।

୧୨. ଖଣ—ମନୋହର; କରମାଖି—ଅସହାୟ; ବେଭାର—ବ୍ୟବହାର ।

୧୩. ଡମରୁମଧ୍ୟମା—କ୍ଷୀଣକଟି ଯାହାର; ଲୁଅ—ଲୁହ, ଲୋତକ ଶବ୍ଦଜ ।

୧୪. ଆଣିବନ୍ତ—ଗୌରବବାନ୍ ।

୧୭. ଥମ୍ଭେ—ଥସ୍ଥ, ସ୍ଥିର; ସ୍ଥାନ...ବନ୍ଧବାରୁ—(ଶର ଭୟ) ।

୧୮. ଦ୍ୱିଜରାଜ—ଚନ୍ଦ୍ର; ଦ୍ୱିରଦ—ହାତୀ; ସଧ—ଇଚ୍ଛା, ଶ୍ରଦ୍ଧା ଶବ୍ଦଜ ।

୨୦. କାହା—କଣ, କାହାକୁ, ଏପରି ବ୍ୟବହାର ପ୍ରାଚୀନ ସାହିତ୍ୟରେ ସୁଲଭ ।

୨୧. ପ୍ରସନ୍ନରୁ—ପ୍ରସନ୍ନତାରୁ । ୨୨. ଫାଇ—ବିଶେଷ, ଫାନ୍ଦ ଶବ୍ଦଜ । ଫୁଲ୍ଲ—ପ୍ରସ୍ଫୁଟିତ । ୨୩. ଦମକ—ଉତ୍ତାପ, ଚମକ; ବେଗ୍ରରେ—ସହଜେ ।

୨୪. ପତ୍ତ୍ୱେ—ପ୍ରାପ୍ତ, ପତ୍ ।

୨୬. କହି ବସିବା—କହି ବସିବାର ମାନ୍ୟାର୍ଥ ବହୁବଚନ ରୂପ, [ ଓଡ଼ିଆରେ ଉତ୍ତମ ପୁରୁଷ ବହୁବଚନର ରୂପ ଦ୍ୱିବିଧ, ଆମ୍ଭେରେ ଶ୍ରୋତା ଅନ୍ତର୍ଭୁକ୍ତ ହେଲେ ପ୍ରକାରେ ଏବଂ ଶ୍ରୋତା ଅନ୍ତର୍ଭୁକ୍ତ ନ ହେଲେ ପ୍ରକାରେ, ଯେପରି ଆମେ ବସିବା ଓ ଆମେ ବସିବୁ । ପ୍ରାଚୀନ ସାହିତ୍ୟରେ ଉତ୍ତମ ପୁରୁଷ ବହୁବଚନରେ କ୍ରିୟାରୂପ ଶ୍ରୋତାରୁ ଅନ୍ତର୍ଭୁକ୍ତ କରିବାର ମଧ୍ୟ ହେଉଥିଲା । ]

୨୭. ବନ୍ଦ—ବନ୍ଦୀଗୃହ । ୨୮. ଲହୁଲି—କୋମଳ ।

୩୦. କାରଣୀ—କର୍ତ୍ତ୍ରୀ; ପଠିଣୀ—ପାଠିକା; କାମକଳାଧନ—ରତିକଳା ସମ୍ପନ୍ନା ।

୩୨. ଶାତକୁମ୍ଭ—ସ୍ୱର୍ଣ୍ଣ; ସମର—ମନ୍ତ୍ର; ହଂସକ—ନୂପୁର । ପରମ ପବିତ୍ରି—ପରମ ପବିତ୍ରର ସ୍ତ୍ରୀଲିଂଗ ରୂପ ।

୩୪. ନାହା—ନାଥ; ଉତ୍ସାହା—ଉତ୍ସାହିତ; ଖେମେ—ଶୁଭରେ ।

ସଂ: ୧

# ଟକାର ଚଉତିଶା

ଉପେନ୍ଦ୍ର ଭଞ୍ଜ

[ ଗଞ୍ଜାମ କୁଲାଡ଼ାଗଡ଼ରେ ପ୍ରାୟ ଖ୍ରୀ: ୧୬୭୫ ବେଳକୁ ଘୁମୁସର ରାଜବଂଶରେ ଜନ୍ମ । ପିତା ନୀଳକଣ୍ଠ ଘୁମୁସରର ରାଜା ବିଖ୍ୟାତ କବି ଧନଞ୍ଜୟ ଭଞ୍ଜଙ୍କର ଜ୍ୟେଷ୍ଠପୁତ୍ର ନ ଥିଲେ ମଧ୍ୟ ପ୍ରିୟପୁତ୍ର ଥିଲେ । ଖ୍ରୀ: ୧୭୦୧ ରେ ଧନଞ୍ଜୟଙ୍କୁ ନୀଳକଣ୍ଠ ହତ୍ୟାକରି ନିଜେ ଗାଦି ମାଡ଼ି ବସିଲେ କିନ୍ତୁ ମାତ୍ର ଅଢ଼େଇ ବର୍ଷ ପରେ ଧନଞ୍ଜୟଙ୍କ ପୁତ୍ର ଘନ ଭଞ୍ଜ ତାଙ୍କୁ ରାଜ୍ୟରୁ ବିତାଡ଼ିତ କରିବା ହେତୁରୁ ସେ ପଳାତକର ଜୀବନ ଯାପନ କଲେ । ଉପେନ୍ଦ୍ର ପିତାମହଙ୍କ ପ୍ରିୟପାତ୍ର ଥିଲେ ଏବଂ ତାଙ୍କ କବିତ୍ୱ ସୃଷ୍ଟି ଲାଗି ପିତାମହଙ୍କର ପ୍ରେରଣା ଲାଭ କରିଥିଲେ । କ୍ଷମତା ପାଇଁ ନୀଳକଣ୍ଠ ଯେଉଁ ଚକ୍ରାନ୍ତ କଲେ ସେଥିରେ ଉପେନ୍ଦ୍ର ଜଡ଼ିତ ନ ରହି ସାହିତ୍ୟ ରାଜ୍ୟରେ ପ୍ରତିଷ୍ଠା ଅର୍ଜନ କରିବା ଲାଗି ନିରବଚ୍ଛିନ୍ନ ସାଧନା କରି ଲାଗିଲେ । ଏଥିପାଇଁ ଶାନ୍ତ ପରିବେଶ ପାଇବା ପାଇଁ ସେ ଘୁମୁସର ବାହାରେ ନୂଆଗଡ଼ ମାଳିସାହି, ବାଣପୁର, ପୁରୀ ଆଦି ସ୍ଥାନରେ କାଳ କଟାଇଥିଲେ । ସେ ବିଦଗ୍ଧ ଆଲଂକାରିକ ଛଟାରେ ସମୃଦ୍ଧ ଅର୍ଦ୍ଧଶତାଧିକ ଗ୍ରନ୍ଥ ରଚନା କରି ଉତ୍କଳ ସାହିତ୍ୟ ଭଣ୍ଡାରକୁ ଶାଶ୍ୱତ ଦାନ କରିଯାଇଛନ୍ତି । ତାଙ୍କ ରଚନାମାନଙ୍କ ମଧ୍ୟରେ ବୈଦେହୀଶ ବିଳାସ, ସୁଭଦ୍ରା ପରିଣୟ, କଳାକଉତୁକ, ରସତରଙ୍ଗ, ପୁରୁଷୋତ୍ତମ ମାହାତ୍ମ୍ୟ, ଆଦି ପୌରାଣିକ କାବ୍ୟ; କୋଟିବ୍ରହ୍ମାଣ୍ଡ ସୁନ୍ଦରୀ, ଲାବଣ୍ୟବତୀ, ରସଲେଖା, ପ୍ରେମ ସୁଧାନିଧି ଆଦି କାଳ୍ପନିକ କାବ୍ୟ ଏବଂ ରସପଞ୍ଚକ, ଚିତ୍ରକାବ୍ୟ ବନ୍ଧୋଦୟ ଆଦି ଆଲଂକାରିକ କାବ୍ୟ ପ୍ରଧାନ । ଉପେନ୍ଦ୍ରଙ୍କ ମୃତ୍ୟୁ ପ୍ରାୟ ଖ୍ରୀ. ୧୭୨୦ ରେ ହୁଏ । ନିମ୍ନ ଚଉତିଶାଟି ତାଙ୍କର ଅଳଂକାର ଗ୍ରନ୍ଥ ରସପଞ୍ଚକର ଟକାର ଭାଗର ଚଉତିଶା । ଏହି ଗ୍ରନ୍ଥଭୁକ୍ତ ପାଞ୍ଚୋଟିଯାକ ଚଉତିଶାରେ ଯଥାକ୍ରମେ ର, ସ, ପ, ଚ, ଟ ଅକ୍ଷର ପାଦର ଆଦ୍ୟରେ ରଖାଯାଇ ଚଉତିଶାର ଅନ୍ତରକ୍ରମ ପ୍ରାନ୍ତ ଅକ୍ଷରକୁ ନେଇ ପାଳିତ ହୋଇଅଛି । ଏହାଛଡ଼ା ମଧ୍ୟ ଉପେନ୍ଦ୍ର କୋକିଳ ଚଉତିଶା, କେଳିବାହୁଡ଼ା ଚଉତିଶା, ନୀଳାଦ୍ରୀଶ ଚଉତିଶା ଆଦି ଅନେକ ଚଉତିଶା ଲେଖିଛନ୍ତି । ପୋଥିଗୁଡ଼ିକରେ ଏହାର ପାଠର ତାରତମ୍ୟ ବହୁତ । ଲେଖନକାର କଠିଣ ଶବ୍ଦଗୁଡ଼ିକୁ ବୁଝିପାରି ନ ଥିବା ହେତୁରୁ ତାହା ହୋଇଛି । ନିମ୍ନ ପାଠଟିରେ ପାଠଭେଦ ଗୁଡ଼ିକୁ ସୂଚାଇ ନାହିଁ କାରଣ ଏହା ବିଶୁଦ୍ଧ ପାଠ ବୋଲି ଦାବି କରୁନାହିଁ । ]

( ରାଗ—ରାଜବିଜେ )

ଚତୁର ରସିକ କବି ବିବୁଧ ବୁଧ ମେଧାବୀ
ଶୁଣ ପୁଣ ମନ କରି ଏକ ଯେ ।
ଚନ୍ଦ୍ରକ ଚନ୍ଦ୍ରକଧର ଧୀର ସାରସକୁମାର
କରଇ ଯେମାନ ସନ୍ତୋଷକ ଯେ ॥ ୧ ॥

ଚମ୍ପା ଆଦି ଶାଖୀ ଲତା ଗୁଳ୍ମ କୁସୁମ ରହିତା
ଅକାଳେ ହେବାକୁ ପୁଷ୍ପମୁଖ ଯେ ।
ସ୍ମର ଜାତ ନିତମ୍ବିନୀ ପ୍ରଧାନ ଯେ ହୋଏ ଯେନ
ଭାବୁଂ ହୋଇ ଦୋହଦ ସୁମୁଖ ଯେ ॥ ୨ ॥

ଚର୍ଚ୍ଚିସ୍ତ ଆଗତ କାଳ ପରିବେଶେ ଶପ୍ତିବାକୁ-
କେଶୀ ରସି କହି ଅତି ରାଗ ଯେ ।
ସ୍ମରି ପାଞ୍ଚ ଛଅ ବେନି ସଙ୍ଗିନୀ ସଙ୍ଗ କାମିନୀ
ଚଳିଲେ କେଳିବନକୁ ବେଗ ଯେ ॥ ୩ ॥

* ପ୍ରିୟଙ୍ଗୁ ଦୋହଦ
ଶ୍ଳୋକ ॥ ପ୍ରିୟଙ୍ଗୁଃ ଶୀତଳାଜାୟୈଃ ଫୁଲ୍ଲତ୍ୱମପି ଜାୟତେ ।

ସ୍ପର୍ଶଂ ପ୍ରିୟଙ୍ଗୁକୁ କେହି ଭ୍ରାନ୍ତ ବର୍ଣ୍ଣ କାନ୍ତି କହି
ସେ ଭାବେ ଶୀତଳ ଗିରିଓଡ଼ ଯେ ।
ସ୍ପୃଷ୍ଟଂ ସ୍ପୃଷ୍ଟଂ ଗନ୍ଧଫଳୀ ନହିଲା ସକୁସୁମ ଅଳି
କେଳି କଲେ ପ୍ରାପ୍ତ କି ନଦାଘ ଯେ ॥ ୪ ॥

ଚତୁଷ ହୋଇ ଉତ୍‌ଫୁଲ୍ଲ ଚନ୍ଦ୍ରଂ ଆଣି ଧନ୍ତୁ ଫୁଲ
ଛନ୍ଦେ କଉଂ ସଖୀ ଏ ବଚନ ଯେ ।
ଚଞ୍ଚଳେ ପ୍ରିୟଙ୍ଗୁ ବାସ ସୁମନରେ ହରୁ କ୍ଳେଶ
ମୋହିତେ ଚାହିଁ ତ କରୁ ଯେନ ଯେ ॥ ୫ ॥

### ✳ କେତକୀ ଦୋହଦ ✳

ଶ୍ଲୋକ । ସ୍ଫୁଟତ୍ୱଂ ଯାତି ବେଗେନ କେତକୀ ରଦନକ୍ଷତୈଃ ।

ଚମ୍ପକ ଗୋରୀ କେ ଛନ୍ଦଂ କେତକୀ ଗୁଳ୍ମକୁ ଗୃହ୍ୟଂ
ରଦନ ପଦରେ କରୁ ସଞ୍ଚ ଧନ୍ୟ ।
ଚପଳେ ହେଲା କୁସୁମିତ ଦେଖି ଛଳେ କନ୍ତଂ ମିତ
ଚାମ୍ପକରଙ୍କୁ ନସତ ମୁଞ୍ଚ ଯେ । ୬ ॥

### ✳ ଅଶୋକ ଦୋହଦ

ଶ୍ଲୋକ । ଅଶୋକ ପାଦଘାତେନ ସ୍ଫୁଟ ତ୍ୱଂ ଯାତି ତତ୍‌କ୍ଷଣାତ୍

ଗୁରୁ ଶାଖା ଅଶୋକର ଲେଟନ୍ତେ ମଣ୍ଡ ଉପର
କନ୍ତଂ ରମା କର ହୃଦ ସ୍ୱଚ୍ଛ ଧନ୍ୟ ।
ଚରଣ ପ୍ରହାର କରୁ ସେ କ୍ଷଣେ ହୋଇଲା ଗୁରୁ
ସୁମନସର ସେ ଧର ଗୁଚ୍ଛ ଯେ ॥ ୭ ॥

ଗୃହୁର୍ଯ୍ୟେ କେ ଛଳ ବୋଲେ ପ୍ରିୟେ ପଦ ଘାତ ହେଲେ
ଘାତ ଯୋଗ୍ୟ ନକ ଏହା ହେଜ ଯେ ।
ଚନ୍ଦ୍ର ତୋ ଏଡ଼େ ନିଷ୍ଠୁର ତୋ ପ୍ରପଦ ଶୋଭାଧର
ପ୍ରଫୁଲ୍ଲିତେ ସେ ରକ୍ତ ଲଜ ଯେ ॥ ୮ ॥

### ✳ ବକୁଳ ଦୋହଦ ✳

ଶ୍ଲୋକ । ଅଧୁନା ମଧୁଯୁକ୍ତେନ ବକୁଳଃ ପୁଷ୍ପିତୋ ମହାନ୍ ।

ଚତୁର୍ଥ କଶୋଶ ଖେଳେ ବସନ୍ତେ ବକୁଳ ମୂଳେ
ସଖୀ ବୋଲେ ଏ ଅପୁଷ୍ପ ବୃକ୍ଷ ଯେ ।
ରେଖ ହଂଗୂଳ ରଦନ- ବାସୁଂ କର ମଧୁ ଦାନ
କଲ ସପୁଷ୍ପିତ କହେ ରକ୍ଷ ଯେ ॥ ୯ ॥

ଚନ୍ଦ୍ରମାମୁଖୀ କ ବୃକ୍ଷଂ କନ୍ତଂ ସଖୀ ଛଳ କହ
ପରଣ ବନ୍ଧୁ ଭୁ ଅତ ବଙ୍କ ଯେ ।

ଚେତନା ଉନ୍ମତ ବଟ— ଫଳୁ କଲୁ ଯାହା ସ୍ଫୁଟ
ଏ ସେନ ଶୁ ବୋଲଉ କୃତଜ୍ଞ ଯେ ॥ ୧୦ ॥

※ ଆମ୍ର ଦୋହଦ ※

ଶ୍ଳୋକ । କରଦ୍ୱୟସ୍ୟ ସ୍ପର୍ଶେନ ରସାଳ ମୁକୁଳୀ କୃତଃ ।

ଚୂତ ବୃକ୍ଷଂ ସଖୀବୃନ୍ଦ ହୁଅନ୍ତ'ଇ ଗୋ ବକୁଳ
ନାହଂ ବୋଲି ତନ୍ତ୍ରଂରେ ଲମ୍ପଟ ଯେ ।
ଟଉ କରୁ ଚମତ୍କାରେ କଜ୍ଜଂ ପଦ୍ମବାସୀ ଖଟରେ
କର ସ୍ପର୍ଶେ କଲ ତାକୁ ସ୍ଫୁଟ ଯେ ॥ ୧୧ ॥

କୁରଣ୍ଟକ ଦୋହଦ ※

ଶ୍ଳୋକ । ସ୍ତନାଭ୍ୟାଂ ସଂ ଭୃତ ସଦାଃ ପୁଷ୍ପିତଶ୍ଚ କୁରୁଣ୍ଟକ ।

ଚକ୍ଷୁ ପଡୁ କୁରଣ୍ଟକ ଗୁଳ୍ମରେ ହୋଇ ଉତ୍ସୁକ
କଜ୍ଜଂ ଖୁରୁ ଗଡି କରି ମଠ ଯେ ।
ଗ୍ଲେଳ ସ୍ତନୁ କାଢ଼ିଦେଇ ଭଉକ୍ତେ ତାହାକୁ ଯାଇ
ପୁଷ୍ପବନ୍ତ କଲ ତାକୁ ହଠ ଯେ ॥ ୧୨ ॥

ଚର ପ୍ରିୟୁ ଆଳୀ ଦେଖି ହସି ବୋଇଲା ରେ ସଖି
ଜାଣିଲି ତୋର ବିବେକ ବଡ଼ ଯେ ।
ଚହ୍ନ ପାଇ ମହା ସାହା ଏଣୁ କେଡ଼ାଉଛୁ ବାହା
ଯାହା ନ ଗୁଡୁ ତୁ ନୋହେ ବୃଦ୍ଧ ଯେ ॥ ୧୩ ॥

※ କର୍ଣ୍ଣିକାର ଦୋହଦ ※

ଶ୍ଳୋକ । ବିକାଶ ସ୍ୟାତ୍କର୍ଣ୍ଣିକାରଃ ସରସୈର୍ମୈତ୍ରବୀକ୍ଷଣୈଃ ।

ଗୃହ୍ଣ କର୍ଣ୍ଣିକାର ଶାଖୀ ସଭଙ୍ଗ ପୁଷ୍ପେ ନ ଦେଖି
ତାହା ଭଞ୍ଜିବାକୁ କର ଦୃଢ଼ ଯେ ।
ଚତ୍ରାପତ ମୁଖୀ କେଶ ସମସ୍ତ ବଚନ କହ୍ମ
କଲା ପର ସେପର ଆରୂଢ଼ ଯେ ॥ ୧୪ ॥

ସିନ୍ଧୁବାର ଦୋହଦ ✳

ଶ୍ଳୋକ । ସକୌତୁକ ଗିରଃ ଶ୍ରୁତ୍ୱା ସିନ୍ଧୁବାର ସ୍ଫୁଟତ୍ୟପି ।

ଚ୍ୟୁତ ନର୍ଗୁଣ୍ଡୀ କୁସୁମେ  ଦେଖି ସିନ୍ଧୁବାର ନାମେ
କେ ଛଳ ବୋଲେ ନ ଥିବା ପୁଣ ଯେ ।
ଚଳନ୍ତ ନାହିଂ ମକର  ଆଦି ଏଥି ଜଳଚର
ବୋଲୁଂ ହେଲ୍ଲ ସେ ପୁଷ୍ପେ ଭୂଷଣ ଯେ ॥ ୧୫ ॥

ଚତୁସ୍ପ ଏ ବୋଲେ ବନ୍ଧୁ  ତୋତେ ଯାହା କାମସିନ୍ଧୁ
ଘୋଟିଅଛୁ ଜାଣଇଂ ମୁ ସତ ଯେ ।
ତମକୁ ମାଗତ ସମେ  ସେ ଯେମନ୍ତ ରାମନାମେ
ଏ ବୃକ୍ଷସେ ପୁନ୍ୟଜନ ବତ ଯେ ॥ ୧୬ ॥

✳ କୁସୁମ୍ଭ ଦୋହଦ ✳

ଶ୍ଳୋକ । କେଶସ୍ପର୍ଶବିଧାନେନ କୁସୁମ୍ଭ ସ୍ଫୁଟତି ଧ୍ରୁବଂ ।

ଗୃହଆଡ଼କୁ ଅନାଇଂ  କୁସୁମେ କେ ଦୃଷ୍ଟି ଦେଇଂ
ସେହୁ ରାଗେ ଯେନ ମନେ ଅଥ ଯେ ।
ଚିକୁର ଚନ୍ଦ୍ରଂ ନବେଣୀ  ତାହାକୁ କୁସୁମେ ଭୂଷି
କରିଦେଲ୍ଲ ପୂର୍ଣ୍ଣ ମନୋରଥ ଯେ ॥ ୧୭ ॥

✳ ଶ୍ୟାମା ଦୋହଦ ✳

ଶ୍ଳୋକ । ଶ୍ୟାମା ସଙ୍ଗୀତଗାନେନ ସ୍ଫୁଟତ୍ୟେବ ନ ସଂଶୟଃ ।

ଚଲ୍ଲୀ ପ୍ରକାଶେ କେ ରମା  ଗୃହ୍ନଂ ଆନ ପୁଷ୍ପ ଶ୍ୟାମା-
ନାମା ଏ ସଙ୍ଗୀତ ହବେ ମୋଦ ଯେ ।
ଚନ୍ଦ୍ରପଦୀ ଆଦି ଗୃହ  ଚଞ୍ଚପଦୀ ଗାନ କରି
କଲା ତାକୁ ପୁଷ୍ପବସରଦ ଯେ ॥ ୧୮ ॥

✳ ପୁନ୍ନାଗ ଦୋହଦ ✳

ଶ୍ଳୋକ । ପୁନ୍ନାଗୋ ହସିତେନୈବ ପ୍ରଫୁଲ୍ଲ ଭୃ ମୁପୈତି ଚ ।

ସ୍ଥଳଜ ପୁନ୍ନାଗ ତରୁ-  ଶାଖା ଯେନ କଣ୍ଠଂ ଧରୁ
ଦୁରୁ ହସେ ହୋଇଣ ସଂଶ୍ରଦ୍ଧ ଯେ ।

ଚପଳେ ହୋଉଂ କୁସୁମ　　　ବେଶରେ ହୋଇ ସୁଷମ
ଦେଖି ସଖୀ ଛଳେ ଏକ ସଧ ଯେ ॥ ୧୯ ॥

ଚଞ୍ଚଳାଗୋପୀ ନ ବୁଝି　　　ପୁନ୍ନାଗ ଶବଦେ ଶୃଙ୍ଖି-
ଅଛୁ ବଟପ ସେ ମନେ ଘେନ ଯେ ।
ଚନ୍ଦ୍ର ଆଉ ତୁ ନବଳା　　　ଛନ୍ଦଂରେ ଛକାରେ ବାଳା
ବନ୍ଧ ପାଇବୁଟି ଭରଛନ ଯେ ॥ ୨୦ ॥

✳ କୋବଦାର ଦୋହଦ ✳

ଶ୍ଳୋକ । କୋବଦାରେ ବକାଶି ସ୍ୟାତ୍ ସ୍ନେହାଲିଙ୍ଗନ କୌତୁକୈଃ ।

ଚତୁର୍ କେ ସଖୀ ମେଳ　　　ଗୁଡ଼ ଆଶ୍ରୟ କୁଦ୍ଦାଳ
କରୁଂ ଦେଖି ତାର କାନ୍ତ ରୂପ ଯେ ।
ସ୍ବହଂସ୍ତ ନାହାକ୍ତ ସଙ୍ଗ　　　ଅଶ୍ଳେଷ କୌତୁକେ ସ୍ନେହ୍ମ
ହୋଉଂ ତାରେ ହେଲା ସେ ସପୁଷ୍ପ ଯେ ॥ ୨୧ ॥

ଚରମେ ମିଳେ କେ ସଖୀ　　　ତାହାକୁ କାହ୍ନଂ ନ ଦେଖି
ଖୋଜ ଖୋଜ ନାନା ତରୁ ଶେଫ ଯେ ।
ସ୍ବହଂଲ ଯୁଗଳପତ୍ର　　　ଭ୍ରମେ ଜଡ଼ାଇଛୁ ଗାତ୍ର
ପ୍ରିୟ ଭାବ ରଖି ହୃଦଗୁମ୍ଫ ଯେ ॥ ୨୨ ॥

ଚେତାଇଦେଲା ଏ ଗିରେ　　　ଏତେ ଦୂର ସ୍ବର ଶରେ
ହୋଉ କଉଂ ରସ ଏଥି ଧ୍ରୁବ ଯେ ।
ଚନ୍ଦ୍ରାର୍ଦ୍ଧଶେଖର ତୋର　　　ପୂର୍ଣ୍ଣ ମନୋରଥକର
ହେବେ ବୋଲୁଂ ହେଲା ଲଜେ ଧ୍ରୁବ ଯେ ॥ ୨୩ ॥

✳ ଚମ୍ପକ ଦୋହଦ ✳

ଶ୍ଳୋକ । ନାରୀଣାଂ ମଧୁମତ୍ତନାମାଳାପେନାପି ଚମ୍ପକଃ ।

ଗୁର୍ ସଖୀ ବସି କାହ୍ନଂ　　　ଯଉବନେ ମଦ ବନ୍ଧ
କଲେ ମଧୁପାନକୁ ଆରମ୍ଭ ଯେ ।

ଚଷଟକ ପୂରାଇ କରେ ଧରି ଯେ ଯାହା ଇଚ୍ଛାରେ
ପିଇ ହଜାଇଲେ ଜ୍ଞାନ·ଦମ୍ଭ ଯେ ॥ ୨୪ ॥

ଚଳନ୍ତେ ପଦ ସ୍ଖଳନ ହୋଇ ଭ୍ରମଣୁ ସେ ବନ
ସେ ବନରେ ଯାଇ ଅବଶ୍ରମ ଯେ ।
ଚମ୍ପକ ମୂଳରେ ଯାଇ ବସିଲେ ଅବଶ ହୋଇ
ଚୁମ୍ବିଂ ସେନ୍ତି ଚୁମ୍ବିତ କୁସୁମ ଯେ ॥ ୨୫ ॥

ଚତୁର୍ଥେ କଥା ପ୍ରସଙ୍ଗ କରନ୍ତେ କଥାପ୍ରସଙ୍ଗ
କହିଲ ପରସ୍ପ ବାଣୀଚମ୍ପ ଯେ ।
ଚମକ ଏ ମମମଲ୍ଲୀ ଚଚଚମ୍ପା ଭାଷା ବୋଲି
ନୃହନ୍ତ କଉଂ ପ୍ରକାରେ ଥସ୍ତୁ ଯେ ॥ ୨୬ ॥

ଚରମେ କେ ଶିବ ମୋର ବୋଲେ ଅଛୁ ନିରନ୍ତର
କେ ବୋଲନ୍ତି ମୋ କରେ ନିଶାକର ଯେ ।
ଚିହ୍ନା ନାହିଂ ଚିହ୍ନାଇବ ଚିହ୍ନରେ କଳରେ ବାନ୍ଧବୀ
ଶୁଣି ଚମ୍ପା ପୁଚ୍ଛେ ମନୋହର ଯେ ॥ ୨୭ ॥

କଦମ୍ବ ଦୋହଦ ⁕

ଶ୍ଳୋକ । ପ୍ରଫୁଲ୍ଲୋ ଜାୟତେ ଯୁକ୍ତଃ କଦମ୍ବଃ କରଜକ୍ଷତୈଃ ।

ଚତୁର ବଗୁଂ ସହଚରୀ ପ୍ରମୋଦ ବିହାର ସାରି
ହେଉଂ ଆସି ଏକ ଠାବେ ଠୁଳ ଯେ ।
ଚୁମ୍ବି ଚନ୍ଦ୍ରହର ବେଣୀ କଦମ୍ବ ମୂଳରେ ମୋଦ
ହେଲେ ବାଞ୍ଛି ବହୁଶ୍ରମ ଜଳ ଯେ ॥ ୨୮ ॥

ଚରମ ଦେଶେ କେ ଚିହ୍ନଂ ଥିଲା ଉପରକୁ ଚାହିଂ
ଦେଲା ନାହିଂ କୁସୁମ ପ୍ରଭବ ଯେ ।
ଚିହ୍ନି ନ ପାରିଲା ପୁଣି କହ ଗୋ ପ୍ରାଣ ମିତଣି
ଜାଣିଛ କେ ହୋଇବ ପଲ୍ଲବ ଯେ ॥ ୨୯ ॥

ଶୁଣନ୍ତଂ କେ ଛଳଲା ହସି　　　ପ୍ରିୟଙ୍କରେ ଶୃରୁଙ୍ଗାସିଁ
　　ଥାଇ ପଶୁହୁଙ୍କୁ କରି ବଶ ଯେ ।
ଚିହ୍ନାଗଲା ମୁଗ୍ଧାଙ୍କତ　　　ଆମ୍ଭେ ତ ଅଭିନ୍ନ ପ୍ରୀତି
　　ନ ରଖିବ ଦୟା ପର ଲେଶ ଯେ ।। ୩୦ ।।

ସୁରୁଶୀଳା ଛଙ୍କା କେଣ୍ଠ　　　ପଦେ ଭଣ୍ଡି ସ୍ୱଚ୍ଛେ ତନ୍ତ୍ରଂ
　　କରୁ ନଖକ୍ଷତ ବନ୍ଧ ତୋଷ ଯେ ।
ଚମତ୍କାରେ କ୍ଷଣକରେ　　　'ଶୋଭି ସେ କୁସୁମବାରେ
　　ଦେଖି ସଖୀନକର ହରଷ ଯେ ।। ୩୧ ।।

ଚଳିଲେ ତନ୍ତୁଂ ସକଳ　　　ବାମନେତ୍ରା ହୋଇ ମେଳ
　　ତୋଳିବାକୁ ନାନା ସୁମନସ ଯେ ।
ଗୃହୁଂ ପଥରେ ପଥରେ　　　କେ ଦେଖି ପଳାଶ ଥରେ
　　କରି ନେଇ ଚଞ୍ଚଳ ମାନସ ଯେ ।। ୩୨ ।।

ଚପଳ ହୋଇଣ ଯାଇ　　　କଜ୍ଜଂ ଗ୍ରମା ତୋଳେ ଜାଇ
　　ଗଣି ଗଣିକାରେ କରେ ସ୍ନେହ ଯେ ।
ଗ୍ନେଲରେ କେ ବାନ୍ଧି ଧରି　　　ଏଣ୍ଡୁ ପରି ସବୁ ନାଶ
　　ସୁମନେ ମଣ୍ଡିଲେ ଆସି ଗୃହ ଯେ ।। ୩୩ ।।

ସୁର ଦ୍ୱିଗୁଣ ହାସୁନେ　　　ଯେ ଜନକ ଉପବନେ
　　ତୋଳି ପୁଷ୍ପ କରି ମାଳା ଦକ୍ଷ ଯେ ।
ରୂପ ପଣରେ ବରଣ　　　ଯାହାକୁ କଲେ ସେ ପୁଣ
　　ମାଳ ଉପଇନ୍ଦ୍ର, ଭଞ୍ଜ ପକ୍ଷ ଯେ ।। ୩୪ ।।



ଟୀକା :—

[ ଚଉଛନ୍ଦାରେ ବର୍ଣ୍ଣିତ ବୃକ୍ଷ ଦୋହଦ ଏକ କବି ପ୍ରସିଦ୍ଧି । ବିଟପ କହିଲେ ଉଭୟ ବୃକ୍ଷ ଓ କାମୁକଙ୍କୁ ବୁଝାଏ; ମୂର୍ଚ୍ଛି, ପ୍ରଫୁଲ୍ଲିତର ଅର୍ଥ ପୁଷ୍ପମଣ୍ଡିତ ହେବା ଓ ଆନନ୍ଦିତ ହେବା । ନାରୀଙ୍କ ସଂସର୍ଗ ଲାଭ କଲେ ବିଟପ (ଅର୍ଥାତ୍ କାମୁକ) ପ୍ରଫୁଲ୍ଲିତ (ଅର୍ଥାତ୍ ଆନନ୍ଦିତ) ହୁଏ; ଏହା ସତ୍ୟ । ନାମର ସାମ୍ୟରୁ ଗୁଣର ସାମ୍ୟ କଳ୍ପନା କରିବାଇ ନାରୀଙ୍କ ସଂସର୍ଗରେ ବୃକ୍ଷ (ବିଟପ) ପୁଷ୍ପମଣ୍ଡିତ (ପ୍ରଫୁଲ୍ଲିତ) ହେବା କବି ପ୍ରସିଦ୍ଧି ହୋଇଥିବା ଅନୁମେୟ । ବୃକ୍ଷ ଦୋହଦ କଳ୍ପନାଟି ଅବାସ୍ତବ ହେଲେ ମଧ୍ୟ ବହୁକାଳରୁ ବିଭିନ୍ନ କବି ଓ ଅଳଂକାରିକ ଏହାର ଚର୍ଚ୍ଚା କରି ଆସିଛନ୍ତି । ଉପେନ୍ଦ୍ର ଭଞ୍ଜ ଦୋହଦର ଚର୍ଚ୍ଚା କରିବା ସଙ୍ଗେ ସଙ୍ଗେ ଛନ୍ଦୋକ୍ତିର ବହୁ ଦୃଷ୍ଟାନ୍ତ ଯୋଗ କରି ଏହାକୁ ଆକର୍ଷଣୀୟ କରିଛନ୍ତି । ଯେଉଁ ଯେଉଁ ପଦର ଅଭିବ୍ୟକ୍ତି ନିତାନ୍ତ ଜଟିଳ ମନେ ହୋଇଛି ସେ ଗୁଡ଼ିକର ଅର୍ଥ ଜଟିଳ ଶବ୍ଦର ଅର୍ଥ ସମେତ, ନିମ୍ନରେ ଦିଆଗଲା । ]

୧. ବିବୁଧ ବୁଧ—ବିଶେଷ ଭାବେ ଜ୍ଞାନଯୁକ୍ତ ପଣ୍ଡିତ; ଚନ୍ଦ୍ରକ—ଚନ୍ଦ୍ର, ମଣ୍ଡଳ; ଚନ୍ଦ୍ରକ ଚନ୍ଦ୍ରକଧର—ଚନ୍ଦ୍ରଶେଖର ଶିବ; ସାର ସାରସ—ଶ୍ରେଷ୍ଠ ପଦ୍ମ; ସାର ସାରସକୁମାର—ପଦ୍ମସମ୍ଭବ ବ୍ରହ୍ମା; କରଇ···ସନ୍ତୋଷକ—ଯାହା ସନ୍ତୋଷ ଦିଏ ।

୨. ଶାଖୀ—ବୃକ୍ଷ; ପୁଷ୍ପମୁଖ—ପୁଷ୍ପିତ, 'ମୁଖ'ର ଆରମ୍ଭ ଅର୍ଥରୁ; ଜାତ—ଶ୍ରେଷ୍ଠ, ଜାତ୍ୟ ଶବ୍ଦଜ; ଦୋହଦ—ଅକାଳୋଦ୍‌ଗମ ଉପାୟ; ସୁମୁଖ—ସୁନ୍ଦର; ଭାବୁଂ···ସୁମୁଖ—ଦୋହଦ କରାଇଲେ ସୁନ୍ଦର ହେବ ବୋଲି ଭାବୁ ଭାବୁ ।

୩, ଚର୍ଚ୍ଚରୀ—ଦୋଳ ଯାତ୍ରା; ଶଇବାଳ—ଶୈବାଳ; ଶଇବାଳ କେଶୀ—ସୂକ୍ଷ୍ମ ଦୀର୍ଘକେଶୀ; ରାଗ—ଅଭିଳାଷ; ଗୃହ ପାଞ୍ଚ ଛଅ ବେନି—ଚଉଦ; ଗୃହ······କାମିନୀ—ନିମ୍ନରେ ଚଉଦଟି ଦୋହଦ ବର୍ଣ୍ଣିତ ହେବ, ଗୃହକଣ ନାରୀ ଏହାକୁ ଗୃହ, ପାଞ୍ଚ, ଛଅ, ଦୁଇ ସଂଖ୍ୟା କ୍ରମରେ କରିବେ, ଏଣୁ କବି ଚଉଦ ନ କହି ସଂଖ୍ୟାଗୁଡ଼ିକ ବିଭକ୍ତ କରି ଲେଖିଛନ୍ତି, ଏଥିରୁ ବିଭିନ୍ନ ସଖୀ ଭିନ୍ନ ଭିନ୍ନ ସଂଖ୍ୟକ ଦୋହଦ ପାଇଁ ବାସନା ଅର୍ଥାତ୍ ସଙ୍ଗ ପୋଷଣ କରୁଥିବା ସୂଚିତ ହୁଏ ।

୪. ପ୍ରାନ୍ତବର୍ଣ୍ଣକାନ୍ତି—ପ୍ରିୟଙ୍ଗୁର ଶେଷାକ୍ଷର ଲୋପରେ ପ୍ରିୟ; ଗିରିଓଘ—ବଥାଗୁଡ଼ିକ; ଚନ୍ଦ୍ରପର୍ଣ୍ଣୀ—ପ୍ରିୟଙ୍ଗୁ; ନିଦାଘ—ଗ୍ରୀଷ୍ମକାଳ, ପ୍ରିୟଙ୍ଗୁ ଫୁଲ ଫୁଟିବା କାଳ ।

୫. ଛଳେ—ଛଳେ କ୍ର କରେ; ପ୍ରିୟଙ୍ଗୁ—ପ୍ରିୟ ଅଙ୍ଗରୁ (ଓଡ଼ିଆ ଶବ୍ଦ ନିୟମରେ ସିଦ୍ଧ); ଚଞ୍ଚଳେ····· ଦେନ—ଏହାର ଦୁଇଟି ଅଭିପ୍ରେତ ଅର୍ଥ, ଏଣୁ ଛଳୋକ୍ତି, ସାଧାରଣ ଅର୍ଥ ହେଲା:—ଶୀଘ୍ର ପ୍ରିୟଙ୍ଗୁର ସୁବାସ ପୁଷ୍ପକୁ ନେଉଛୁ, ଦେବ ପୂଜା ପାଇଁ ତୁ ଏପରି କର । ଅନ୍ୟ ଅର୍ଥ ହେଲା:—ସ୍ୱାମୀଙ୍କୁ ମୋହିବା ପାଇଁ ପ୍ରସନ୍ନ ମନରେ ପ୍ରିୟ ଦେହରୁ ବସ୍ତ୍ର ବାହାର କରିବା ଦ୍ୱାରା ସ୍ୱାମୀର ହିତ କରୁଛୁ ।

୬. ଚନ୍ଦ୍ରକ—ଚନ୍ଦ୍ରହାଟ, ଦୀପ୍ତ; ରଦନ—ଦାନ୍ତ; ପଦ—ଚିହ୍ନ; ସଞ୍ଚ—ସୁନ୍ଦର କୁମ୍ଭିତ—ପ୍ରସ୍ଫୁଟିତ; ମୁଞ୍ଚ—ତ୍ୟାଗ କର; କାମ କରନ୍ତୁ—ତୁ କାର୍ଯ୍ୟକର, କାମର କରତରୁ ।

୭. ସୁମନସ—ଫୁଲ ।

୮. ପ୍ରିୟ·····ଲଜ୍ଜ—୧ ଅର୍ଥ :—ଗୋ ପ୍ରିୟା, ଅଶୋକ ତ ଶୋକହୀନ, ତାକୁ କାହିଁକି ପଦାଘାତ କରୁଛୁ, ତୁ ନଷ୍ଟୁରୁ, ତୋ ପାଦାଗ୍ର (ପ୍ରପଦ) ଶୋଭାକୁ ଧାରଣ କରିଥିବା ଅର୍ଥାତ୍ ତୋର ଗୋଡ଼ର ଅଙ୍ଗୁଠି ଭଳି ଅଶୋକ କଳୀ ଫୁଟିଛି । ଏହା ଅର୍ଥାତ ତୁ ପଦାଘାତ କରିବା ଲଜ୍ଜାର କଥା । ୨ ଅର୍ଥ:—ପ୍ରିୟଙ୍କୁ ପଦାଘାତ କରୁଛୁ, ସେ କଣ ଏଥିକୁ ଯୋଗ୍ୟ, ଅଥଚ ତୋ ପାଦାଗ୍ର ଶୋଭାକୁ ନେଇ ସେ ଲଜ୍ଜାଶୂନ୍ୟ ହୋଇ ଅନନ୍ଦିତ ହେଉଛନ୍ତି ।

୯. ଶ୍ରେଖ—ମନୋହର; ହିଙ୍ଗୁଳ—ରଞ୍ଜନ, ରଙ୍ଗଯୁକ୍ତ କରିବା ଅର୍ଥରେ ହିଙ୍ଗୁଳିବାର ପ୍ରୟୋଗ ପ୍ରାଚୀନ ସାହିତ୍ୟରେ ମିଳେ, ଆଧୁନିକ ଲିପଷ୍ଟିକ୍ର ପ୍ରାଚୀନ ରୂପ । ରଦନବାସ—ଅଧର; ମଧୁଦାନ—ଅଧରାମୃତ ଦେବା, ଚୁମ୍ବିବା; ରଞ୍ଜ—ମନୋରଞ୍ଜନ ।

୧୦. ବିଟପ—୧ମ ଅର୍ଥ:—ବୃକ୍ଷ, ୨ୟ ଅର୍ଥ:—ଲମ୍ପଟ ।

୧୧. ଚୂତ—ଅମ୍ବଗଛ; ବକୁଳ—ଆମ୍ବ ବଉଳ, ବଉଳ ଫୁଲର ସଂସ୍କୃତ ନାମ ବକୁଳ କିନ୍ତୁ ଆମ୍ବ ବଉଳ ଅର୍ଥରେ ବକୁଳ ଶବ୍ଦର ବ୍ୟବହାର ଅନେକ ପ୍ରାଚୀନ କବି କରିଛନ୍ତି; ନାହିଁ···ଲମ୍ପଟ—ଚୂତର ଅନ୍ୟାର୍ଥ ଜନନେନ୍ଦ୍ରିୟ ତେଣୁ ସେଠି କାମୁକତା ଅର୍ଥ କିନ୍ତୁ ବକୁଳର ସେପରି ଅର୍ଥ ନାହିଁ; ପଦ୍ମବାସୀ—ପଦ୍ମଗନ୍ଧା, 'ପଦ୍ମିନୀ ପଦ୍ମଗନ୍ଧାଚ' ।

୧୨. ଖିନ୍ନ—ନାରୀ; ଖେଳ—କାମ୍ୟବସ୍ତୁ; ହଠ—ବଳାତ୍କାର ।

୧୩. ଯାହା—ଯାହାଯାହା, କୁରଣ୍ଟକର ଅନ୍ୟନାମ ସହଚରୀ ବୋଲି; ହୃଦ୍—ହୃଦୟ ।

୧୪. ତାହା—ସେପରି; ଚନ୍ଦ୍ରାପଢ—ଚନ୍ଦ୍ରାନ୍ତି ଦେଖି, ବର୍ଣ୍ଣଚନ୍ଦ୍ରବର୍ଣ୍ଣଯୁକ୍ତ; ସମନ୍ଧ—ମନ୍ତ୍ର; କଣ୍ଠ···ଅରୁଦ୍ଧ—ସେହିଭଳି ପୁଷ୍ପମଣ୍ଡିତ କରିବା ଭଳି ।

୧୫. କର୍ଗୁଣ୍ଡୀ—ସିନ୍ଧୁନାର; ସିନ୍ଧୁବାର—କର୍ଗୁଣ୍ଡୀ ଗଛ, ସିନ୍ଧୁଜଳ; ଚଳନ୍ତ··· ଜଳଚର—ସିନ୍ଧୁବାର (ସିନ୍ଧୁଜଳ) ମଧ୍ୟରେ ମକରାଦି ଜଳଚର ରହିବା କଥା କିନ୍ତୁ ଏହି ସିନ୍ଧୁବାର (କର୍ଗୁଣ୍ଡୀ) ଉପରେ ତାହା ନାହିଁ ।

୧୬. ଚଉଷ···ସତ—ଜଣେ ଚତୁର କହିଲେ କର୍ଗୁଣ୍ଡୀ ଗଛକୁ ତୁ ଯାହା ସିନ୍ଧୁଜଳ କଳ୍ପନା କରୁଛୁ ଏଥିରୁ ଜାଣୁଛି ତୋତେ କାମସିନ୍ଧୁ ଘୋଟିଛି [ କାମର ଅନ୍ୟାର୍ଥ କଳ୍ପନା ]; ଚମକୁ···ବତ—ରାମ ଅର୍ଥାତ୍ ବାଣ ନାଁ ଧଇଲେ ମାରୀଚ ଅର୍ଥାତ୍ ମୃଗବେଶଧାରୀ ଚମକିଲା ପରି ତୁ ଚମକୁଛୁ ସେହିପରି ରାମନାମ ଶୁଣିଲେ ରାକ୍ଷସ ମାରୀଚ ଚମକୁଥିଲା ଏଣୁ ରାକ୍ଷସ ସମାଜରେ ମାରୀଚ ପୁଣ୍ୟବନ୍ତ ଭଇଲା ।

୧୭. ରାଗ—ଅଭିଳାଷ ଅର୍ଥ—ଏହାପରେ; ଚିକୁର—କେଶ ।

୧୮. ଚଲ୍ଲୀ—ଭ୍ରୂ; ଚଲ୍ଲୀ ପ୍ରକାଶେ—ଭ୍ରୂରୁ ଟେକି; ଅନ ପୁଷ୍ପ—ପୁଷ୍ପସ୍ଥାନ; ·ଛତ୍ରପଦୀ—ସଂଗୀତ, ଚତ୍ରର ଅର୍ଥ ରାଗିଣୀ ଯୁକ୍ତ (ଚତ୍ରକାବ୍ୟ ବଚିତ୍ର ରାମାୟଣ ଅଲୋଚ୍ୟ); ବସର—ସମୂହ; ପୁଷ୍ପବସରଦ—ପୁଷ୍ପସମୂହ ଦାନକାରୀ ।

୧୯. କୁସୁମବେଶ—ଫୁଲର ଭୂଷଣ; ସଧ—ଆଗ୍ରହ, ଶ୍ରଦ୍ଧା ଦେଖି ।

୨୦. ଚଞ୍ଚଳା—ବିଦ୍ୟୁତ୍; ପୁନ୍ନାଗ—ପୁନାଙ୍ଗ ଗଛ, ପୁରୁଷ ଶ୍ରେଷ୍ଠ । ପୁନ୍ନାଗ··· ଭରଛନ—ତୁ ଏ ଗଛର ପୁନ୍ନାଗ ନାମକୁ ପୁରୁଷଶ୍ରେଷ୍ଠ ଅର୍ଥରେ ନେଇ ମୋହିତ ହୋଇଛୁ କିନ୍ତୁ ବୃକ୍ଷ ଅର୍ଥରେ ତଥା ପୁରୁଷ ଅର୍ଥରେ ପୁନ୍ନାଗ ବଟପ ତହିଁକି ଶ୍ରଦ୍ଧାବଳିଲେ ବଟପୀ ବୋଲି ଭର୍ତ୍ସନା ପାଇବୁ ।

୨୧. କୁଦ୍ଦାଳ—ରକ୍ତକାଞ୍ଚଣ ( କୋବିଦାରେ ଚମରିକ କୁଦ୍ଦାଳୋ ଯୁଗ ପତ୍ରକ— ଅମର ) ଦେଖି···ତାରେ—ଗଛର କାନ୍ତ (ମନୋହର) ରୂପ ଦେଖି ( ତାକୁ କାନ୍ତ ବା ପତିର ରୂପ ବିଚାର କରି ) ସଖୀମାନେ କ ଥିଲେ କେଲେ ସାଦରେ ଆଲିଙ୍ଗନ କଲେ ।

୨୨. ବରଗେ—ପଛେ; ଶେଫ—ବୃକ୍ଷତଳ ("ଶେଫ ତରୁମୂଳ"-ଗୀତାଭିଧାନ; କିନ୍ତୁ ଶେଫର ଅନ୍ୟାର୍ଥ ଶିଶ୍ନକୁ ମଧ୍ୟ ସୂଚିତ କରିପାରେ ); ମୂଳପତ୍ର—ରକ୍ତକଞ୍ଚଣ । ଗୁମ୍ଫ—ଗୁହା ।

୨୩. ସ୍ମର—କନ୍ଦର୍ପ; ଚନ୍ଦ୍ରାର୍ଦ୍ଧଶେଖର—ଶିବ ।

୨୪. ମଦ—ଅହଂକାର; ମଧୁ—ମଦ୍ୟ, ଚଷକ—ମଦ୍ୟପାନ ପାତ୍ର; ଦମ୍ଭ—ଦୃଢ଼ତା ।

୨୫. ରହିତକୁସୁମ—କୁସୁମରହିତ, ପୁଷ୍ପହୀନ ।

୨୬. କଥା ପ୍ରସଙ୍ଗ—କଥୋପକଥନ, ବାତୁଳ; ଚୟ—ସମୂହ ।

୨୭. ବୋଲେ—ବୋଲରେ; ଚିହ୍ନା···ଚିହ୍ନରେ—ମୁଁ ଜାଣେ ନାହିଁ ତଥାପି ଲକ୍ଷଣ ଚିହ୍ନାଇବ ।

୨୮. ଚୂର୍ଣ୍ଣ—ଧୂଳି; ବେଦୀ—ସ୍ଥଳ; ମୋଦି—ଆମୋଦିତ ହୋଇ ।

୨୯. ଚରମ···ପଲ୍ଲବ—କୌଣସି ସଖୀ ପଛରେ ଦେଖିଲା, ଉପରକୁ ଗୃହିଁ ଦେଖିଲା ଯେ ଗଛରେ ଫୁଲ ନାହିଁ, ଗଛକୁ ଚଳି ନ ପାରି ଏହାର ପତ୍ର କେଉଁ ଗଛର ପତ୍ର ହୋଇପାରେ ବୋଲି ସଙ୍ଗିନୀମାନଙ୍କୁ ପଚାରିଲା ।

୩୦, ପ୍ରିୟକ—କଦମ୍ବ; ବଶ—ଅଭିଳାଷ, ଆୟତ୍ତ; ମୁଗ୍ଧା—ଶ୍ରେଷ୍ଠ ନାୟିକା ପ୍ରିୟକରେ···ବଶ—୧ମ ଅର୍ଥ:—ରେ ଗୃହିଦାସି, ଏହା କଦମ୍ବ, ତୁ ଅଭିଳାଷ ପୋଷଣ କରି ପଚାରୁଛୁ, ୨ୟ ଅର୍ଥ:—ଗୃହିଦାସି, ପ୍ରିୟର ବାହୁ(କର) ବନ୍ଧନ ମଧ୍ୟରେ ରହି ପ୍ରିୟକୁ ବଶ କରି ପଚାରୁଛୁ ।

୩୧. କୁସୁମବାର—କୁସୁମସମୂହ; ସଖୀନିକର—ସଖୀମାନେ ।

୩୨. ବାମନେତ୍ରା—ମନୋହର ନେତ୍ରା, ବାମାକ୍ଷି; ପଳାଶ—ବୃକ୍ଷବିଶେଷ, ରାକ୍ଷସ ଗୃହ୍ନଂ······ଅରେ—ବାଟେ ବାଟେ ଗୃହ୍ନଂ ଗୃହ୍ନଂ କରି ପଳାଶ ଗଛକୁ ଦେଖିଲା, ପଳାଶର ଅନ୍ୟ ଅର୍ଥ ରାକ୍ଷସ ହେତୁରୁ ଗଛକୁ ରାକ୍ଷସ ଭାବି ଭୟରେ କମ୍ପିଲା । କରି······ମାନସ—ଆଖି ଓ ମନକୁ ଚଞ୍ଚଳ କରି ଅର୍ଥ ( ଶବ୍ଦ ବିନ୍ୟାସ ଠିକ୍ ନୁହେଁ ) ।

୩୩. ଗଣିକା—ଯୁଈଫୁଲ ।

୩୪. ଗୁରୁଦ୍ୱିଗୁଣ ହାୟନେ—ଅଠବର୍ଷ ବୟସରେ, ଦକ୍ଷ—ଦକ୍ଷତା ସହକାରେ ଗୁପଣ—ଧନୁଭଙ୍ଗ କଲେ ବରଣ କରିବା ପ୍ରତିଜ୍ଞା ।
ଗୃହ···ପକ୍ଷ—ସୀତା ଓ ରାମଙ୍କୁ କାନ୍ଧ ଉପେନ୍ଦ୍ର ନିଜର ସହାୟ ବୋଲି କହୁଛନ୍ତି ।

ସଂ: ୧୪

# ଭୃଙ୍ଗୀ ଚଉତିଶା

ଗୋକୁଳ ନରେନ୍ଦ୍ର

[ କବି ସମ୍ଭବତଃ ଗଞ୍ଜାମର ମଧୁରି ରାଜ୍ୟର ରାଜା । କାଳ ଆନୁମାନିକ ଅଷ୍ଟାଦଶ ଶତାବ୍ଦୀ । ଏହାଙ୍କର ଅନ୍ୟଏକ ରଚନା କୃଷ୍ଣ ବିରହ ଚଉତିଶା । ]

( ରାଗ—କୌଶିକ )

କୁସୁମକାଳେ କେଳିବନେ ନବୀନ ନବ ମାଳତୀ କୁଞ୍ଜୋଦରେ ।
କମଳମୁଖୀ କୋମଳା କୁନ୍ଦଦନ୍ତୀ ତ୍ରିପୁର ସୁନ୍ଦରୀ ଘୁମୁରେ ।
କଞ୍ଜନୟନା, ସଜନୀ ପ୍ରବେଶ ହୋଇଲା ।
କରଯୁଗ ଯୋଡ଼ି ବିନୟୀ ହୋଇଣ କୋମଳ ବାଗେ ଜଣାଇଲା ॥୧॥

୫ ଖେଳ ଖଞ୍ଜନ ଗଞ୍ଜନ ନୟନୀ ତୋ ବିନୁ ସେ ପୁରୁଷରତନ ।
ଖେଦାର୍ତ୍ତିବେ ମଗ୍ନ ହୋଇ କ୍ଷିତି ତଳେ ପଡ଼ି ହୋଇଛି ଅଚେତନ ।
ଖରନିଶ୍ୱାସ, ଛୁଡ଼ୁଅଛି [ତା] ନିରନ୍ତରେ ।
ଖରେ ଆକର୍ଣ୍ଣ ସନ୍ଧିଯାଏ ଓଙ୍କାର ବନ୍ଧୁଅଛି କାମ ସଲ୍ଲରେ ॥୨॥

ଗଜଗମନୀ ଗୁଣମଣି ଗଉରି ଗୁରୁତର ଗୁରୁ ସୁଶ୍ରୋଣି ।
୧୦ ଗତକାଳେ ଗେଲେ ପାଦ୍ମା ତୁ କହିଛୁ ଅତି ସନ୍ଦର୍ଭ ଗର୍ଭବାଣୀ ।
ଗୁଣି ମନରେ, ସେ କଥାମାନ ନିରନ୍ତରେ ।
ଗାଢ଼ କୁସୁମ କଠୋର କାମକାଣ୍ଡେ ସହି ରହି ଅଛି ପ୍ରାଣରେ ॥୩॥

---

୧୨. ସହୁ—ସହ ।

ଘନ ଜଘନୀ ଲୋ ବନୁ ତା ନୟନ ଘନାଘନ ପ୍ରାପ୍ତେ ହୋଇଛି ।
ଘନ ଘନ ନରନ୍ତରେ ଅତି ଖରେ ଲୋତକ ଜଳ ବରଷୁଛି ।
୧୫ ଘନ ପୁଲକ, ବକଚ କଦମ୍ବ ସମାନ ।
ଦେଖନ୍ତୁ ଜମ୍ବୁ ସମକୁ ତା ଅଧର ହୋଇଛି ରଙ୍ଗିମାରେ ହୀନ ॥୪॥

ନବୀନ ଅମଳ ପ୍ରଫୁଲ୍ଲ କମଳ ନୟନ ଯୁଗଳ ତାହାର ।
ନିଷ୍ପଳ ହୋଇ ରହୁଅଛି ସନ୍ତତେ ନ କରଇ ଆଉ ପ୍ରହାର ।
ନଷ୍ଟେ ନଗଣ, ହୋଇଲାନ ଆସି ଜୀବନେ ।
୨୦ ନାହିଁ ନାହିଁ ନାହିଁ ଆନ ଗତି ବନା ଚନ୍ଦ୍ରମୁଖୀ ତୋହ ପ୍ରସନ୍ନେ ॥୫॥

ଚୀନ ଚିକ୍କଣ ପ୍ରଲମ୍ବ ସୁକେଶୀରେ ଦୁଃଖ ତାର କେତେ କହିବା ।
ଚତୋଇ ଚତୋଇ ଚମକେ ତା ଚିତ୍ତ ଚତୁଷ୍ପ ଲୋ ଚୈଖ ବୁହିଂବା ।
ଚନ୍ଦ୍ରମୁଖୀରେ, ଜଚିତ କି ସ୍ନେହ ଛାଡ଼ିବା ।
ଚଞ୍ଚଳାକ୍ଷି ତୁ ଶିକ୍ଷା କାହିଁ ପାଇଲୁ କହ ତୁ ପୁରୁଷ ମାରିବା ॥୬॥

୨୫ କ୍ଷିତିମଣ୍ଡଳ ଛଟକ ଗୁହାଂଣିରେ ଜିଣିଅଛୁ ପୂର୍ବେ ଯାହାକୁ ।
କ୍ଷୀଣୋଦରୀ ଏବେ ଅନଙ୍ଗଭୂତକୁ ଦେଲୁ ବଳି କରି ତାହାକୁ ।
କ୍ଷୋଭ ମନରେ, ଟିକାଏ ଆଉ ଦେନୁ ନାହିଁ ।
ଛାଡ଼ ତେଢ଼େ ଭାବ ମନରୁ ସଜନ ଏଡ଼େ ନିଷ୍ଠୁର ହେଲୁ କାହିଁ ॥୭॥

ଯତନ କଙ୍କଣ ଖଞ୍ଜନୀ ମୃଣାଳ ଦେହରେ ଦେଲେ ତାର ଆଣି ।
୩୦ ଜାଣଇ ଯଥା ହଳାହଳ ପୂରିତ ଅତି ଘୋରତର ସର୍ପିଣୀ ।
ଯତ୍ନ କରିଣ, ଧରେ ଗରୁଡ଼ ମହାମଣି ।
ଯାମିନୀ ପ୍ରବେଶେ ଜୀବନେ ଏବେ ସେ ଥିବ କି ନଥିବ ନଜାଣି ॥୮॥

ଝଟକମୁଖୀ ଲୋ ମୁଖ ସମକରି ଦେଖିବ ଯେବେ କଳାକର ।
ଝମଣ୍ଟେହେ ଆଉ ଜୀବନ ଦେହରେ ରହିବ କେମନ୍ତେ ତାହାର ।
୩୫ ଝୀନବସନା, ଲଗିଲେ ଏ ମନ୍ଦ ମରୁତ ।
ଝଟଝଟ ହୋଇ ଝାମ ଯାଉଥିବ ହୋଇ ପଲ୍ଲବତଲ୍ପ ଗତ ॥୯॥

ନିଶାନ୍ତ ନିଶାନାଥ ନଭ ଧୂସର ଦିଶିବ ବଦନ ତାହାର ।
ନିର୍ମଳ ଗଣ୍ଡମଣ୍ଡଳ ଯୁଗଳ ତା ଶଙ୍ଖକାନ୍ତ ପ୍ରାୟେ ପାଣ୍ଡୁର ।
ନ ସହଇ ସେ, ଘନସାର ପଙ୍କର ରସ ।
୪୦ ନିର୍ମଳ କନକ ପ୍ରତିମ ତନୁରେ ଲାଗେ କି ଅନଙ୍ଗ ପାଉସ ॥୧୦॥

ଟିକାଏ ଯେବେ ସେ କଂଳ କଳକଣ୍ଠ ବାଣୀ ଶ୍ରବଣରେ ଶୁଣିବ ।
ଟାଣ ପ୍ରସୂନବାଣ ଗୁରୁ କମାଣ ଟଙ୍କାର ପରାୟେ ମଣିବ ।
ଟାଣ କଟାକ୍ଷୀ, କେମନ୍ତେ ଧରିବ ସେ ପ୍ରାଣ ।
ଟଳି ପଡ଼ିବ ମଧୁକର ନିକର ମଧୁର ନିନାଦ ଶୁଣିଣ ॥ ୧୧ ॥

୪୫ ଠାଟିକି କିଶଳୟଦଳ ସଙ୍କୁଳ ଶୀତଳ ଆସେ ଶୁଆଇଲେ ।
ଠିକେ ଶଯାରେ ଲାଗିଲେ ସେ ମର୍ମର ଭାବକୁ ଭଜ ଯାଇ ଭଲେ ।
ଠାବ ନୟନ, କରଇ ସନ୍ତତେ ପ୍ରସ୍ତର ।
ଠଣଜଘନା କମ୍ବୁକଣ୍ଠୁ ତାହାର ନୋହଇ ବଚନ ବାହାର ॥୧୨॥

ରାଗ—( ଚୋଖି )

ଡାଳମ୍ବ ବୀଜ ଦଶନା    କରୀନ୍ଦ୍ର ମନ୍ଦ ଗମିନୀ
୫୦ ବସନ୍ତ ପିକ ବଚନା ମହୀମଣ୍ଡନା,
ଡମରୁଧର ମୋହିନୀ    ମୃଦୁ ମଧୁର ହାସିନୀ
ଅଶୀତ ବନ୍ଦକେଶିନୀ କଂଜ ନୟନୀ,
ଡେଉର କର୍ଣ୍ଣ ସଖୀ ବଚନ,
ଡମରୁ ମଧ୍ୟା ଶୁଣିଣ ହେଲା ବିବର୍ଣ୍ଣ ॥୧୩॥

୫୫ ଢଳଢଳ ହୋଇ ତାର    ନୟନ ଯୁଗୁ ବାହାର
ହୋଇଲା ଲୋତକ ଧାର ପ୍ରଖର ହୋଇ,
ଢଳି ସେ ପଡ଼ିଲା ତଳେ    କାତର ହୋଇ ବହୁଳେ
ସଜନୀ ଧଇଲା କୋଳେ ଜ୍ଞାନ ହରାଇ,
ଢାଳେହେ ସେ ହେଲା ଅଥିର,
୬୦ ଢମାଳିଆ କାମ ଶର କଲା ପ୍ରହାର ॥୧୪॥

---

୫୫, ଡାର—ଗର ।

ଅବନୀ ତଳେ ଶୟନ  କଲା ସେ ହୋଇ ବିମନ
ବୁଝିଣ ଚେତନ ଶୂନ୍ୟ ଶଶୀବଦନା,
ଅକାଳେ କୋକିଳ ବାଣୀ  ଶୁଣିଣ ତରୁଣୀ ମଣି
ଚମକି ପଡ଼ିଲା ପୁଣି ହେମବରଣୀ,
୬୫ ଅଜାଣେ ସେ ଉଠିବସଇ,
ଅତି ଉଚ୍ଚେ ପ୍ରାଣବନ୍ଧୁ ବୋଲି ଡାକଇ ॥୧୫॥

ତାହା ଦେଖି ସଖୀଗଣ  କରନ୍ତି ବହୁ କାରୁଣ୍ୟ
ହୋଇଲେ ସେ ଜ୍ଞାନ ଶୂନ୍ୟ କେଉଁ ସଜନୀ,
ତାକୁ କରନ୍ତି ଆଶ୍ୱାସ  ଦେଇ ମଳୟଜ ରସ
୭୦ ଲେପନ୍ତି ହୋଇ ବିରସ ହଂସଗମନା,
ତଥାପି ଶୋକକୁ ଭଜଇ
ତପତ ନିଶ୍ୱାସ ଅନୁକ୍ଷଣେ ତେଜଇ ॥୧୬॥

ଥର ଥର ହୋଇ ତାର  କମ୍ପୁ ଯେ ଅଛି ଶରୀର
ଅନ୍ତରେ ବିରହ ଜ୍ୱର ପ୍ରବେଶ ହେଲା,
୭୫ ଥିରେ କମ୍ପିଲା ଉରଜ  ବିବର୍ଣ୍ଣ ମୁଖ ନୀରଜ
କୁସୁମଶର ମନୋଜ ପ୍ରହାର କଲା,
ଥିର ଗମନାର ଏ ସ୍ଥିତି,
ଥିରେ ଦେଖି ସଖୀମାନେ କଲେସେ ଖ୍ୟାତି ॥୧୭॥

ଦେଖିଣ ଏମନ୍ତ ସ୍ଥିତି  ବକୁଳ କରି ଯୁବତୀ
୮୦ ଆଣିଲେ ଯାଇ ଝଟିତି କମଳଦଳ,
ଦେଲେ ସେ ଦେହରେ ତାର  ସିଞ୍ଚିଲେ ଶୀତଳ ନୀର
ଲାଗନ୍ତେ ଅତି ଅଥିର ହେଲା ଆକୁଳ,
ଦ୍ୱିରଦ ଗମନା ଶରୀର,
ଦେଖୁ ଦେଖୁ ଅତିଶୟ ହେଲା ପାଣ୍ଡୁର ॥୧୮॥

---

୭୨. କାରୁଣ୍ୟ—କାରଣ ।

୮୫ ଧମନୀ ମଣିବନ୍ଧରୁ          ଗୁଡ଼ିଲା ପ୍ରାୟେ ରନ୍ଧ୍ରୋରୁ

ହୋଇଣ ବେଦନା ଗୁରୁ ଲଭିଣ ଘମା,

ଧରିଛି କଷ୍ଟେ ଜୀବନ          ତେଜିଲା ଭୂଷଣମାନ

ବିଷ ସମାନ ଅଶନ ମଣିଲା ଶ୍ୟାମା,

ଧୀରଗମନୀକି ସଜନୀ,

୯୦ ଧୀରେ ଧରି ସଦନକୁ ନେଲେ ସେ ଘେନି ॥୧୯॥

ନେଇ ବାଳାକୁ ସଦନେ          ଶୁଆଇଲେ ସେ ଶୟନେ

କେହିଂ ସଜନୀ ବନ୍ଧନେ ଘମାର ଜଳ,

ନିର୍ମଳ ମୁଖେ ସିଞ୍ଚଇ          ତୁଳା ନାସାପୁଟେ ଦେଇ

ଶ୍ୱାସ ଅଛିକି ମଣଇ ହୋଇ ବିକଳ,

୯୫ ନିଠୁର କୁସୁମବାଣ,

ନବକିଶୋରୀ କି ହେଲା ବିଷ ସମାନ ॥୨୦॥

ପରଭୃତ ବାଣୀ ଶୁଣି          ଚମକି ତରୁଣୀମଣି

ପଡ଼ିଲା ଆସି ଧରଣୀ ଅବଶ ହୋଇ,

ପ୍ରାଣ ହୋଇଲା ସନ୍ଦେହ          ବଢ଼ିଲା ମଦନ ମୋହ

୧୦୦ ବେନିକୁ ବେଳ ଦୁଃସହ ନୋହିଲା ସହି,

ପଡ଼ିଅଛି ଜ୍ଞାନ ହରାଇ,

ପଦ୍ମ ପଙ୍କଜ ପଲ୍ଲବେ ସଖୀ ବିଞ୍ଚଇ ॥୨୧॥

ଫୁଲଶର ଶରବାର          ଚନ୍ଦ୍ରମୁଖୀ କି ପ୍ରହାର

କରଇ ସେ ନିରନ୍ତର ସନ୍ତୋଷ ମନ,

୧୦୫ ଫାଟି ନ ଯାଇ ହୃଦୟ          ରହିଅଛି କୁଚ ଦ୍ୱୟ

କଠିନ ତା ଅତିଶୟ ପୀନଜଘନ,

ଫାଇ କାନ୍ତୁ ଚେତନା ନାହିଁ,

ଛୁଟେ ଜୀବନକୁ ଆଉ ଭରସା କାହିଁ ॥୨୨॥

---

୮୮. ଶ୍ୟାମା—ସ୍ତ୍ରୀ । ୯୮. ଅବଶ—ଅଦଶ

ବିକସିତ ନାଗ ସମ ପୁଲକ ଶସ୍ତରେ କାମ
୧୧୦ କଠିନ କାଣ୍ଡରେ କ୍ଷୀମ ମନ୍ଦଗମନା,
ବିମଳ ଅମୂଲ୍ୟ ତାର ସୁନ୍ଦର ମୁକ୍ତାହାର
ମଣ୍ଡଇଂ ଯେସନ ହାର କୁନ୍ଦଦଶନା,
ବିଷ ସମ ମଣଇ ଶଶୀ
ବଧୂ ବଦନା କ କାଳ ହୋଇଲା ନିଶୀ ॥ ୨୩ ॥

୧୧୫ ଉର୍ମି ପ୍ରଭମ ଗଜସ୍ତ୍ର ମହାମୋହନ ମଞ୍ଜୁସ୍ତ
ରମଣୀମଣି ସୁନ୍ଦରୀ ଅଣୁକୋବସ୍ତ୍ର,
ହୃଦୁ ଶୋଭନା ମୋହନା ପୁରୁଷ ବଶୀକରଣୀ
ରସିକା ଶିରୋମଣ୍ଡନା ପ୍ରାଣେ ନ ମଉ,
ଭାଗ୍ୟ ଥିଲେ ଥିବ ଏମନ୍ତ,
୧୨୦ ହୋଇ ସଖୀମାନେ ଶୋକ କଲେ ସନ୍ତତ ॥୨୪॥

ରାଗ—( କେଦାର )

ମନସ୍ୱିନୀ କାମାର୍ଣ୍ଣବ ଜଳରେ ।
ମଦବତି ବୁଡ଼ିଅଛୁ ନର୍ଭରେ ॥ ୨୫ ॥

ଜାଣୁମଣି ସୁରଙ୍ଗ ଅପାଙ୍ଗିନୀ ।
ଯୋଗେଶ୍ୱର ଶିବ ଯୋଗ ଭଞ୍ଜନୀ ॥ ୨୬ ॥

୧୨୫ ରତିପତି ବଶ୍ୟଜସ୍ତ୍ର କେତନା ।
ଗୁଣାବଜ ଧଇର୍ଯ୍ୟ ବିନାଶିନୀ ॥ ୨୭ ॥

ଲାବଣ୍ୟହିଂ କେବଳ ହୋଇ ଶେଷ ।
ଲଳନା ଦେହେ କରିଛୁ ଆବାସ ॥ ୨୮ ॥

ବାସ୍ତ ବନ୍ଧବା ସମ୍ଭାବନା ଗଲା ।
୧୩୦ ବିଷୟାଦିମାନଙ୍କ ନବର୍ତ୍ତିଲା ॥ ୨୯ ॥

ଶଶିବଦନା ନବମ ଦଶାକୁ ।
ସବୁ ପ୍ରକାରେ ବଳଲା ମନକୁ ॥ ୩୦ ॥

ସଖୀମାନେ ଆଣିଲେ ନଟଶ୍ରୁ କରି ।
ଶିରେ ମାଇଲେ କର ଚାପ କରି ॥ ୩୧ ॥

୧୩୫ ସନ୍ତାପିତ ହୋଇ ସଖୀ ନକର ।
ସନ୍ତତରେ ଚେଜକଲେ ନେତ୍ର ମାର ॥ ୩୨ ॥

ହାସ ବେଶ ଅଶନ ପାସୋରିଲେ ।
ସ୍ୱଗବନ୍ତୀକ ଜଗିଣ ବସିଲେ ॥ ୩୩ ॥

କ୍ଷେମେ ଗୋକୁଳ ନରଇନ୍ଦ୍ର କହେ ।
୧୪୦ କ୍ଷୀଣୋଦଶ୍ରି ପଢ଼ନ୍ତୁ ମହାମୋହେ ॥ ୩୪ ॥

---

୧୩୬. ନେତ୍ର—ନେତ୍ର ।

**ଟୀକା :—**

[ ଚଉତିଶାଟି କୌଣସି କାବ୍ୟର ଅଂଶ ବିଶେଷ ହେବା ଅନୁମେୟ । ଯେଉଁ ପ୍ରକାରେ କଥାବସ୍ତୁର ଆବେଗର ଶୀର୍ଷାବସ୍ଥାରେ ଏହା ଏଠାରେ ସରିଛି ସେହିଭଳି ସମାପ୍ତି ସ୍ୱୟଂସମ୍ପୂର୍ଣ୍ଣ ରଚନାରେ ପ୍ରାଚୀନ ସାହିତ୍ୟରେ ବିରଳ । ]

୭. ଚୀନ—Silky, ସୂକ୍ଷ୍ମ ମସୃଣ ବସ୍ତ୍ରର ନାମ ଚୀନ; ବେଶ—ରୂପ, ସୌନ୍ଦର୍ଯ୍ୟ ।

୮. ଗରୁଡ଼ ମହାମଣି—ଗରୁଡ଼ାଶ୍ମ, ମରକତ ମଣି ।

୯. ଛମଣ୍ଟେ—ଅଳ୍ପକାଳ, କ୍ଷଣ, ରୂପାନ୍ତର, ଛମଚେ; ଛୀନ—କ୍ଷୀଣ, ପତଳା; ଛାମ—ମୂର୍ଚ୍ଛା ।

୧୦. ପାଂଶ୍ୱସ—ପ୍ରାସ ଶବ୍ଦଜ, ଅସ୍ତ୍ରବିଶେଷ, ପାରଦ, ପାରିଦ ସୁନାକୁ ନଷ୍ଟ କରିବା ଅର୍ଥ ସୂଚିତ ।

୧୨. ଠାଠିକ—ସୁନ୍ଦର; ଅସ—ଅସ୍ୱନ ।

୧୪. ତମାଳଅ—ବୃଥା ଗର୍ବୀ ।

୧୫. ଅଜାଗେ—ଅଚେତ ଅବସ୍ଥାରେ ।

୧୯. ସେ ଘେନ—ସେଥିପାଇଁ "ତୋ ଘେନ ତମାଳ ଶ୍ୟାମ ମୋ ମରଣ ବସିଲ ରେ"

୨୧. ପଦ୍ମ ପଙ୍କଜ ପଲ୍ଲଶେ—ବସ୍ତ୍ରାବୃତ ପଦ୍ମ ପତ୍ରରେ ।

୨୨. ଘାଇ—ଅଧିକ, ବହୁ ।

୨୪. ଭର୍ମି—ଭ୍ରମ; ଅଣୁକୋଦର—କ୍ଷୀଣୋଦରୀ ।

୨୭. କାଣୁମଣି—କାଗ୍ନା ।

୨୯. କବନ୍ଧିକ୍ଷ—କବନ୍ଧୀକ୍ଷ ।

୩୦. ନବମଦଶା—ମୂର୍ଚ୍ଛା ।

ପ୍ର: ୧୫

# ଜଣାଣ

ଅଚ୍ୟୁତାନନ୍ଦ ଦାସ

[ ଅଚ୍ୟୁତାନନ୍ଦ ଦାସ ନିଜକୁ ଚୈତନ୍ୟଙ୍କ ସମସାମୟିକ ବୋଲି ବହୁ ଗ୍ରନ୍ଥରେ ପ୍ରଚାର କରିଛନ୍ତି କିନ୍ତୁ ସେ ବାସ୍ତବରେ ଅଷ୍ଟାଦଶ ଶତାବ୍ଦୀର ବ୍ୟକ୍ତି ଥିବା ମୁଁ ଅନେକ ପ୍ରବନ୍ଧରେ ପ୍ରମାଣ କରିଅଛି । ନିଜ ପ୍ରବର୍ତ୍ତିତ ଧର୍ମଗୋଷ୍ଠୀର ପ୍ରସାର ଲାଗି ସେ 'ପଞ୍ଚସଖ, କଳ୍ପନାର ଉଦ୍‌ଭାବନ କଲେ ଏବଂ 'ମାଳିକା' ସାହିତ୍ୟକୁ ଶୁଭ ଦେଲେ । ତାଙ୍କ ଜନ୍ମ ଖ୍ରୀ ୧୭୧୭ରେ ହୋଇଥିବା କଥା 'ଉଦୟ କାହାଣୀ' ଗ୍ରନ୍ଥରେ ଠାରରେ ଲେଖାଅଛି । ଅଚ୍ୟୁତାନନ୍ଦ କଟକ ଜିଲ୍ଲା ତିଳକଣାରେ ଜନ୍ମଲାଭ କରି ସନ୍ୟାସୀଭାବେ ଦାରିଦ୍ର୍ୟ ଭୋଗ କରି କିଛିକାଳ କଟାଇବା ପରେ ଅଢ଼ଙ୍ଗର ରାଜା ଟେପୁରାମ ଚମ୍ପତିଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ଏ ଭାବେ ବିଖ୍ୟାତ ଯଶୋବନ୍ତ ଦାସ ତାଙ୍କର ପିଉସା ଶ୍ୱଶୁର । ଅଚ୍ୟୁତାନନ୍ଦ ପ୍ରଥମେ କେଉଟମାନଙ୍କୁ ଓ ପରେ ଗଉଡ଼ମାନଙ୍କୁ ସଂଗଠିତ କରି ସେମାନଙ୍କୁ ସାମାଜିକ ସ୍ତରରେ ଉନ୍ନତ କରାଇବା ଚେଷ୍ଟା କଲେ । ଶେଷ ଜୀବନରେ ନେମାଳଠାରେ ମଠ ସ୍ଥାପନ କରି ଗଉଡ଼ମାନଙ୍କର ପ୍ରଧାନ ଗୁରୁରୂପେ ପୂଜିତ ହେଲେ । ଅଚ୍ୟୁତାନନ୍ଦଙ୍କର ବହୁ ଗ୍ରନ୍ଥ ରହିଛି । ଓଡ଼ିଶାର ବୈଷ୍ଣବ ଧର୍ମ ନେଇ 'ଶୂନ୍ୟ ସଂହିତା' ଆଦି ତାଙ୍କର ରଚନା-ଗୁଡ଼ିକ ପ୍ରାମାଣ୍ୟ । ତାଙ୍କ ଶିଷ୍ୟ ପ୍ରଶିଷ୍ୟମାନେ ମଧ୍ୟ ତାଙ୍କ ନାମରେ ଭଣିତା ଦେଇ ଗୁଡ଼ିଏ ରଚନା ଲେଖିଯାଇଛନ୍ତି । ବର୍ତ୍ତମାନ ମଧ୍ୟ ଅଚ୍ୟୁତାନନ୍ଦଙ୍କ ନାମରେ ଗ୍ରନ୍ଥ ଲେଖା ଚାଲିଛି । ଅଚ୍ୟୁତାନନ୍ଦଙ୍କର 'ମିତଣୀ ଚଉତିଶା' ଓ ବୃତ୍ତିବୋଧ ଚଉତିଶା ଆଦି ଚଉତିଶା ମଧ୍ୟ ରହିଛି । ନିମ୍ନ ଜଣାଣଟିରେ ୩୪ଟି ବ୍ୟଞ୍ଜନ ବର୍ଣ୍ଣକୁ କ ଠାରୁ କ୍ଷ କ୍ରମରେ ବ୍ୟବହାର କରାଯାଇଛି କିନ୍ତୁ ଅକ୍ଷରର ସ୍ଥାନ ଧାରାବାହିକ ଭାବେ ନିର୍ଦ୍ଦିଷ୍ଟ ନୁହେଁ । ବର୍ଗର ଆଦ୍ୟ ଅକ୍ଷର ତଥା ଯ ଓ ଷ ଥରେ ଲେଖାଏ ଅଥଚ ଅନ୍ୟ ଅକ୍ଷର ଗୁଡ଼ିକ ଦୁଇବାର ବ୍ୟବହୃତ ହୋଇଛି । ]

କମଳମୁଖ ଶ- ଙ୍ଖ ଚକ୍ରଭୂଷଣ
ଖଗପତି ନାଥ ହରି,
ଖରେ ନ ଶୁଣିଲେ ଗାଢ଼ ବିପତ୍ତିକି
ଗଲିଣି ନଷ୍ଟହୋଇ ସରି,
୫ ଘନ ସୁନ୍ଦର ହେ, ଘୋର ବିପତ୍ତି ହୋଇଲା,
ଅନ୍ତର୍ଯ୍ୟାମୀ ଥାଇ ଅନ୍ଧବସ୍ଥ କଷ୍ଟ
ଅତିବ ପ୍ରବଳ ହେଲା ॥ ୧ ॥

ଚକ୍ର ଧରିଅଛ- ଦୁଃଖୀଙ୍କର ଦୁଃଖ
ଛେଦନ କରିବା ପାଇଁ,
୧୦ କ୍ଷିତି ମଧ୍ୟରେ ଜଂପୁ ବାନା ଉଡୁଛି
ଜଗତ ବଦିତ ହୋଇ, ପ୍ରଭୁ,
ଝଂକୃତି ଶୁଣିଲି ହେ, ଝାଡ଼ି ଗର୍ବ ଏଣା ଡାକ,
ନିଷ୍ଠୁର ହୋଇ ମୋ ଡାକ ନ ଶୁଣିଲା
ନଷ୍ଟହେବି ହୋଇଛି ହତ ॥ ୨ ॥

୧୫ ଟାଣ ବିଟପିରୁ ତାରି ପାଣ୍ଡବଙ୍କୁ
ଠାବ ଦେଇଣ ରଖିଲ,
ଠୁଳ ବଦନି ପ- ତ୍ନିଙ୍କୁ ଡାକିଲି
ଡାକ କର୍ଣ୍ଣେ ନ ଶୁଣିଲ,
ଢାଳେ କଷ୍ଟ ମୁଁ ଯେ, ନ ସହି ଢୋକଇ ବିଷ,
୨୦ ଆରତ ତାରଣ ବାନାକୁ ନେଇଣ
ଭଣ୍ଡାରେ ଲୁଚାଇ ଆସ ॥ ୩ ॥

ତୁମ୍ଭ ଆଗ୍ରେ କହି ଏ ଦୁଃଖ ନ ଗଲେ
ଥାଉ କାଆଗେ କହିବି,
ସ୍ଥିର ଲୋଚନେ କ୍ଷ- ଣେ ମାତ୍ର ଚାହିଁଲେ
୨୫ ଦୁଃଖ ଭୂଲିଚେ ଦହିବି,

୧୧. 'ପ୍ରଭୁ' ପଦଟି ଅଧିକା ଅଛି । ୧୨. ଡାକିଲି—ଡାକିଲି ।
୨୩. ଥାଉ—ଅଉ ।

ଧ୍ରୁବ ଖେଳରେ ହେ, ଅଂଧକୁ ଲୋଚନ ଦେଲ,
ଦ୍ଵୀପରେଖ ଜଳରେ ନିର୍ଦୟ ହୋଇଣ
ଗାତ୍ରେ ମଜ୍ଜନ ହୋଇଲ ॥ ୪ ॥

ପରମ ଦୟାଳୁ ପାଶେ ଥାଉ ଥାଉ
୩୦ ଫଳବ ନାହିଂ ଅଦୃଷ୍ଟ,
ପୂଜା କରିଅଛୁ ବନଜ ଚରଣ
ନାଶ ଯିବ ବହୁ କଷ୍ଟ,
ଭକ୍ତ ବତ୍ସଳ ହେ, ଭୃତ୍ୟ ନାଶଯିବ ଯେବେ,
ମଧୁସୂଦନ ନା- ମକୁ ମହାପ୍ରଭୁ
୩୫ କିଂପା ସଂସାରେ ଭଜବେ ॥ ୫ ॥

ଜଳ ମଧ୍ୟରେ ଡା- କଲା ଗଜରାଜ
ରକ୍ଷା କଲେ ଚକ୍ରଧର,
ରଖିଲ ଗ୍ରାହା ନା- ଶିଲ ଲକ୍ଷ୍ମୀସାଇଂ
ଲଜ୍ଜା ଦ୍ରୌପଦୀ ତାହର,
୪୦ ବଳ ବଧିଲ ଯେ, ବ୍ରାହ୍ମଣ ଉପାସ୍ୟେ କଲ,
ଶାସନ ସ୍ଵରୂ ସପନ୍ତ ପୁତ୍ର ଆଣି
ଗୁରୁଙ୍କ ସମୀପେ ଦେଲ ॥ ୬ ॥

ସେବା ଅଛୁ ପଦ୍ମ- ପାଦରେ ନିରତେ
ଶରଣ ପଶିଣ ମୁହିଂ,
୪୫ ସବୁ କଥାକୁ କରଛୁ ବଡ଼ ଆଶା
ହୃଦ ଦେଲେ ହେବ ନାହିଂ,
କ୍ଷଣେ ପାଇବ ଯେ, ଇନ୍ଦ୍ର ସମ୍ପତ୍ତିକ ହେଲେ
କ୍ଷିତି ମଧ୍ୟରେ ଅଚ୍ୟୁତାନନ୍ଦ ଦୁଃଖ
ଛେଦନ କର ଚକ୍ରରେ ॥ ୭ ॥

---

୩୧. ବନଜ—ବନୁଜ । ୪୮. କ୍ଷିତି—ଗୀତା; ଅଚ୍ୟୁତାନନ୍ଦ—ଅଚ୍ୟୁତାନନ୍ଦ।

ଟୀକା :—

୨. ଉଦ୍ୟେ—ଉଦ୍ୟ; ଖାଣ୍ଡ—ଖଣ୍ଡ; ଗର୍ଭା—ଗର୍ଭବତୀ; ଏଣୀ—ହରିଣୀ; ନଷ୍ଟଦ୍ୟେ—ନଷ୍ଟଦ୍ୟ ।

୩. ଠୁଳ—ସ୍ଥୁଳ ଶବ୍ଦଜ, ବିଶେଷ; ଡ଼ାଳେ—ନଷ୍ଟଦ୍ୟ ।

୪. ଅଗ୍ରେ—ଅଗ୍ରଦ୍ୟ; ନିରେଖ—ଅରକ୍ଷ ।

୫. ଫଳବ—ସଫଳ ହେବ; ଫନ୍ଦା—ଆଶ୍ରୟ ।

୬. ଗ୍ରାହ୍ଲା—ଗ୍ରାହ ଶବ୍ଦଜ, କୁମ୍ଭୀର; ବଳ—'ବାଳ' ହେବା ଅଧିକ ସଙ୍ଗତ । ଉପାଦ୍ୟେ—ଉପାଦ୍ୟ ।

ସଂ: ୧୬

# ଭଲମନ୍ଦ ଚଉତିଶା

ଦନାଇ ଦାସ

[ ସୁବିଖ୍ୟାତ ଗୋପୀଭାଷାର କବି ଦନାଇ ଦାସ ୧୮ଶ ଶତାବ୍ଦୀର ତୃତୀୟ ପାଦର ବ୍ୟକ୍ତି । ବାସସ୍ଥାନ ଖୋର୍ଦ୍ଧା ନିକଟ ସାନପଦର ବୋଲି ଶୁଣାଯାଏ । ସେ ଅନେକ ଗୁଡ଼ିଏ ଚଉତିଶା ଏବଂ କେତେକ ଆପ୍ରବଚନ ରଚନା କରିଛନ୍ତି । ଭଲମନ୍ଦ ଚଉତିଶା ଛଡ଼ା ତାଙ୍କର ବଡ଼ କନଡ଼ା, ସାନ-କନଡ଼ା ଓ ଉଦ୍ଧବ ଚଉତିଶା ନାମକ ଚଉତିଶାମାନ ମିଳୁଛି । ଛନ୍ଦ, ପଦସଂଖ୍ୟା ଓ ଉପଜୀବ୍ୟ ବିଷୟ ପ୍ରତ୍ୟେକ ଦୃଷ୍ଟିରୁ ଭଲମନ୍ଦ ଚଉତିଶା ଭଲି ରଚନା ଓଡ଼ିଆରେ ବିରଳ । ]

କୃଷ୍ଣଭକ୍ତ ଅଂଶ, କେତକୀର ବାସ, କୀରତିର ଯଶ,
କହିବା କଥା ହରଷ, ସଖି ଭଲ ଏ ॥ ୧ ॥

ସଖି ମନ୍ଦ କଏ,
କୁଥାନେ ବାସ, କାଲୁଆ ମନୁଷ୍ୟ, କଥା ପରିହାସ,
୫ କରିବା କଳୁଷ, ସଖି ମନ୍ଦ ଏ ॥ ୨ ॥

ସଖି ଭଲ କଏ,
ଖଟ ପଲଙ୍କ ସୁପାତି, ଖଟିଥିବ ଯୁବତୀ, ଖଣ୍ଡସାକର ଖାଉଥିବ ପ୍ରୀତି,
ଖିତିରେ ବଞ୍ଚିଥିବ ନିତି, ସଖି ଭଲ ଏ ॥ ୩ ॥

ଖୁଂଖୁଂଆଂ ଖାସ, ଖର ନିଶୁଆସ, ଖଳ ଲୋକେ ବିଶ୍ୱାସ,
୧୦ କ୍ଷଣକେ କରେ ନାଶ, ସଖି ମନ୍ଦ ଏ ॥ ୪ ॥

ଗୋବର୍ଦ୍ଧନର ନାମ, ଗଙ୍ଗାରେ ସ୍ନାନଦାନ, ଗୟାରେ ପିଣ୍ଡଦାନ,
ଗୌରବେ ସନମାନ, ସଖି ଭଲ ଏ ॥ ୫ ॥

ଗ୍ରାମ କୁଟବାଣୀ, ଗ୍ୟାଂନଷ୍ଟନ ପ୍ରାଣୀ, ଗୁପତ ଡାକ୍ତାଣୀ,
ଗାଧୋଇବା ପାଣି, ସଖି ମନ୍ଦ ଏ ॥ ୬ ॥

୧୫ ଘୋଟ ଚନ୍ଦନ, ଘୃତ ଘେନି ଭୋଜନ, ଘେନମା ସନମାନ,
ଘର ସିଦ୍ଧି ବଡଯଶ, ସଖି ଭଲ ଏ ॥ ୭ ॥

ଘୁମୁ ଘୁମିଯା ଜ୍ୱର, ଘୁଷୁରୀକୁଣ୍ଡଆ ଘର, ଘୋଡ଼ା ଅପାଇବନ୍ତକ
ଘରବୁଡ଼ା ଲୋକ, ସଖି ମନ୍ଦ ଏ ॥ ୮ ॥

ନିର୍ମଳ ଜଳ, ନୂତନ ଫଳ, ନିତ୍ୟ ସୁମଙ୍ଗଳ,
୨୦ ନବଯୁବା ସ୍ତ୍ରୀ କୁଳ, ସଖି ଭଲ ଏ ॥ ୯ ॥

ନିଲଜ ସ୍ତିରି, ନିସତ ପୁରୁଷ, ମାର ନଥିବା ପୋଷଣ,
ନିତ୍ୟ ଅଭ୍ୟାଗତ, ସଖି ମନ୍ଦ ଏ ॥ ୧୦ ॥

ଚଞ୍ଚଳ ଅଶ୍ୱ, ଚତୁର ପୁରୁଷ, ଚତୁଃସମ ବାସ,
ଚଉର ଉଲ୍ଲାସ, ସଖି ଭଲ ଏ ॥ ୧୧ ॥

୨୫ ଚୈତ୍ର ଉତ୍ତ ଦଣ୍ଡା, ଚକଣରେ ଘଣ୍ଟା, ଚଢାଇକ ଅଠା,
ଚକୁଳିଯା ପିଠା, ସଖି ମନ୍ଦ ଏ ॥ ୧୨ ॥

ଛଛନ୍ଦ ମନ, ଛଅ ପଲଙ୍କେ ଶୟନ, ଛତକେ ବ୍ରାହ୍ମଣକୁ ଭୋଜନ,
ଛଛନ୍ଦ ଦାନ ପୁଣ୍ୟ, ସଖି ଭଲ ଏ ॥ ୧୩ ॥

ଛେଚବାର ଗୁଆ, ଛନ୍ଦ କପଟ କ୍ରିୟା, ଛିଦ୍ର ବୁଦ୍ଧି ପାପିୟା,
୩୦ କ୍ଷଣ କ୍ଷଣକେ ମାୟା, ସଖି ମନ୍ଦ ଏ ॥ ୧୪ ॥

ଜଗନ୍ନାଥଙ୍କ ବାସ, ଯୁବା ବୟସ, ଜୁଆଳିୟା ନଶ,
ଜଗ ଖ୍ୟାତି ବାସ, ସଖି ଭଲ ଏ ॥ ୧୫ ॥

ଜନମନ୍ଦଂ କାଣ, ଜୋଡ ନଥିବା ଦର୍ପଣ, ଜ୍ୱରବେଳେ ଭୋଜନ,
ଜାରଜାଗିୟା ଜନ, ସଖି ମନ୍ଦ ଏ ॥ ୧୬ ॥

୩୫ ଝୀନ ବାସ ପଟନ, ଝଗଡ଼ ନଥିବା ପ୍ରାଣୀ, ଝାଲବେଳେ ବଞ୍ଚୁଣି,
ଝଙ୍କାର କୋକଳ ବାଣୀ, ସଖି ଭଲ ଏ ॥ ୧୭ ॥

ଝଗଡ଼ା ହେବା ପ୍ରାଣୀ, ଝାଟକାରେ ମାରେଣି, ଝାଡ଼ର ଡଙ୍କୁଣୀ,
ଝାଡ଼ୁ କରିବା ଗୁଞ୍ଜୁଣି, ସଖି ମନ୍ଦ ଏ ॥ ୧୮ ॥

ନୃସିଂହ ପୁରାଣ, ନରକୁ ଉଦ୍ଧାରଣ, ନରହରି ନାମ,
୪୦ ନନ୍ଦଘୋଷ ଦର୍ଶନ, ସଖି ଭଲ ଏ ॥ ୧୯ ॥

ନଗଣ ବଚନ, ନଶାରେ ଗମନ, ନତ୍ୟ ମଇଥୁନ,
ନ ଦେବାର ମନ, ସଖି ମନ୍ଦ ଏ ॥ ୨୦ ॥

ଟେକ କରି କନ୍ଧ, ଟେକ ଲୋକେ ପ୍ରିୟୁ; ଟଭ୍ରା ଆଖୁ ଦୋରୁଅ,
ଟଙ୍କଧର ସାଧୁ, ସଖି ଭଲ ଏ ॥ ୨୧ ॥

୪୫ ଟିପିଟିପି ବରଷଣ, ଟୋକାଙ୍କ ଖିରସାଣ, ଟୋକାଙ୍କ ଆଚରଣ,
ଟୋକାଙ୍କ ଘରଷଣ, ସଖି ମନ୍ଦ ଏ ॥ ୨୨ ॥

ଠାକୁର ସେବା, ଠିକରେ ଥିବା, ଠାକ ନ ଛାଡ଼ିବା,
ଠିକ କଥା କହିବା, ସଖି ଭଲ ଏ ॥ ୨୩ ॥

ଠକ ସଙ୍ଗେ ବେଭାର, ଠକକୁହା ଉତ୍ତର, ଠକ ପଣ ଲବାଡ଼,
୫୦ ଠିଆ ହୋଇ ବେଭାର, ସଖି ମନ୍ଦ ଏ ॥ ୨୪ ॥

ଡାକ ହାକ ସାରି ଶୁଆ, ଡାଳର ପାଚିଲା ଗୁଆ, ଡାକହାକ ଜଗୁଆ,
ଡଗର ସାହାସିଆ, ସଖି ଭଲ ଏ ॥ ୨୫ ॥

ଡଙ୍ଗର ଲୋକ, ଡିଆଁ କୋକ, ଡାମ୍ବର କାକ,
ଡାକ ଉପରେ ଡାକ, ସଖି ମନ୍ଦ ଏ ॥ ୨୬ ॥

୫୫ ଢେଉ ରହସ୍ୟ କଥା, ଢାଳେ ହେ ଅଚିନ୍ତା, ଢାଲ ରଙ୍ଗ ଛଟା,
ଢଳଢଳ ମୁକୁତା, ସଖି ଭଲ ଏ ॥ ୨୭ ॥

---

୪୩. ପ୍ରିୟୁ—ପ୍ରିଅ ।

ତଳବାର ମନ, ତମାଳିଆ ସଢ଼ ଋଣ, ତମାଳିଆ ଆଚରଣ,
ତମାଳିଆ ବଡପଣ, ସଖି ମନ୍ଦ ଏ ॥ ୨୮ ॥

ଅକ୍ରୋଧୀ ସାଆନ୍ତ, ଅଦୋଷୀ ଭୃତ୍ୟ, ଓପ୍ରୋଧ ବହୁତ,
୬୦ ଅନ୍ନ ବସ୍ତରେ ସୁସ୍ଥ, ସଖି ଭଲ ଏ ॥ ୨୯ ॥

ଅଣ ଉପକାରୀ, ଅଦୋଷେ ମାର, ଅଣପୁରୁଷ,
ଅନ୍ୟାୟେ ଦେଶ, ସଖି ମନ୍ଦ ଏ ॥ ୩୦ ॥

ତୃପ୍ତ ମନ, ଚଉଁ ବେଳେ ଭୋଜନ, ଚରଳ ନୟନ,
ତତପରେ (ଦେବା) ଶ୍ରବଣ, ସଖି ଭଲ ଏ ॥ ୩୧ ॥

୬୫ ତରୁତଳେ ବାସ, ତସ୍କରେ ଖ୍ୟାସ, ସ୍ତିରୀଙ୍କି ବିଶ୍ୱାସ,
ତାନ୍ତିବା ମନୁଷ୍ୟ, ସଖି ମନ୍ଦ ଏ ॥ ୩୨ ॥

ଥବିର ବଚନ, ଥିର ସାଧୁପଣ, [ ],
ଥୋଇବାର ଧନ, ସଖି ଭଲ ଏ ॥ ୩୩ ॥

ଥନସ୍ଥାନ ନାଶ, ଥରହର ଡର, ଥରହର ଦେହ,
୭୦ ଥୋଇଲା ମାଇପ ପୁଅ, ସଖି ମନ୍ଦ ଏ ॥ ୩୪ ॥

ଦଇବ ବଚନ, ଦରିଦ୍ରେ ଦାନ, ଦଧି ଘୃତ ଭୋଜନ,
ଦୋହ୍ନତାକୁ ପଣ୍ଡିଦାନ, ସଖି ଭଲ ଏ ॥ ୩୫ ॥

ଦରିଦ୍ର ପୁରୁଷ, ଦାସୀ ବଇରୀ; ଦୁଷ୍ଟ ଦଣ୍ଡଧାରୀ,
ଦଳଥିବା ପୋଖରୀ, ସଖି ମନ୍ଦ ଏ ॥ ୩୬ ॥

୭୫ ଧର୍ମ ଶାସ୍ତ୍ରରେ ସଭା, ଧର୍ମ କଥା ଶୁଣିବା, ଧୋବ ଶଳୁଳ ଲୁଗା,
ଧନ୍ଦା କଥା ନୋହିବା, ସଖି ଭଲ ଏ ॥ ୩୭ ॥

ଧନ୍ଦା କରଣ, ଧନ୍ଦା ଚଅଣ, ଧଡ଼ପଡ଼ପ୍ପା ମରଣ,
ଧୂକାର ବଚନ, ସଖି ମନ୍ଦ ଏ ॥ ୩୮ ॥

---

୫୮. ବଡପଣ—ବଡବପଣ । ୬୦. ଅନ୍ନବସ୍ତ୍ରରେ ସୁସ୍ଥ—ଅର୍ଣ୍ଣବସ୍ତ୍ରରେ ଶୁସ୍ତ ।
୬୭. ମନୁଷ୍ୟ—ମନୁଶ । ୭୪. ଦୁଷ୍ଟ—ଦୁଷ୍ଟ ।

ନାଗସୂଣଙ୍କ ଦେଉଳ, ନଡ଼ସ୍ପାର ଫଳ, ନର୍ମଳ ଜଳ;
୮୦ ନିଷ୍କଳଙ୍କ ଶରୀର, ସଖି ଭଲ ଏ ॥ ୭୯ ॥

ନଚ୍ୟ ଘରେ କଳି; ନଥିଲାରେ ଅଳି; ନଚ୍ୟରେ କରେ ଚୋର;
ନଡଗ୍ର ଦୋଷୁଶ, ସଖି ମନ୍ଦ ଏ ॥ ୮୦ ॥

ପାଚବାର ଗୁଆ, ପାଠ ଭଲିଆ ଶୁଆ, ପରକୁ ସୁଦୟା,
ପରସ୍ତ୍ରୀକ ନର୍ମାୟା, ସଖି ଭଲ ଏ ॥ ୮୧ ॥

୮୫ ପରବାସୀ ଲୋକ, ପରର ସେବକ, ପରଦାର ସୁଖ,
ପୁଷ ଅବବେକ, ସଖି ମନ୍ଦ ଏ ॥ ୮୨ ॥

ଫଗୁଣର ଦୋଳ, ଫୁଟିଲାର ଫୁଲ, ଫୁଲର କଉଳ,
ଫନ୍ଦା କଲ୍ପ ଟୁଲ, ସଖି ଭଲ ଏ ॥ ୮୩ ॥

ଫଳ ନଥାଇ ବୃଷ, ଫୁଟିଲା ତାରକ, ଫଳ ସେଞ୍ଚ ମାଚ,
୯୦ ଫୁଲା ଆଖି ଲୋକ, ସଖି ମନ୍ଦ ଏ ॥ ୮୪ ॥

ବସନ୍ତ ପବନ, ବାସିବା ଚନ୍ଦନ, ବାଲ୍ଲଭଙ୍କ ବଚନ,
ବଡଲୋକେ ସମ୍ମାନ ସଖି ଭଲ ଏ ॥ ୮୫ ॥

ବାଦୁଆ ସ୍ତ୍ରୀ, ବପରୀତ ପୁଷ, ବହୁତ ଲୋକେ ବୁଲି,
ବଶ୍ୱାସ ଘାତକ, ବଡମୁଣ୍ଡ ଲୋକ, ସଖି ମନ୍ଦ ଏ ॥ ୮୬ ॥

୯୫ ଭାଇ ସୋଦ୍ରମା ପଣ, ଭଗଜା ହିତ ଗୁଣ, ଭୋକବେଳେ ଭୋଜନ,
ଭଲ ଠାବେ ଶୟନ, ସଖି ଭଲ ଏ ॥ ୮୭ ॥

ଭ୍ରାନ୍ତ କଲା ମନ, ଭୁଲା ବଚନ, ଭଗାର ଋଣ,
ଭଣ୍ଡାରୀ ଖଣ୍ଡ ପଣ, ସଖି ମନ୍ଦ ଏ ॥ ୮୮ ॥

ମଙ୍ଗଳ ବାଦ୍ୟ ରସ, ମୈତ୍ରରେ ବଶ୍ୱାସ, ମନର ହରଷ,
୧୦୦ ମହାଜ୍ଞ ପୁରୁଷ; ସଖି ଭଲ ଏ ॥ ୮୯ ॥

---

୯୫. ସୋଦ୍ରମା—ସୁଦ୍ରମା ।

ମାଛି ମୁଣ୍ଡିଆ ପୁଅ, ମାଉଁଆ ଦେହ, ମଡ଼ହୁଛିଁଅ,
ମାଇଚେଲିଆ ପୁଅ, ସଖି ମନ୍ଦ ଏ ॥ ୫୦ ॥

ଜଗନ୍ନାଥଙ୍କୁ ଦର୍ଶନ, ଜୀବରେ ସୁଯୋଗ, ଜପତପ ଧ୍ୟାନ,
ଜଗତେ ଧନ୍ୟ ଧନ୍ୟ, ସଖି ଭଲ ଏ ॥ ୫୧ ॥

୧୦୫ ଜନମୁ ନପୁଂସକ, ଜଳକା ଲୋକ, ଜଳନ୍ତାରେ ଝାସ,
ଜଡ଼ା ଅବିବେକ, ସଖି ମନ୍ଦ ଏ ॥ ୫୨ ॥

ରାଜାଙ୍କ ନବର, ରତ୍ନ ଅଳଙ୍କାର, ରକ୍ତବର୍ଣ୍ଣ ନେତଗି,
ରଣେ ଆଗଭର, ସଖି ଭଲ ଏ ॥ ୫୩ ॥

ରୁଣ୍ଡିଆ ଗୃହ, ରଙ୍କ ମନୁଷ୍ୟ, ରଙ୍କ ପିଗୃଣ,
୧୧୦ ରକ୍ତରେ ବିଷ, ସଖି ମନ୍ଦ ଏ ॥ ୫୪ ॥

ଲକ୍ଷଣବନ୍ତ ପୁରୁଷ, ଲାଭର ଆଶ, ଲକ୍ଷ୍ମୀଙ୍କ କଟାକ୍ଷ,
ଲାଜଥିବା ମନୁଷ୍ୟ, ସଖି ଭଲ ଏ ॥ ୫୫ ॥

ଲଜ୍ୟା ନଥିବା ସ୍ତିରି, ଲୁଚ ଲୁଚ ଚୋର, ଲାଜ କଲ ଦାସି,
ଲକ୍ଷ ଲକ୍ଷ ଗୁହାରି, ସଖି ମନ୍ଦ ଏ ॥ ୫୬ ॥

୧୧୫ ବସିବାର ଘୃତ, ବଳବନ୍ତ ପୁତ୍ର, ବାପମାଙ୍କୁ ସ୍ନେହ,
ବଂଶ ଉଦ୍ଧାରଣ ପୁଅ, ସଖି ଭଲ ଏ ॥ ୫୭ ॥

ବ୍ୟାଧିକ ଅଚିନ୍ତ୍ୟା, ବୈଦ୍ୟଙ୍କୁ ବୋଲଣା, ବନ୍ଧୁରେ ମାଇକନା,
ବନେ ହରି ପ୍ରାଣ ଦେନା, ସଖି ମନ୍ଦ ଏ ॥ ୫୮ ॥

ଶ୍ରୀବନ୍ତ ଜନ, ସଞ୍ଚିତ ଧନ, ସଙ୍ଗତ ସ୍ଥାନ,
୧୨୦ ଶରଦ ଜହ୍ନ, ସଖି ଭଲ ଏ ॥ ୫୯ ॥

ସକାଳ ଭୋଗ, ସନ୍ଧ୍ୟାରୁଣିଆ ସୁଖ, ସତଛଡ଼ା ଲୋକ,
ସହଜେ ଅବିବେକ, ସଖି ମନ୍ଦ ଏ ॥ ୬୦ ॥

---

୧୧୫. ଘୃତ—ଘୃତ ।

ସକାଳେ ସ୍ନାହାନ, ଶୀଦ୍ରରେ ଭୋଜନ, ସ୍ୱପନେ ଭ୍ରମଣ,
ସଙ୍ଗତରେ ମନ, ସଖି ଭଲ ଏ ॥ ୬୧ ॥

୧୨୫ ଶ୍ୱଶୁର ଘରେ କଳି, ସର୍ବଲୋକେ ବୈର, ସବୁକାଳେ ଦୁରି,
ସଙ୍ଗୀତ ବେଳେ କଳି, ସଖି ମନ୍ଦ ଏ ॥ ୬୨ ॥

ଶୟନେ ଧ୍ୟାନ, ସ୍ୱପ୍ନେ ଦଧିଘୃତ ଭୋଜନ, ସମ୍ପତ୍ତି ବେଳେ ବିଚକ୍ଷଣ
ଶୟନରେ ମନ, ସଖି ଭଲ ଏ ॥ ୬୩ ॥

ସ୍ୱପ୍ନେ ମଇଥୁନ, ଶୟନେ ଅଚେତନ, ଶଙ୍ଖରେ ଅଭିମାନ,
୧୩୦ ସର୍ବଦାକାଳେ ନିଧନ, ସଖି ମନ୍ଦ ଏ ॥ ୬୪ ॥

ହରି ବୋଲ ଡାକ, ହରିର ସେବକ, ହରିନାମ ଶିକ୍ଷ,
ହରି ବୋଇଲେ ହରେ ଦୁଃଖ, ସଖି ଭଲ ଏ ॥ ୬୫ ॥

ହଉକରିଆ, ହୁଡ଼ିକୁରିଆ, ହଠନଟିଆ,
ହାସ ମଙ୍କୁଳିଆ, ସଖି ମନ୍ଦ ଏ ॥ ୬୬ ॥

୧୩୫ କ୍ଷେମାସାଗର ଲୋକ, କ୍ଷଣକେ ହରେ ଦୁଃଖ, କ୍ଷେମାଦୟାଳୁ ଜନ,
କ୍ଷଣକେ ଦୟା ଧର୍ମ, ସଖି ଭଲ ଏ ॥ ୬୭ ॥

କ୍ଷୀଣ ଦୁର୍ବଳ କଥା, ଛାଡ଼ିବାର ପରିଚା, ଛାଡ଼ିବା ମାଇପ କଥା,
କ୍ଷମେ ଦିନାଇଂ ଦାସ କହନ୍ତି ଏମାନ କଥା, ସଖି ମନ୍ଦ ଏ ॥୬୮॥

---

୧୨୩. ସକାଳେ—ଷଷକାଳେ । ୧୨୭. ଶୟନେ—ସ୍ୟୟନେ ।
୧୨୮. ଶୟନରେ—ସ୍ୟୟନରେ ।

## ଟୀକା :—

[ ପୋଥିରେ 'ଅ' ସ୍ଥଳେ ଅନେକସ୍ଥ ଯ୍ଯ ବ୍ୟବହୃତ ହୋଇଛି ]

୮. ଅସ୍ରାରବନ୍ତକ—ପାରେବା ପଣର ଅଭାବ ।
୧୦. ନିସତ—ଅଲର୍ସ୍ୟ, ଉସ୍ରାଦ୍ର ହୀନତା ।
୧୧. ଚତୁସମ—ଚତୁଃସମ, ଚନ୍ଦନ, ଅଗର, କସ୍ତୁରୀ ଓ କୁଙ୍କୁମ ।
୧୩. ଛଛନ୍ଦ—ସ୍ୱଚ୍ଛନ୍ଦ ।
୧୪. ଛୁଦ୍ରବୁଧି—କ୍ଷୁଦ୍ର ବୁଦ୍ଧି ।
୧୭. ଝଗଡ଼—ଜଞ୍ଜାଳ ।
୧୮. ଝାଟକାରେ—ହଠାତ୍, ଝଟିତି ଶବ୍ଦଜ ।
୧୯. ଦ୍ରଶନ—ଦର୍ଶନ ।
୨୧. ଟଙ୍କଧର—ଶିବ; ସାୟୁ—ସହାୟୁ ।
୨୨. ଖିରସାଣ—ହେସ୍ପାରବ; ଘଋଷଣ—ବଳାତ୍କାର, ଘର୍ଷଣ ଶବ୍ଦଜ ।
୨୪. ଲବାଡ଼—ଲମ୍ପଟ; ବେଭାର—କାରବାର, ରୀତି ।
୨୬. ଡାମ୍ବର—ଡାମର ।
୨୭. ଢ଼ାଉ—ଗେରୁ ।
୨୯. ଓପ୍ରୋଧ—ଉପରୋଧ ।
୩୧. ତଥ୍ୟ—ଯଥାର୍ଥ ।
୪୪. ଦାରାକ୍ଷ—ଦ୍ରାକ୍ଷା ।
୪୭. ସୋଦ୍ରମା—ଭ୍ରାତୃତ୍ୱ ଭାବ, ସୋଦରମା ଶବ୍ଦଜ ।
୪୯. ମୈତ୍ର—ମିତ୍ର ।
୫୦. ମତ୍ସଛୀ—ଯାହାର ସନ୍ତାନ ସମସ୍ତେ ମରିଯାନ୍ତି ।
୫୪. ରଣୁଆ ଗୃଷ—ଫସଲ ବଢାଇଦେଇ ରଣ ଅଣି ଗୃଷ, ପିସୁଣ—ପିଶାଚ ।
୬୭. ହାସ ମଙ୍ଗୁଳିଆ—ପରିହାସରେ ଯେ ସମସ୍ତଙ୍କୁ ମଙ୍ଗୁଳି ଦଏ ଅର୍ଥାତ୍ ଅଶୌଚ କରାଇ ଦଏ ।

ସଂ: ୧୨

# ହଂସ ଚଉତିଶା

## (ପୋଥିପାଠ :—ଉଲୁଟ ହଂସ ଚଉତିଶା)

ଶ୍ୟାମଘନ

[ କବିଙ୍କ ପରିଚୟ ଅଜ୍ଞାତ । ଭାଷା ବିଶ୍ଳେଷଣରୁ ତାଙ୍କ କାଳ ଅଷ୍ଟାଦଶ ଶତାବ୍ଦୀର ତୃତୀୟ ପାଦ ପୂର୍ବର ନୁହେ ବୋଲି ଅନୁମାନ ହୁଏ । ପୂର୍ବରୁ ଏହାର ଅନ୍ୟ ଏକ ପାଠ ହଂସଦୂତ ଚଉତିଶା ନାମରେ ଗୋବିନ୍ଦ ରଥଙ୍କ ଦ୍ୱାରା ପ୍ରକାଶିତ ହୋଇଛି । ଗବେଷକଙ୍କ ସୁବିଧା ପାଇଁ ମୋଟାରେ ଥିବା ପୋଥିର ପାଠ ନିମ୍ନରେ ଦେଉଛୁ । କ୍ଷ ଠାରୁ କ ଯାଏଁ ବର୍ଣ୍ଣମାଳାର ବିପରୀତ କ୍ରମ ଏଥିରେ ଅନୁସୃତ ହୋଇଛି । ଏ ପ୍ରକାର ଉଲଟ ରୀତିର ଅନ୍ୟ ଚଉତିଶା ମିଳୁନଥିବା ହେତୁ ପ୍ରକାଶିତ ଚଉତିଶାର ପାଠାନ୍ତର ଦିଆଗଲା । ]

( ରାଗ—ଓଡ଼ିଶା କାମୋଦି )

କ୍ଷୀରୋଦଧି-ସୁତା-ପତି ପତିତ ଜନ ଗତି
ରତିପତିରେ ମତି ଭଳି,
କ୍ଷପାକର ବଦନୀ କୁନ୍ଦରଦନୀ ବୃଷ-
ଭାନୁ ନନ୍ଦନୀ ଗୁଣ ଗୁଣି ସେ,

୫ ବନମାଳି, ଛଛନ୍ଦେ* ବନେ ମଧୁପୁରେ,
କ୍ଷୀରୋଦ ସମ ମଣ୍ଡୋପରେ,
କ୍ଷପାକର କରଣ କୁସୁମ କନକାରେ
ଏମନ୍ତେ ବସିର ମନରେ ସେ ॥ ୧ ॥

---

*. ଛଛନ୍ଦେ—ସ୍ୱଚ୍ଛନ୍ଦେ ।

ହରିଣ ବଲ୍ଲଭନା                    ମତ୍ତ ପିକ ବଚନା
୧୦          ଶୁଣ ମୁରେ ଏ ମୋର ବେଦନା,
ହୋଇ ଏକାନ୍ତ କାନ୍ତ-              ଉଦନ୍ତ କାନ୍ତା ଆଗେ
କେହୁ କହିବ ନିବେଦନା ସେ,
ବନମାଳ, ହୃଦରେ ବସୁରି ଏମନ୍ତ,
ହଂସକୁ ଦେଖିଲେ ଅଗ୍ରତ,
୧୫  ହୋଇ ହରଷ ହଂସ-              ରମଣୀଙ୍କ ଉଦେଶ
କହନ୍ତି ଏମନ୍ତ ଉଦନ୍ତ ସେ ॥ ୨ ॥

ଶାତକୁମ୍ଭ ବରଣୀ                  ବର ସୁଘନ ସ୍ତନୀ
ତ୍ରିପୁରହର ଯୋଗେଶ୍ୱରୀ,
ସଙ୍ଗ ବହ୍ନିନେ ଫଣି-              ବଦନୀ ସୁରଦନୀ
୨୦          ସୁଭଙ୍ଗ ତରଙ୍ଗ ଅପାଙ୍ଗୀ ସେ,
ଆହେ ହଂସ, ସହିତ ସାହିତ୍ୟ ପଠନୀ,
ସୁରେନ୍ଦ୍ର କରୀନ୍ଦ୍ର ଗମନୀ,
ସାର ସାରସ ନେତ୍ର               ସାରସଦଳ ନେତ୍ରୀ
ଶୁଚିର ରୁଚିର ବସନୀ ସେ ॥ ୩ ॥

୨୫  ଶୁଣ ସାରସ ଉସ-              ବଣର ଆଗେ ବେଗେ
କହିବ ଏ ମୋର ବେଦନ,
ଶିଶୁ କାଳରୁ ପ୍ରାଣ-              ବାନ୍ଧବୀ ସଙ୍ଗ ବନ୍ଧୁ
ବନେ ମୁଁ ନ ଜାଣଇ ଆନ ହେ,
ଆହେ ହଂସ, ସଜନୀ ଜୀବନ ମୋହର,
୩୦          ସେ ଏବେ ହୋଇଲା ଅନ୍ତର,
ସୁମନସର ଶର                    ଶମ୍ବରେ ନିରନ୍ତର
ବର୍ଷାଇ କରୁଛି ପ୍ରହାର ସେ ॥ ୪ ॥

---

୧୧. କାନ୍ତ ଉଦନ୍ତ କାନ୍ତା—କାନ୍ତା କାନ୍ତଉଦନ୍ତ । ୧୭. ସ୍ତନୀ—ସ୍ତନ । ୧୮. ତ୍ରିପୁରପର—ତ୍ରିପୁରହର । ୨୦. ସୁଭଙ୍ଗ ତରଙ୍ଗ—ସୁଭଙ୍ଗିତରଙ୍ଗି; ଅପାଙ୍ଗୀ—ଅପାଙ୍ଗି (ସ୍ୱଚ୍ଛ) । ୨୧. ସାହିତ୍ୟ—ସାହିତ । ୨୬. ବେଦନ—ବେଦନା । ୩୧. ଶମ୍ବରେ—ସ୍ୱୟଂରେ ।

ଶିବ ଶିବର ନାମ ଦାରୁଣ କାମବାଣ
ଉସ୍ମରୁ ନଉଛେ ଜପୁଛୁ,
୩୫ ସୁମତ୍ରି ଗଜପତ ଗୁଣି ଗତ ସୁରତ
ଜୀବନ ମୋର ଟଙ୍କେ ଅଛୁ ହେ,
ଆହେ ହଂସ, ସମ୍ପୂର୍ଣ୍ଣ ଶରଦ ଚନ୍ଦ୍ରମା,
ସୁମୁଖୀ ମୁଖକୁ ଉପମା,
ସେ କାଳ ହେବ ଯେବେ ତେଜ କୁରଙ୍ଗୀ ନେତ୍ର
୪୦ କେକ ଧରିବ ତାଙ୍କ ସୀମା ହେ ॥ ୫ ॥

ବିକସିତ ନଳୀନ- ନୟନା ମୋ ବରହେ
ରତ୍ନ ବସିଣ ଝୁରୁଥିବ,
ବିଶୁକେତନ ପାଶ ସମ ରମଣୀମଣି
ମଣିମାଳାକୁ ମଣୁଥିବ ହେ,
୪୫ ଆହେ ହଂସ, ବନ୍ଧୁ ମୁଖ ନଦେଖି ତାର,
ବିକଳ ହୋଉଛୁ ଶରୀର,
ବରାଙ୍ଗୀ ଉରଙ୍ଗୀ ନୟନ ଭଙ୍ଗିମାରେ
କଣିଛୁ ଜୀବନ ମୋହର ହେ ॥ ୬ ॥

ଲକ୍ଷ୍ୟ କରିଣ ଲକ୍ଷ- ଲକ୍ଷ ବାଣକୁ ପଞ୍ଚ-
୫୦ ବାଣ ତା ଅଙ୍ଗ କରିଥିବ,
ଲଳନା ଲଲାମ ଯେ ଗୁଣି ଗତ ସୁରତ
ରତ ସକଳ ତେଜୁଥିବ ସେ,
ଆହେ ହଂସ, ଲଜ୍ଜିଳ ବୟସୀ ମୋ ବାଳା,
ଲୀଳା ଲବନ୍ୟ ପ୍ରେମଶୀଳା,
୫୫ ଲବଣୀ ପିତୁଳା ସେ ଗଳାମାଳା ଅବଳା
କାମସିନ୍ଧୁ ତରଣେ ଭେଳା ହେ ॥ ୭ ॥

---

୩୪. ଜପୁଛୁ—ଯାଚୁଛୁ । ୩୫. ସୁମତ୍ରି—ସୁମତ । ୩୯. ନେତ୍ର—ନେତ୍ରି । ୪୧. ନଳୀନ—ନଳଣ । ୪୩. ରମଣୀମଣି—ରମଣମଣି । ୪୬. ଶରୀର—ସ୍ୱୀରର । ୪୯. ଲକ୍ଷ୍ୟ—ଲଛ; ଲକ୍ଷ ଲକ୍ଷ—ଲଛ ଲଛ । ୫୧. ଲଳନା—ଲେଲନା । ୫୨. ସକଳ—ସଖଲ । ୫୪. ଲବନ୍ୟ—ଲବାନ୍ୟ ।

ରଣରଣ କରଣ          ରଙ୍ଗେ ଅଙ୍ଗନା ଅଙ୍ଗ
କରଇ ଯେତେ ଯେତେ ଭଙ୍ଗି,
ରହିଛି ଜୀବ କପା          ସେ ଗୁଣଗୁଣି ତାହି
ଆହା ସେ ହରଯୋଗଭଙ୍ଗୀ ହେ,
ଆହେ ହଂସ, ରଙ୍ଗେ ସେ ତାଳଇ ନୟନ,
ରଖଇ ନାହିଁ ସ୍ଥିରେ ମନ,
ରହୁ ସଂସାରେ ଖ୍ୟାତି          ରମାରତନ ଲଗି
ତେଜିବ ଏ ମୋର ଜୀବନ ହେ ॥ ୮ ॥

୬୫ ଯାମିନୀ ଯାମ ଯୁଗ          ସମାନ ମଣୁଥିବ
ଜଗତ ରମଣୀର ମଣି,
ଜୀବନଜୀବ ମାର          ନୟନୁ ତେଜୁଥିବ
ନଭେ ନରେଶ ନଶାମଣି ହେ,
ଆହେ ହଂସ, ଯୋଗୀନ୍ଦ୍ର ନାମ ଜପୁଥିବ,
୭୦ ଜୀବନ ଏଣୁ ଅବା ଥିବ,
ଜାମ୍ବୁନଦ ବରମା          ବର ମାରଜମୁଖୀ
ସଖୀ ଦୁଖିତ ହୋଇ ଥିବ ହେ ॥ ୯ ॥

ମହୀଖଣ୍ଡ ମଣ୍ଡଳ          ମଣ୍ଡମା କ ଅଙ୍କରେ
ଥିବ ମଣ୍ଡନମାନ ତାର,
୭୫ ମନ୍ଦଗମନା ମନ୍ଦ-          ମନ୍ଦ ମନ୍ଦତନୟ
ନାଦେ ମଣୁଥିବ ବକାର ହେ,
ଆହେ ହଂସ, ମୀନକେତନକୁ ଛନଛନ
ମୀନ ନେତ୍ରାର ହେବ ମନ
ମନ୍ଦ୍ରତ ମନ୍ଦ୍ରତ ମ-          ନ୍ଥୁ ତ ମରୁଳ ନେତ୍ରା
୮୦ ତ୍ରାସୁଥିବ ଏଣୁ ଜୀବନହେ ॥ ୧୦ ॥

---

୬୧. ରଙ୍ଗେ—ରଙ୍ଗେ । ୬୫. ଯାମିନୀ—ଯାମନ । ୬୮. ନଭେ—ନରେ ।
୭୧. ଜାମ୍ବୁନଦ—ଜମ୍ବୁନଦ । ୭୩. ମହୀଖଣ୍ଡ ମଣ୍ଡଳ—ମହମଣ୍ଡ ମଣ୍ଡଳ ।
୭୬. ମୀନକେତନକୁ ଛନଛନ—ମିନସଗତେ ଛନଛନ ।

ଉଦ[ବଷ୍ଣ ର]ଭିର ଛଡିର ଛାର ବଶେ
ଅବଶ୍ୟ ବସି ଝୁରୁଥିବ,
ଘଡେକମ ଘଡେକ ନର- ନ୍ତର ଅନ୍ତର ମଚେ
ନେତ୍ରୁ ଲୋତକ ମୁଞ୍ଚୁଥିବ ହେ,
୮୫ ଆହେ ହଂସ, ଉନ ହେଲା ସେ ଚନ୍ଦ୍ରମୁହଂୀ,
ଭ୍ରନ ନୋହୁଚ ଜପା ଦେଖ୍ଯ,
ଭଲ୍ଲ ବଧାରା ଚେଷ୍ଟେ ଘର ଉର୍ଗିବ ବେଳି
ବର୍ହିର କରୁଥିଲା କାହ୍ନଂ ହେ ॥ ୧୧ ॥

ବଧି ବଧାନ ଯେକ ଏକାକମ ସେ ଧମ
୯୦ ବଯୋଗ ନପାରଇ ସହ୍ବ,
ବନ ବନ ଅଧାର ଧରଧର ମଧ୍ୟରେ
ଦେଖ ତ ଏବେ ଅଚ୍ଛୁ ରହ୍ବ ହେ,
ଆହେ ହଂସ, ବଛେଦ ହେଲା ସେ ସୁକେଶୀ,
ବଞ୍ଚୁଥିବ କେମନ୍ତେ ନଶି,
୯୫ ବଷମ ବଷ୍ଣୁଧର ବଷ ସମାନ ମଣୁ
ଥିବ ସେ ବନପ୍ରିୟୁ ଭାଷୀ ହେ ॥ ୧୨ ॥

ଫୁଲ୍ଲବାସଚଚ ଚ ଫୁଟେ ବାସନ୍ତୀ ଅଭ
ଦେଖିଲେ ମନ୍ତ କରେ ଧ୍ୱଂସ,
ଫାଇ ଅଶୋକ ଶୋକ ସୁକନେକ କରମ
୧୦୦ ବଚୁନେ ହରଇ ମାନସ ହେ,
ଆହେ ହଂସ, ଫାଟି ଯାଉଛୁ ମୋର ଅଙ୍ଗ
ଘୂରୁଣା ହରୁଛୁ ଅନଙ୍ଗ

---

୮୧. ବଶେ—ବଶ୍ୟ । ୮୪. ନେତ୍ରୁ—ନେତ୍ର । ୮୯. ଯେକ ଏକାକମ ସେ—ଯେକନ୍ୟେକକାକନ । ୯୫. ବଷମ ବଷଧର ବଷ ସମାନ—ବସଦ ବସ ବସଧର ସମାନ୍ୟ । ୯୬. ବନପ୍ରିୟୁ—ବନପ୍ରିଅ । ୯୭. ଫୁଲ୍ଲବାସତତ ତ—ଫୁଲ୍ଲବାସଭ ତଭ । ୯୮. ଧ୍ୱଂସ—ଧଂସ ।

ସ୍ଫୀତ ନିତମ୍ବ ବିମ୍ବ ଦେଖି ତାହାର ଦର୍
ଯୋଗୀନ୍ଦ୍ର ହେଲେ ହେବ ଭଙ୍ଗ ॥ ୧୩ ॥

୧୦୫ ପ୍ରସୂନଶର ଶର ଶ୍ରେଣୀର ସଉସରେ
ସରସିଜ ନୟନା ସଖୀ,
ପଡ଼ିଥିବ ଥିକନ ଶସ୍ପରେ ଗ୍ୟାନ ତାର
ତାର ତାରକାପତି ମୁଖୀ ହେ,
ଅହେ ହଂସ, ପିତା ପିନାକୀ ଯୋଗଭଙ୍ଗୀ
୧୧୦ ପେସଳ ଚରଳ ଅପାଙ୍ଗୀ
ପ୍ରସୂନଧନୁ ଧନୁ ନନ୍ଦଇ ଖରୁ ଭୃଙ୍ଗ
ଭ୍ରୂରୁ ଶୋଭନ ନେତ୍ର ଭଙ୍ଗି ॥ ୧୪ ॥

ନବ ନଆଳୀଆଳି ଦେଖିଲେ ବାଳୀ ବାଳୀ
ଅଙ୍କରେ ଢଳି ପଡ଼ୁଥିବ,
୧୧୫ ନବ ସୁରତ ରତ ଭଳି ଭଳି ସଜନୀ
ରଜନୀ କେମନ୍ତ ବଞ୍ଚିବ ହେ,
ଆହେ ହଂସ, ନଶାରେ ନଶାକର କରେ,
ନର୍ମଳ ଚତ୍ୱରେ ସତ୍ୱରେ,
ନଧାନ କର ଯତ୍ନଂ ବିଧାନ କର ରତି
୧୨୦ ନାହ୍ନଂକ ଏବେ ତା ମନରେ ହେ ॥ ୧୫ ॥

ଧର ଜୀବନ କଷ୍ଟେ କଷ୍ଟେ ଅଦୃଷ୍ଟେ ଯେବେ
ସଭ୍ରଷ୍ଟେ ନଷ୍ଟେ ମହାପୃଷ୍ଟେ,
ଧର୍ମନାଶମାଧର୍ମ ମଦନେ ଥିବ ଜଡ଼
ରଙ୍ଗ ରଜକ ବମ୍ଭୃଷ୍ଟେ ହେ,

---

୧୦୩. ସ୍ଫୀତ ନିତମ୍ବ—ଫତନିତମ୍ବ; ଦର୍—ଦୂର । ୧୦୫. ପ୍ରସୂନଶର—ପ୍ରସୂନାସର । ୧୦୭. ଶସ୍ପରେ—ସ୍ୟରରେ । ୧୧୦. ପେସଳ—ପ୍ରେଷଳ । ୧୧୧. ଖିରୁ—ଦୂର । ୧୧୮. ଚତ୍ୱରେ ସତ୍ୱରେ—ଚତ୍ୱର ସପ୍ତରେ । ୧୨୨. ନଷ୍ଟେ ମହାପୃଷ୍ଟେ—ନଷ୍ଟେ ମହାପୃଷ୍ଟେ । ୧୨୪. ବମ୍ଭୃଷ୍ଟେ—ବମ୍ଭୃଷ୍ଟି ।

୧୨୫ ଆହେ ହଂସ, ଧୂର୍ଜଟି ଧର୍ଯ୍ୟ ଧୃତି ଧ୍ୱଂସୀ,
ଝଙ୍କାର କରେ ଗତି ହଂସୀ,
ଧବଳକରଧର— ପର ଶର ସକଳ
ଶସ୍ତ୍ରେ ମାରୁଅଛୁ ତ୍ରାସି ହେ ॥ ୧୬ ॥

ଦଗଧ ଶାତକୁମ୍ଭ କୁମ୍ଭ ଦମ୍ଭ ନାଶମ୍ମ
୧୩୦ ଯାହାର କୁଚକୁମ୍ଭ ବିମ୍ବ,
ଦର୍ପକର ଦର୍ପଣ ଦର୍ପ ହରଣ ଗଣ୍ଡେ
ମଣ୍ଡିତ ପତ୍ରକ କଦମ୍ବ ହେ,
ଆହେ ହଂସ, ଦେହ ଅଦେହ ମୋହେ ତାର,
ଦିଶୁ ସେ ଥିବ ଅସୁନ୍ଦର,
୧୩୫ ଦିବସ ଶେଷ କାଳେ କଇଁର ମାନମାନ
ଶଶାଙ୍କ ବଦନ ତାହାର ହେ ॥ ୧୭ ॥

ଥୂଳ କୁଚକୁମ୍ଭକୁ ନେତ୍ର ଅମ୍ବୁରେ କରି
କରି ସେ ଥିବ ଅଭିଷେକ,
ଥିର ମଦନ ଜଳେ ବୁଡ଼ଣ ଥରଥର
୧୪୦ ହୋଇ ହାରୁଥିବ ବିବେକ ହେ,
ଆହେ ହଂସ, ଥିବ କି ଜୀବନ ତାହାର,
ଥିବ କି କଣ୍ଠତଟେ ହାର,
ଥିବ କି ମୁଖେ ହାସ ଥିବ କି ଅଙ୍ଗେ ବାସ
ଥିବ କି ଗମନ ବେହାର ହେ ॥ ୧୮ ॥

୧୪୫ ତପସ୍ୟାବଶୁ ପଶୁ- ପତି ଆଦେଶୁ ମନେ
ମନମୋହିନୀ ଭଜିଥିଲି,

---

୧୨୫. ଧ୍ୱଂସୀ—ଧ୍ୱଂସି । ୧୨୮. ପର ଶର ସକଳ—ସକଳ ଅନ୍ତର ।
୧୩୦. କୁଚକୁମ୍ଭବିମ୍ବ—କଚକୁମ୍ଭବିମ୍ବ । ୧୩୨. ପତ୍ରକ କଦମ୍ବ—ପୁଲକ କଦମ୍ବ ।
୧୩୫. କାଳେ...ଶଶାଙ୍କ—ସମମାନମାନଙ୍କ କାଳେ କରୁଛ । ୧୪୫. ପଶୁପତି—ପ୍ରସୂପତି; ମନେ—ମନ ।

ତପ କ୍ଷୀଣ ଫଳରୁ                    ରୁରୁ ଶାବକାକ୍ଷିଙ୍କ
ଆକ୍ଷିରେ ଦେଖି ନ ପାରିଲି ହେ,
ଆହେ ହଂସ, ଭୃଙ୍ଗ ନବଢ଼ ସ୍ତନ ତାର,
୧୫୦ ତରଳ ଦେଖି ହେବେ ହର,
ତାକୁ ତେଜିଲା ଦନୁ                    ଦନୁ ଅତନୁ ତନୁ
ତନୁକୁ କରୁଅଛୁ ମୋର ହେ ॥ ୧୯ ॥

ଏ ମୋର ତନୁ ଘନୁ                    ଘନରସ କପାଇ
ସୁତନୁ ସୁତନୁ ବନରେ,
୧୫୫ ଅତନୁ କୃଶାନୁରେ                    ଲାଗିଣ ପ୍ରାଣ ଏଣ
ତାପୁଣ ଥିବ ସେ ନଭରେ ହେ,
ଆହେ ହଂସ, ଅମଳ ତାର କଳେବର,
ଏଣୁ ସେ ବଡ଼ ଭସ୍ମଭର
ଅବଶ୍ୟ କୁଚକୋକ                    ତେଜୁଥିବନ୍ତି ଆଳୀ
୧୬୦ ପ୍ରେମାଳ କଳଙ୍କ କାସ୍ତୁର ହେ ॥ ୨୦ ॥

ଢାଳି ସୁଗନ୍ଧ ଗନ୍ଧ                    ଗୋଳି ଚନ୍ଦନ ଚନ୍ଦ୍ର,
ମନ୍ଦ ଗମନା ସଖୀମାନେ,
ଢାଳେ ଅଙ୍ଗରେ ତାର                    ଲେପନ୍ତେ ମାର ଜ୍ୱରେ
ଶୁଖି ସେ ଉଡ଼ିବ ପବନେ ହେ,
୧୬୫ ଆହେ ହଂସ, ଢାଳି ସେ ନୟନେ ଶୃଙ୍ଖଂଳେ,
ଉଳକ ମୁନି ମନ ହେଲେ,
ଢଳ କମଳମୁଖୀ                    ସଖୀ ଅଙ୍ଗରେ ପଡ଼
ଥିବ ସେ ମାନସ ଆକୁଳେ ହେ ॥ ୨୧ ॥

ଡୋଳା ପିତୁଳା ତୁଳା-                    ବଣିରେ ଆସି ମନ-
ସିଜ ହୁତାଶ ଲଗିଥିବ,

---

୧୪୭. ଶାବକାକ୍ଷି—ସାଚକାକ୍ଷି । ୧୪୯. ସ୍ତନ—ସ୍ଥନ । ୧୫୭. ଢଳେବର—ନାଭସ୍ଥର । ୧୪୮. ଏଣୁ—ପ୍ରାଣୁ ।

ତମ୍ବୁରୁ ମଧ୍ୟ ସଖୀ-　　　　ଗୀତ ବଚନାମୃତେ
କେତେ ବା ଶୀତଳ ଲଭିବ ହେ,
ଆହେ ହଂସ, ଉତ୍କଳ ହାଟକ କଟକ,
ଉପରି ଥିବେ ଯେତେ ତଙ୍କ
୧୭୫ ଉନ୍ମଦନ୍ତୀ ଦନ୍ତୀ-　　　　ପତିଗତି ମୋ ଅତି
ମତ୍ତ ହୋଇଥିବ ସଶଙ୍କ ହେ ॥ ୨୨ ॥

ଟିକେ ସରଳଲସା　　　　ସାଙ୍ଗ ମାନସ କସେ
ଦେଖିବୁ ମାନସସଦନ,
ଠାଟିକ ତାମରସ　　　　ବହୁନେ ଶୁଭ୍ର ପୟୋ-
୧୮୦ ଧର ହସୁଥିବ ଶୋଭନ ହେ,
ଆହେ ହଂସ, ଠଣ କନକକଣ୍ଠ ନାଦସ,
ତୁଙ୍ଗ ଜନମାନ କ୍ଷୋଭସ,
ଠଣ ନର୍ମନ ତାର　　　　ନଶାକର ମଣ୍ଡପେ
ହୋଇ ଯେ ଥିବ ହସଜସ ହେ ॥ ୨୩ ॥

୧୮୫ ଟେକ ବଦନଂ ବମ୍ବ　　　　ସମ୍ଭାର କୁଚକୁମ୍ଭ
ପରେ ତ ଅମ୍ବୁ ଗଙ୍ଗାଧାର,
ଟେକ ମଳୟଜ　　　　ଶ୍ରୀ ଭସ୍ମ ମୃନାଳଜ
ବ୍ୟାଳେ ହସୁଥିବ ରୁଚିର ହେ,
ଆହେ ହଂସ, ଟାଣଙ୍କ ଛିଦ୍ର ତାର ମାର,
୧୯୦ ଟାଣେ କରୁଥିବ ପ୍ରହାର,
ଟେକ ମଧୁ ବଲ୍ଲଳ　　　　ବସନ୍ତ ଶାଖା ଯାଇ
ଏଣେ ହୋଇବ ରସଭର ହେ ॥ ୨୪ ॥

---

୧୭୧. ସଖୀବ୍ରଜ—ସଖିସାଜ । ୧୭୬. ସଶଙ୍କ—ସସାଂଙ୍କ । ୧୭୭. ସାର—ମାନ । ୧୭୮. ମାନସ ସଦନ—ମାନସ ସଦନେ । ୧୭୯. ତାମରସ—ତାମ୍ରରସ; ପୟୋଧର—ପୋୟୁଧର । ୧୮୩. ମଣ୍ଡପେ—ମଣ୍ଡଳେ । ୧୮୫. ବମ୍ବ—ବିମ୍ବ; କୁମ୍ଭ—କୁମ୍ଭ ।

ନବୀନ କଶୋଗୀକ                ସନ୍ଧ୍ୟାକାଳ ସମାନ୍ୟ
କରିଣ ଦେଖିବୁ ସଭିଏ,
୧୯୫ ନଳନମୁଖ ତାର                ମଳନ ଭଜୁଥିବ
ଶୁଭ ନକ୍ଷତ୍ରମାଳ ସାର ହେ,
ଆହେ ହଂସ, ନଥିବ ପ୍ରଭାକର ଜାଣ,
ନଷ୍ଟେ ବକ୍ଷଯୁଗଳ ସ୍ତନ,
ନବ ବରହ୍ନି ପ୍ରେମ-                ଘଜ ନଦୀଧାରରେ
୨୦୦ ହୋଇ ସେ ଥିବ କମ୍ପମାନ ହେ ॥ ୨୫ ॥

ଝିଲବରମ୍ମା ବର                ତମ ସମାନ ହୋଇ
ମନୋଜର ବଷର ଶରେ,
ଝିଠକ ହୃଦସ୍ଥରେ                ସ୍ମରଣ କ ସୁରସ
କରୁ ସେ ଥିବ ନରନ୍ତରେ ସେ,
୨୦୫ ଆହେ ହଂସ, ଝିସ ମନ୍ଦ୍ରତ ଶ୍ୱାସ ଵାତ,
ଝିଳ ନ ଥିବ ପିକ ରୁତ,
ଝିଲକ ତନୁ ବନ                ଦହନ କରୁଥିବ
ବରହ କୃଶାନୁ ନରତ ହେ ॥ ୨୬ ॥

ଜାମ୍ବୁନଦ କଦଳୀ                ସମ ଜାନୁଯୁଗଳ
୨୧୦ ଲବ ଧ୍ୱବକୁ ଭଜୁଥିବ,
ଯନ୍ଥ କୋମଳତାର                ତାର ବାହୁବଲ୍ଲରୀ
ଲୁଲତତମ ହୋଇଥିବ ହେ,
ଆହେ ହଂସ, ଯାବତ ଜୀବନ ତା ଥିତ,
ଜାତ ହୋଇଥିବ ନରତ,
୨୧୫ ଜଗତ୍ରସ୍ଥ ନଗର                ମୋହିନୀ ନଷ୍ଟେ ବଶୁ
ଥିବ ସେ ଯେସନେ ପ୍ରଭୃତ ହେ ॥ ୨୭ ॥

---

୧୯୪. ସତ୍ୱର—ସତ୍ରର । ୧୯୫. ତାର ମଳନ ଭଜୁଥିବ—ମାଲାନ ଭଜୁଥିବ ଥିବ । ୧୯୮. ସ୍ତନ—ସ୍ଥନ । ୨୦୨. ଶରେ—ଜରେ । ୨୦୩. ସରଣ—ସରସ । ୨୦୫. ଝିସ—ଝିମ । ୨୦୯. ଜାମ୍ବୁନଦ—ଜମ୍ବୁନଦ । ୨୧୦. ଲବ—ନର ।

କ୍ଷପାକର ମଣ୍ଡଳ  ସମ ମୁଖମଣ୍ଡଳ
ପାଣ୍ଡୁରତର ହୋଇଥିବ ।
ଛଇଳ ସ୍ନେହ କେଶ  ଅନ୍ଧକାର ନିକର
୨୨୦ ଲୁଳିତ ପୁଷ୍ପ ହାର ହେବ ହେ ।
ଆହେ ହଂସ, ଛଟକ ନୟନେ ସ୍ତମ୍ଭିଲେ ।
ଛୁଡ଼ିବେ ଯୋଗୀ ଯୋଗ ହେଲେ,
ଛଇଲି ଗୋଷ୍ଠ ଲାଗି  ଜୀବନ ସିଦ୍ଧ ମୋର
କାହ୍ନବ ତାର ଆଗେ ଭଲେ ହେ ॥ ୨୮ ॥

୨୨୫ ଚୂତ ମୁକୁଳକୁଳ  ଦେଖିଲେ କୁଳବଣ୍ଠ
ଅତି ଆକୁଳ ହୋଉଥିବ,
ଗୁରୁ ଚନ୍ଦ୍ର କିରଣ  ଭିତରେ ରତିରଣ୍ଠ
ରତିରେ ରତି ନଲଭିବ ହେ,
ଆହେ ହଂସ, ଚଟୁଳ ସ୍ବାମୀକର ଗୋଷ୍ଠ,
୨୩୦ ଚିବୁକ ଧନେ ମୋର ଧରି,
ଚୁମ୍ବି ଅଧର ମୋର  ଉରରେ ଉର ଦେଇ
କିକଂସେ କଲା କୃଶୋଦରୀ ସେ ॥ ୨୯ ॥

ନଷ୍ଟେ ସଙ୍ଗୀବ ସଜ  ଗଜ ଭଜଇ ନାହିଂ
ସଙ୍ଗୀବଚରଣେ ଦେଖିଲେ,
୨୩୫ ନବୀନ ବନପ୍ରିୟ  ରୁତ ଅରୁଚ ହୋଏ
ଯା ପ୍ରିୟ ବଚନ ଶୁଣିଲେ ହେ,
ଆହେ ହଂସ, କଥି ପ୍ରତିମା ମୋର ସେହି,
ନବପଞ୍ଚ ଭୁବନ ମୋହିନୀ,
ନର୍ମଳ ପୂର୍ଣ୍ଣ ଶଶି  ମନକୁ ନ ଆସଇ
୨୪୦ ଯାର ମୁଖ ମଣ୍ଡଳ ସ୍ବିମ୍ବ ହେ ॥ ୩୦ ॥

---

୨୧୭. କ୍ଷପାକର—ଛପାକର; ମୁଖମଣ୍ଡଳ—ମୁଖମଙ୍ଗଳ ।
୨୩୨. କୃଶୋଦରୀ—କୃସଦୋଶ । ୨୩୭. ପ୍ରିୟ—ପ୍ରିଅ ।

ଘନ ଜ[ଦ]ସ୍ୱେ ଦେଖି　　　ଢଳେ ମୋ ପ୍ରାଣ ସଖୀ

ହଦନେ ମତ୍ତେ ମତ୍ତ ହୋଇ,

ଘୂର୍ମିତ ନେତ୍ର ଅନ୍ତେ　　　ଠାବଣ ମତେ ମେ.ତ-

ଦନ୍ତୀ ଗମ୍ଭ ଅନ୍ତର ହୋଇ ହେ,

୨୪୫　　ଆହେ ହଂସ, ଘୋଷିଲେ ସେ ଢନର ଘାବ,

ଯେନ ନୋହ୍ୱବ ଅଙ୍ଗେ ଜୀବ,

ଘନଜଘନା ଗୁଣ　　　ପାସୁର ହେବ ଅବା

ଜୀବନ ନେଲେ କାମଦେବ ହେ ॥ ୩୧ ॥

ଗଜଗମନା ସଖୀ-　　　ମାନେ ମାନବଣିକ

୨୫୦　　ବେଢ଼ି ନେବେକ ମୁଞ୍ଚିଥିବେ,

(　　　　　　　　)

ଆହେ ହଂସ, ଗୁଣମଣିକ ବେଢ଼ି ତନ୍ନିଂ,

ଗାଢ଼େ ଶୁଆଉଥିବେ ନେଇ,

୨୫୫　ଗୋଷ୍ଠ ଅଙ୍ଗ ସଙ୍ଗରୁ　　　(

) ହୋଇ ହେ ॥ ୩୨ ॥

ଖସିଣ କେଶ ବାସ　　　କୁସୁମ ବାସେ ନାଶ

ହୋଇ ଚରଣେ ପଡ଼ିଥିବ,

ଖସି କ ନଶି ଅଭ୍-　　　ସ:ଷ୍ଣ ମୁଖଚନ୍ଦ୍ରମା

୨୬୦　　କାନ୍ତ ସମୀପୁ ଯାଉଥିବ ହେ,

ଆହେ ହଂସ, [　　　　　　]

ଖଣ୍ଡେ ପାଣ୍ଡୁର ବର୍ଣ୍ଣ ବଶି,

ଖମାଉଦ ଉଦଗ୍ର　　　ସଖୀମାନଙ୍କ ହୃଦ

କୁମୁଦ ବନଥିବ ତ୍ରାସି ହେ ॥ ୩୩ ॥

---

୨୪୨. ମତ୍ତେ—ମତ୍ତେ ।　୨୫୦. ମୁଞ୍ଚିଥିବେ—ମୁଞ୍ଚିଥିବ ।

୨୬୫ କମଳ ନେତ୍ର ବାଣୀ ଶୁଣି କାଦମ୍ବମଣି
ଗମନ କଲା ଖରେ ଖରେ,
କୁରଙ୍ଗୀ ନୟନା ଆଶ୍ୱାସ କଲା କହି
ହରି ବଚନ ଧୀରେ ଧୀରେ ହେ,
ଆହେ ହଂସ, ଜଳଜ ଯେଣୁ ହରି କାର୍ଯ୍ୟ,
୨୭୦ କାଦମ୍ବ ତେଣୁ ହେଲା ଆର୍ଯ୍ୟ
କୃଷ୍ଣ ପାଦ ଯୁଗଳେ ଭ୍ରମର ଶ୍ୟାମଘନ
ମନ ପାଇ ମଧୁ ମାଧୁର୍ଯ୍ୟ ॥ ୩୦ ॥

---

୨୬୫. କମଲ ନେତ୍ର—କମଲ ନେତ୍ର । ୨୭୦. କାଦମ୍ବ—କାଦମ୍ବ ।

ଟୀକା :—

[ ପୋଥିଟିର ଲେଖନକାରର ଅଜ୍ଞତା ଓ ବୋଧଶକ୍ତି ଉଭୟ ନ ଥିଲା. ସେଥିରେ ପୁଣି ଅନୁପ୍ରାସ ଯମକ ପ୍ରଭୃତି କବିଙ୍କର ପ୍ରଚଣ୍ଡ ଅତ୍ୟନ୍ତ ହେତୁ ଲିପି ବଡ଼ କୃତ୍ରିମ, ଏଣୁ ଏ ଚଉତିଶାର ଅନେକ ସ୍ଥଳ ଅବୋଧ ]

୧. କ୍ଷୀରୋଧି—କ୍ଷୀରୋଦଧି; ମଧୁପୁର—ମଥୁରା; କ୍ଷୀରୋଦ—କ୍ଷୀରବଧି ?
୨, ବେଦନା—ନବେଦନ; ଉଦେଶ—ଉଦ୍ଦେଶ ।
୩. ସହୃତ ସାହୃତ୍ୟ—ହୃତଯୁକ୍ତ ଅର୍ଥାତ୍ ସତ୍ ସାହୃତ୍ୟ; ଶୁଚି—ନିର୍ମଳ ।
୪. ବଖାଇ—ବଖଯୁକ୍ତ କରି । ୫. ସିବଶିବ—ମଙ୍ଗଳମୟ ଶିବ ।
୬, ବଶୁକେତନ—ବିଶ୍ୱକେତନ କନ୍ଦର୍ପ, ବନ୍ଧୁ—ବନ୍ଧୁତ୍ୱ, ଏଠାରେ ବଧୂ ଅର୍ଥ ସଙ୍ଗତ ।
୭. ରତି—କ୍ରୀଡ଼ା; ଲଳିତ—କୋମଳ, କୌଳ୍ୟ ଶବ୍ଦଜ ।
୮. ଉଣରଣ କରଣ—ରଣରଣ ଅର୍ଥାତ୍ ମଦନ ହେତୁରୁ ।
୧୦, ମଣ୍ଡନ—ଅଳଙ୍କାର; ମନ୍ଦତନସ୍ୱ—ଭାବପୋଷ କୋକିଳ; ମରୁଳ—କାରଣ୍ଡବ; ମରୁତ—ପବନ, ଦେବତା ।
୧୧. ଭ୍ରମ—ଭ୍ରମ; ତେତେଣ୍ଟେ—ସେପର (ତେଥେ) । ୧୨. ବଚ୍ଛେଦ—ବଚ୍ଛେଦ ।
୧୩. ତତ—ପବନ; ଫାଇ—ବିଶେଷ, ସ୍ଥାନ ଶବ୍ଦଜ; ଭଜେଇ—ଭଜନ; ବହୁନେ—ବହନେ; ଫୁରୁଣା—ଆନନ୍ଦ, ସ୍ଫୁରଣା ଶବ୍ଦଜ ।

୧୪. ତାର ତାରକାପତି—ତାସ୍ର ଚନ୍ଦ୍ର; ପିତା—ପିତାମହ ବ୍ରହ୍ମା ଅର୍ଥ ।
୧୬. ଧୂର୍ଜଟି—ଧୂର୍ଜ୍ଜଟି ଶିବ; ଧର୍ଯ—ଧୈର୍ଯ୍ୟ; ଧିକାର—ଧିକ୍କାର; ଗଛହଂସୀ—ହଂସୀର ଗଛ ଅର୍ଥ ।
୧୭. ପତ୍ରକ କଦମ୍ବ—ଗାଲରେ ଚିତ୍ରିତ କରିବା ପତ୍ରାବଳି ସମୂହ ।
୧୮. ଥୂଳ—ସ୍ଥୂଳ ଶବ୍ଦଜ, ସ୍ଥୂଳ; ନେତ୍ର ଅମ୍ବୁରେ କର—ଆଖିପାଣି ଦ୍ୱାରା ଅଭିଷେକ—ଅଭିଷେକ; ଥିର—ସ୍ଥିର, ନିଶ୍ଚଳ ଅର୍ଥ; ବେହାର—ବିହାର ।
୧୯. ରୁରୁ ଶାବକାକ୍ଷି—ଯାହାର ଆଖି କୃଷ୍ଣସାର ମୃଗର ଆଖି ପରି; ତାକୁ......ମୋର—ଯେଉଁ ଦିନ ତାକୁ ତ୍ୟାଗକଲି ସେହି ଦିନଠାରୁ କନ୍ଦର୍ପ ମୋ ଦେହକୁ କ୍ଷୀଣ କରୁଅଛି ।
୨୦. ଘନରସ—ବର୍ଷାଜଳ, ଅର୍ଥାନ୍ତରେ ଗାଢ଼ପ୍ରେମ; ସୁତନୁ ସୁତନୁ—କୃଶାଙ୍ଗୀର ଉତ୍ତମ ଦେହ; କୃଶାନୁ—ଅଗ୍ନି; ଏଣ—ହରିଣ; ନିଦ୍ଧରେ—ନିରାଶ୍ରୟ କର; ଭସ୍ମଭର—ଭସ୍ମପୂର୍ଣ୍ଣ ।
୨୧. ସୁଗନ୍ଧ—ଉଶୀର, କସ୍ତୁରୀ, କର୍ପୂର, କୁଙ୍କୁମ, ଗୋରୋଚନା ଓ ଚନ୍ଦନ; ଗନ୍ଧ—ଅଗୁରୁ; ଚନ୍ଦ୍ର—କର୍ପୂର ।
୨୨. ଡମ୍ବରୁ—ଡମରୁ; ଡହକ ହାଟକ କଟକ—ଉଜ୍ଜ୍ୱଳ ସୁନାଖଡୁ; ଡଙ୍କ—ଡକାଏତ, ଚୋର, ସ୍ତ୍ରୀଲିଙ୍ଗରେ ଡଙ୍କୁଣୀ ।
୨୩. ମାନବଦନ—ହଂସ; ଡାମରସ—ସୁନା, ଅଳଙ୍କାର ଅର୍ଥ; ଠଣ—ସୁନ୍ଦର, ଅଙ୍ଗଶୋଭା; ଠୁଳ—ସମସ୍ତ, ସ୍ଥୂଳ ଶବ୍ଦଜ; ନିଶାକର ମଣ୍ଡପ—ଚନ୍ଦ୍ରଶାଳା; ବିରଜନୀ—ବିରଚିତ । ୨୪. ଅର୍ଥ ଅସ୍ପଷ୍ଟ ।
୨୬. ଝସ—ତାଡ଼; ଝଳ—ଦୀପ୍ତି, ଚମକ ଅର୍ଥ; ରୁଡ—ରବ ।
୨୭. ଥିତ—ସ୍ଥିତ, ଏହିଭଳି ପ୍ରୟୋଗ ଅନେକ ବରଲ; ଜଗ—ଜଗତ୍ ।
୨୮. ଛଇଳ—ମନୋହର, ଛବିଲ ଶବ୍ଦଜ; ଶ୍ଳେଷ—ସଂଯୋଗ, ବନ୍ଧା ଅର୍ଥ । ତାର—ତାରକା ଅର୍ଥ; ଛଇଲୀ—ମନୋହାରୀ ।
୨୯. ଚଟୁଳ—ସୁନ୍ଦର; ଚାମୀକର—ସୁନା; ଲକ୍ଷ—କଣ ନାହିଁ କଣ ।
୩୦. ନିଶ୍ଚେ—ଦେଖିଲେ.........ପଦ୍ମପାଦ—ପାଖରେ ନିଶ୍ଚିତ ଭାବରେ ପଦ୍ମସମୂହ ବିରଚିତ ହେବାକୁ ଭାଜନ ହୁଅନ୍ତି ନାହିଁ, ଏପରି ଅର୍ଥ; ଅରତ—ଚୈତ୍ୟ; ନବପଞ୍ଚ—ଚଉଦ ।
୩୧. ଘୂର୍ମିତ—ଘୂମାଇ ହେଉଥିବା, ଘୂର୍ଣ୍ଣ ଧାତୁଜ; ପାଟୁର—ବସ୍ତ୍ରଚ୍ଛଣ (ପାଟେଇର) । ୩୨. ପାଠ ଅପୂର୍ଣ୍ଣ । ୩୩. ପାଠ ଅପୂର୍ଣ୍ଣ ।
୩୪. କାଦମ୍ବ—କଳହଂସ, ଏଠାରେ ସାମାନ୍ୟ ହଂସ ଅର୍ଥ; ଖରେ ଖରେ—ଶୀଘ୍ର ଆକାଶରେ; ଧୀରେ ଧୀରେ—ନମ୍ର ଓ ସ୍ଥିର ଭାବରେ ଭ୍ରସଳ—ଭ୍ରମର ।

ସଂ: ୧୮

# ଚାଟୁ ଚଉତିଶା

ସୁଜାବ

[ କବିଙ୍କ ପରିଚୟ ଅଜ୍ଞାତ । କାଳ ସମ୍ଭବତଃ ୧୮ଶ ଶତାବ୍ଦୀ । ]

(ରାଗ— ବଙ୍ଗାଳ ଶ୍ରୀ)

କମଳ ଲୋଚନା    କୋକିଳ ବଚନା    ଆରେ ଗୋରୋଚନା ଗୋରୀ ।
କଷ୍ଟ ବିମୋଚନା    କର ବିବେଚନା    ନବ୍ୟ ଶୋଚନା କରି ॥୧॥

ଖଣ୍ଡନା ପୀରତି    ଦେଖ ତାପୀ ରତି-    ପତି ଏଥି ରତି ନାଶେ ।
ଝାଳ ଅଙ୍ଗାରତି    ଛାଡ଼ ତୁ ଖାରତି    ରଖରେ ସୁରତି ଲସେ ॥୨॥

୫ ଗଲା ମୋତିହାର    କର ପରିହାର    କରିବା କାହାର ଅଛି ।
ଗୁଣ ତ ଯାହାର    ବୋଲଇ ତାହାର    ଭରସା ସାହା ରହିଛି ॥୩॥

ଘନରେ ନଚାଇ    ମସ୍ତକ ରୁଚିର-    ବଚମ ଛୁଟୀର ନଖେ ।
ଘନକେଶୀ ଚିର    ପୀରତି ଶୁଚିର    ଶୋଭି ନାଶୁ ଚିର ଦୁଃଖେ ॥୪॥

ନ କମ୍ପା ଅଧର    ମୋ ଦୋଷ ନ ଧର    ବେଶ କରି ଧରି କୋଳେ ।
୧୦ ନବଜଳଧର-    କେଶୀ ଶଶିଧର-    ପରଛୁ ଉଧର ଦେଳେ ॥୫॥

ଚନ୍ଦ୍ରକରକର    ପରି ନଶାକର    ଦେହଲନ ତ କର ମନ ।
ସ୍ୱାହାଂ ଶୋଭାକର ବଦନ ଛୋ କର    ଧରୁଚ ନକର ମାନ ॥୬॥

---

୨. ବିବେଚନା—ବେବର୍ଚନା । ୪. ଛଡ଼—ଝାଡ଼ । ୫. ଅଛୁ—ଅଛି ।
୬. ରହିଛୁ—ରଇଛୁ । ୭. ରୁଚିର ବଚମ—ଅଚରିବଚନ । ୧୧. ତ—ସା ।

ଛନ୍ଦ ଭୁଜପାଶ   ରକ୍ଷ ମୋତେ ପାଶ   ଯନ୍ନ କେଶପାଶ କର ।
ଛିଣ୍ଡା କାମ ପାଶ   ତୋତେ ଏ ଉପାସ   ଗୁଡ଼ୁଛି ତ୍ରପା ସଜ୍ୱର ॥୭॥

୧୫ ଜଳୁଅଛି ତନୁ   ଦେଖ ଏ ଅତନୁ   କରୁଅଛୁ ତନୁ ମୋର ।
ଜାଣିଣ ନତନୁ   କେଳକ ସୁତନୁ   ଇଛ ସେ ରତନୁ ସାର ॥୮॥

ଝରୁଛି ଜୀବନ   ନୟନୁ ଜୀବନ   ଦେଲେ ଏ ଜୀବନ ଯିବା ।
ଝଟତି ରେ ଜନ-   ରୁହାକ୍ଷି ଚୁମ୍ବନ   ଦିଅ ରକ୍ଷିବ ନବୀନା ॥୯॥

ନୟନ ବୁଲାଇ   ବଦନ ହଲାଇ   ଅଙ୍ଗରେ ଚଳାଇ ନଖ ।
୨୦ ନ ହସୁ ଖେଳାଇ   କଟିକି ଝୁଲାଇ   ମୋ ତନୁ ମୁର୍ଚ୍ଛି ରଖ ॥୧୦॥

ଟାଣଣ ଭ୍ରୂଢେ ଶର   ଯୋଖି ଟଙ୍କର   ନାହିଁ ଯେ ଅସର ତାକୁ ।
ଟାଳ ନା ରେ ସର-   ସହୃଦୟା ସର   ସୀରୁହାକ୍ଷି ସରଧାକୁ ॥୧୧॥

ଠଣ ସୁବଦନା   ସୁକୁନ୍ଦ ରଦନା   ଯେନ ନିବେଦନା ଥରେ ।
ଠେଳେ ଏ ବେଦନା-   ରୁ ରଖ କଦନା   ନ ଦିଅ ମୋଦ ନାଥରେ ॥୧୨

୨୫ ଡାଳିମ୍ବ ଦଶନା   ମୋ ଆଶ ନାଶନା   କର ନିବେଦନା ଗଣ୍ଡେ ।
ଡର ସୁବସନା   ମରୁଛି ରସନା   ମାନେନ ବସନା ଦଣ୍ଡେ ॥୧୩॥

ଢୋକବ ବିଷକୁ   ନ ନାଶ ଆଶକୁ   ମୋଠାରେ ଦୋଷକୁ ମୁଞ୍ଚ ।
ଢାଳେ ନିବଶକୁ   ନ ଭୁଷ ଆସକୁ   ଆସ ସୁରସକୁ ସଞ୍ଚ ॥୧୪॥

ଅନେକ କଷ୍ଟରେ   ପାଇଛି ଇଷ୍ଟରେ   କର ନିବିଷ୍ଟରେ ତପ ।
୩୦ ଆଜ ଏ ଦୁଷ୍ଟରେ   ନ ଦିଅ ତୁଷ୍ଟରେ   କର ତୁ ହୃଷ୍ଟରେ ସ୍ଥାପ ॥୧୫॥

ତରୁଣୀରତନ   ମୋ ହୃଦ ରତନ   ଦେଖ ଅଯତନ ମୁଖ ।
ତୋହର ରତ ମ   ପାଇ ମୋର ତନ   ଗଲ୍ପି ଖିତ ନ ରଖ ॥୧୬॥

ଥଗନା ଅଙ୍ଗକୁ   ଅନଙ୍ଗ ରଙ୍ଗକୁ   ଛାଡ଼ି କ ଭଙ୍ଗକୁ ଧନ ।
ଥରେ ସେ ସଙ୍ଗକୁ   ନ ଇଚ୍ଛୁ ରଙ୍ଗକୁ   ନେଇ କୁରଙ୍ଗକୁ ମନ ॥୧୭॥

---

୧୫. ଜଳୁଅଛୁ—ଜଳୁଅଛି; କରୁଅଛୁ—କରୁଅଛି । ୧୬. ଇଛ—ଇଷ । ୧୭. ଝରୁଛି—ଝରିଛି । ୨୧. ଅସର—ଅମର । ୨୨. ସରସୀରୁହ ହି—ସରସିରୁହାକ୍ଷି । ୨୬. ମରୁଛ—ମରିଛି । ୨୯ ପାଇଛୁ—ପାଇଛି । ୩୪. ଇଛୁ—ଇଚ୍ଛୁ ।

୩୫ ଦେ୍ଵଷମାନ ମୁଞ୍ଚ   ରତି ସୁଖ ସଞ୍ଚ   ନ ଭୁଞ୍ଜ ତୁ ବଞ୍ଚନାରେ ।
ଦେଖ ଏଡୁ ଦଞ୍ଚ-   ମୁଖପର ପଞ୍ଚ   ଶର ପରପଞ୍ଚ ମାରେ ॥୧୮॥

ଧରଣୀରେ ସାର   ତୁ ସିନା ମୋ ସାର-   ସଦୃଶା ଭାଷା ରଖସି ।
ଧୀରେ ସୁନାସାର   ଭୂଷା ମଣ୍ଡ ସାର   ଅଙ୍ଗେ ଘନସାର ଘଷି ॥୧୯॥

ନକର ଚଳକୁ   ସୁଖ ଆକୁଳକୁ   ହୋଇବ ବେଳକୁ ବେଳ ।
୪୦ ନଖାନା କୋଳକୁ   ନେଇ ମୋ ଗଳକୁ   ଭୁଜଯୁଗଳକୁ ଡାଳ ॥୨୦॥

ପୀନ ପୟୋଧରା   ଲବଣ୍ୟ ଅଧରା   ଦାସର କ ଧର ଦୋଷ ।
ଦଈଶର ଧର   ତର୍କ ତୁ ବଧରା-   ଢିକ ଶେଷ ଧର ସୁଂସ ॥୨୧॥

ଫୁଲଇ ନାସାକୁ   ଭାଷ ସୁଭାଷାକୁ   ନାଶ ଦୁର୍ଦଶାକୁ ମୋର ।
ଫୁଲ ପରସକୁ   ହେବ ଏ ରସାକୁ   ମଣ୍ଡ ମୋ ଆଶାକୁ ପୂର ॥୨୨॥

୪୫ ବନ୍ଧେ ମାର ବାଢ଼-   ବାର ଶରବାର   ଅଙ୍ଗେ ରହିବାର ମୋହ୍ର,
ବଦ ତୁନବାର   ସୁରତ ନବାର   ଦରବୁସିବାର ନୋହ୍ଣ ॥୨୩॥

ଭୁବନ ବନ୍ଦନା   ନରେଶ ନନ୍ଦନା   ମୋ ହୃଦଚନ୍ଦନା ତୁହି ।
ଭୁଜରେ ଛନ୍ଦନା   ନାଟେଶ୍ୱ ଛନ୍ଦନା   କଥାରେ କଦନା ସହି ॥୨୪॥ -

ମଉ୍ତିକ ହର୍ଷୀ   ନଶ୍ଚେ ଟଳି ଭସି   ନ ଦେଖି ଶୋଭ ଶିଶ୍ୱକ ।
୫୦ ମଦନ ତରସି   ବସେ ନଗରଶି   ପରସ୍ପେ ତରସି ଏକ ॥୨୫॥

ଜମ୍ବୁନଦ ଅଙ୍ଗୀ   ତୁ ମୋ ପ୍ରାଣସଙ୍ଗୀ   କର ମୋତେ ଅଙ୍ଗୀକୃତ ।
ଯୁବାମଣି ମଙ୍ଗି   ଦିଅ ରତି ଭଙ୍ଗୀ   ଖେଳାଇ କୁରଙ୍ଗୀ ନେତ୍ର ॥୨୬॥

ରାମାମଣି ଥରେ   ଅନା ଅନା ଥରେ   ଦୟାରୁ ନାଥରେ ଧର ।
ରସବନ୍ତ ଥରେ   ଅଙ୍ଗିମା ସ୍ୱାର୍ଥରେ   ଅଙ୍ଗ କୃତାର୍ଥରେ କର ॥୨୭॥

୫୫ ଲବଣୀ ପିତୁଳା   ଆହା ରେ ମୋ ତୁଳା-   ଙ୍ଗୀ କୁଚବ୍ରତୁଳା ଧନ ।
ଲକ୍ଷରେ ଅତୁଳା   ତୁ ସିନା ଚତୁର   ମୋହର ଆତୁର ମନ ॥୨୮॥

---

୪୩ ଦୁର୍ଦଶା—ଦୁଦଶା । ୪୮. କଦନା—କ୍ରଦନା । ୫୧. ଜାମ୍ବୁନଦ—ଯମ୍ବୁନଦ; ଅଙ୍ଗୀକୃତ—ଅଙ୍ଗିକୃତ୍ୟ । ୫୨. କୁରଙ୍ଗୀ—କୁରଙ୍ଗ । ୫୫, ମୋ—ମା ।

ବଧୂ ମୁଖ ଖରେ   ଟେକ ଭୁ ସୁଖରେ   ନଲେଖ ନଖରେ ମନ୍ମ ।
ବକଳ ଦେଖରେ   ରଖ ତୋ ପାଟରେ   ହୃଅ ସମ୍ମୁଖରେ ସନ୍ମ ॥୨୯॥

ଶୁଣାଅ ବଚନ   କର ଭୁ ସେଚନ   ଅମିଅ ଲୋଚନ ଭଙ୍ଗି ।
୬୦ ସୁରତ ରଞ୍ଜନ   କର ବିମୋଚନ   ଦୁଖରେ କାଞ୍ଚନ ଅଙ୍ଗୀ ॥୩୦॥

ସଙ୍ଗ ନୋହିବାରୁ   ଯୌବନ ଯିବାରୁ   ଅଧିକ ସେବାରୁ କାମ ।
ସରସ ସେବାରୁ   ଦେଲେ ସେ ଶିବାରୁ-   ଦ୍ରୁତ ନବାରୁ ଧର୍ମ ॥୩୧॥

ସୁଧାକର କର   ପରଶେ ତୋ କର   ଲଗଇ ତ ଜରଖେରୁ ।
ସଙ୍ଗ ଇଚ୍ଛା କର   ନବଶ ନ କର   ରଖ କାମ କରଷରୁ ॥୩୨॥

୬୫ ହୃଦରେ ବଲୁର   ସଖୀଙ୍କ ପଲୁଶ   ମୋ ସୁଖ ପ୍ରସୁର ଥରେ ।
ଦୋଷା ତୋଷଲୁବ-   ଅଙ୍କ ମଧ୍ୟ ସୃଳ   ଚନ୍ଦ୍ରକୁ ସଂସୁର କରେ ॥୩୩॥

ଷୋଳକୁ ସଜାବ   କହଇ ସଜାବ   ନୟନ ତେଜ ବଦନ ।
କ୍ଷଣକେ ସେ ଯିବ   ଜୀବନ ମୋ ଜୀବ   ରଖିଲ୍ଲ ସାଚ ବଚନ ॥୩୪॥

———

୫୮. ସମ୍ମୁଖରେ—ସନ୍ମୁଖରେ । ୬୩. ଲଗଇ ତ—ଲଗଇ ତୋ ।
୬୮. ସାଚ—ସଚ୍ଚ ।

ଟୀକା :—

୨୦. ରତି—କନ୍ଦର୍ପପତ୍ନୀ, ସନ୍ତୋଷ, ମୈଥୁନ କ୍ରିୟା ।

୪. ରୁଚି—ଶୋଭା; ଶୁଚି—ନିର୍ମଳତା ।

୫. ଶଶିଧରପର—କନ୍ଦର୍ପ; ଉଧର—ଉଦ୍ଧର ।

୬. ଚଣ୍ଡକରକର—ସୂର୍ଯ୍ୟକିରଣ ।

୭. ପାଶ—ବନ୍ଧନ ରଜ୍ଜୁ, ନିକଟ, ଗୁଚ୍ଛ; ଉପାସ—ଉପାସନା ଶଦ୍ଧାର୍ଥ, ଅନୁନୟ ।

୮. ତନୁ—ଦେହ, କୃଶ; ଇଚ୍ଛ—ଇଚ୍ଛାକର ।

୯. ଜୀବନ—ଜଳ, ପ୍ରିୟା ପ୍ରତି ସମ୍ବୋଧନ, ପ୍ରାଣ; ବନରୁହାକ୍ଷି—ପଦ୍ମନେତ୍ରା ।

୧୧. ଅସର—ଅବସର ଶବ୍ଦଜ, ଫୁରୁସତ୍; ସରସୀରୁହାକ୍ଷି—ପଦ୍ମନୟନା ।

୧୨. ଠଣ—ଶୋଭମସ୍ତ; ମୋଦ—ଆନନ୍ଦିତ କର ।

୧୩. ନିବେଦନା—(ଅନୁପ୍ରାସ ରକ୍ଷା ହୋଇନାହିଁ); ମାନେନ—ଅଭିମାନରେ

୧୪. ମୁଞ୍ଚ—ତ୍ୟାଗକର; ଆସ—ଉପବେଶନ ସ୍ଥାନ, ନୈକଟ୍ୟ ।

୧୫. ଇଷ୍ଟ—ଇଷ୍ଟଦେବ ଅର୍ଥ ।

୧୬. ରତ—ରତି, ତନ—ତନୁ ଅର୍ଥ, ସ୍ମିତ—ସ୍ମିତ ଅର୍ଥ ।

୧୯. ରକ୍ଷସି—'ସି' ପ୍ରତ୍ୟୟଟି ଦ୍ୱିତୀୟ ପୁରୁଷ ଅନୁଜ୍ଞା ସୂଚକ; ଘନସାର—କର୍ପୂର ।

୨୩. ବାରବାର—ବାରଂବାର; ବାର—ସମୂହ; ବଦ—ଖରାପ ଅର୍ଥ ବଦ୍ ଶବ୍ଦଜ ।

୨୫. ଗରେସି—ଗ୍ରାସି; ନଗବ୍ରଣି—ପର୍ବତମାନ; ତରସି—ତ୍ରାସି ।

୨୮. ତୁଳାଙ୍ଗୀ—କୋମଳାଙ୍ଗୀ; କୁଚବ୍ରତୁଳା—ବର୍ତ୍ତୁଳକୁଚ ।

୩୦ ଅମିଅ—ଅମୃତ; ରଞ୍ଜନ—ରଚନା ।

୩୨. କରଭୋରୁ—ହସ୍ତୀଶାବକର ଶୁଣ୍ଢ ପରି ଊରୁ ଯାହାର; କର୍ଷ—ଆକର୍ଷଣ, କର୍ଷ ଶବ୍ଦଜ ।

୩୩. ଗୃହ ଅଙ୍କମଧ୍ୟ—ସଂଖ୍ୟା, ଚନ୍ଦ୍ର ୪ର ମଧ୍ୟଭାଗ ପରି କ୍ଷୀଣ କଟି ଯାହାର ।

୩୪. ସାଚ—ଉଦ୍ୟମ ।



ସଂ: ୧୯

# ଶଙ୍କରାଭରଣ ଚଉତିଶା

( ପୋଥିରେ ନାମକରଣ ହୋଇ ନାହିଁ )

କବିସୂର୍ଯ୍ୟ ବଳଦେବ ରଥ **ରାୟଗୁରୁ**

[ଚମ୍ପୂକାର ଭାବେ, ସଙ୍ଗୀତକାର ଭାବେ କବିତା-କଳା-କୁଶଳ ବଳଦେବ ରଥ ସର୍ବଜନ ପରିଚିତ । ଗଞ୍ଜାମ ବଡଖେମୁଣ୍ଡିଠାରେ ଅନୁମାନିକ ଖ୍ରୀ ୧୭୮୦ ବେଳକୁ ତାଙ୍କର ଜନ୍ମ । ଜଳନ୍ତର ରାଜ୍ୟର ରାଜା ରାମଚନ୍ଦ୍ର ଛୋଟରାୟଙ୍କ ପୃଷ୍ଠପୋଷକତା ଲାଭ କରିବା କାଳରେ କବି 'ଚନ୍ଦ୍ରକଳା' ନାମକ ଏକ ଅପୂର୍ଣ୍ଣ କାବ୍ୟ ଏବଂ ଅସଂଖ୍ୟ ଚଉପଦୀ ଆଦି ରଚନା କରିଥିଲେ । ରାଜା ରାମଚନ୍ଦ୍ର ତାଙ୍କୁ କବିସୂର୍ଯ୍ୟ ଉପାଧି ଦାନ କରି ରାଜ୍ୟର ଦେୱାନ ପଦରେ ଅଧିଷ୍ଠିତ କରିଥିଲେ । ରାଜା ରାମଚନ୍ଦ୍ରଙ୍କ ଅକାଳ ବିୟୋଗ ପରେ ପରେ କବି ଗଞ୍ଜାମ 'ଆଠଗଡ଼ର ରାଜା ବାଙ୍କେଶ୍ୱର ଜଗଦେବ ହରିଚନ୍ଦନଙ୍କ ପୃଷ୍ଠ-ପୋଷକତା ପାଇଥିଲେ । ଆଠଗଡ଼ ରହଣି କାଳରେ ସେ 'କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ' କେତେକ ଚଉତିଶା ଓ ବହୁ ଚଉପଦୀ ରଚନା କରିଥିଲେ । ପରେ ପୁରୀ ରାଜା ମୁକୁନ୍ଦଦେବ 'କବିସୂର୍ଯ୍ୟ ରାୟଗୁରୁ' ପଦବୀ ଦେଇ ତାଙ୍କୁ ସମ୍ମାନିତ କରିଥିଲେ । ଏହା ପରେ ସେ ପାରଳାଖେମୁଣ୍ଡିର ଅପ୍ରାପ୍ତବୟସ୍କ ରାଜା ଜଗନ୍ନାଥ ନାରାୟଣ ଦେବଙ୍କ ଗୃହଶିକ୍ଷକ ନିଯୁକ୍ତି ପାଇଥିଲେ ଓ ଜୀବନର ଶେଷଭାଗରେ ମଞ୍ଜୁରୀ ରାଜ୍ୟର ଦେୱାନ ପଦରେ ରହିଥିଲେ । ତାହାଙ୍କ ମୃତ୍ୟୁ ପ୍ରାୟ ଖ୍ରୀ ୧୮୪୫ ବେଳକୁ ହୁଏ । 'ଚଉପଦୀ ରତ୍ନାକର' ଏବଂ କେତେକ ଚଉପଦୀ ଓ ଚଉତିଶାକୁ ଛାଡିଲେ କବିଙ୍କ ରଚନାଗୁଡ଼ିକରେ ତାଙ୍କ ପୃଷ୍ଠପୋଷକ ରାମଚନ୍ଦ୍ର ଛୋଟରାୟ, ବାଙ୍କେଶ୍ୱର ଜଗଦେବ, ମୁକୁନ୍ଦଦେବ ଆଦିଙ୍କ ଭଣିତା ମିଳେ । ହାସ୍ୟକଲ୍ଲୋଳ ଏବଂ ବାଳତ୍ରୁଟିନ୍ୟା ବ୍ରତ କଥା ତାଙ୍କର ଗଦ୍ୟ ରଚନା । କବି ତେଲୁଗୁ ଓ ହିନ୍ଦୀ ଭାଷାରେ ମଧ୍ୟ କେତେକ ଚଉପଦୀ ରଚନା କରିଛନ୍ତି । ନିମ୍ନ ଚଉତିଶାଟି ତାଙ୍କର ଜଳନ୍ତର ରହଣି କାଳର ଅର୍ଥାତ୍ ପ୍ରାୟ ଖ୍ରୀ ୧୭୯୮ ଠାରୁ ୮୧୨ ମଧ୍ୟର । ପୋଥିରେ ଏହାର ରାଗର ନାମକରଣ ଶଙ୍କରାଭରଣ ବୋଲି ଦିଆଯାଇଛି କିନ୍ତୁ ଅନ୍ୟାନ୍ୟ ଛାନ୍ଦ ଗ୍ରନ୍ଥରେ ଶଙ୍କରାଭରଣ ରାଗ ନେଇ ରଚିତ ରଚନାଗୁଡ଼ିକର ପାଦ ଓ ମାତ୍ରା ସଂଖ୍ୟା ଏହାଠାରୁ ଭିନ୍ନ । ଚଉତିଶାଟି କବିସୂର୍ଯ୍ୟ ରଚିତ ବର୍ତ୍ତମାନ ସୁଦ୍ଧା ଅପ୍ରକାଶିତ ଶତ ଶତ କ୍ଷୁଦ୍ର ରଚନାମଧ୍ୟରୁ ଅନ୍ୟତମ ।]

## ରାଗ—ଶଙ୍କରାଭରଣ

କୋଉ ରସିକ ସେ ଗେଷେ କରି ଧାତା ନନ୍ଦା ।
କରେ କରତନୁ ଅନୁଚନ୍ଦ୍ରା ଏକା ଫନ୍ଦା ।
କୃପାନିଧିରେ, କି ଦଶା ପାଇଲି ।
କି ସମ୍ବାଦ କି ସମୟେ କାହ୍ନିଁ ହଜାଇଲି । ୧ ।

୫ ଖୁରି ପରି ଢଣ୍ଡବସା ସାରି ନାନା ରଚେ ।
ଖେଳାନ୍ତି ମୁଁ ଉରେ ଯୋଉ ପଦାର୍ଥ ଧରତେ ।
ଖଞ୍ଜନାକ୍ଷି ରେ, ଖରବ ତା କଲି,
ଖବର ନ ପୁଆ ଭଳି ବଢ଼ି ନେଢ଼ଲି । ୨ ।

ଗମାର ସାରସାସନ ହର ମଣିହାର ।
୧୦ ଗଳା ଗୋଟି କାଟି କମ୍ପା ନ ଦେଲି ମୋହର ।
ଗୁଣମଣିରେ, ଗହଳୁ କି ହେବ ।
ଗଲୁ ଯେବେ ଗୁଡ଼ ତାକୁ ବସନ୍ତ ଉତ୍ସବ । ୩ ।

ଘଟିବ ନାହିଁ ଚପଳା ଲତିକା ସଙ୍ଗମ ।
ଘୋଟି ବନବାହ କି ଦିଶିବ ମନୋରମ ।
୧୫ ଘନକେଶୀରେ, ଘେନ ତଟେ ଅଙ୍କେ ।
ଘୁଣ୍ଡିଏ ଖେଳିବା ଭଳି ନୋହିଲି ପଲ୍ୟଙ୍କେ । ୪ ।

ନୋହିଲେ ପହିଲୁ ନୋହିଥିବା କଥା ଭଲ ।
ନୂତନ ରତନ ହଜା ଅତି କଲବଲ ।
ନଡ ଅଙ୍ଗୀରେ, ନାନା ସୁଖମାନ ।
୨୦ ନୂଆଁ କଞ୍ଜ ଚରଣକୁ କଲେ ଅନୁପାନ । ୫ ।

ଚରମେ ନ ଥାଇ ଯାଉ ଚଉକେ ଚୀବର ।
ଚଣ୍ଡାଳ ଦାଉବ କରି ତାକୁ ଶରୀବର ।
ଚନ୍ଦ୍ରମୁଖୀ ରେ, ଚଖାଇ ପୀୟୂଷ ।
ଚୁଲିଲ ବେଳେ ରସନା ଫିଙ୍ଗିଲି ପାଉଁଷ । ୬ ।

୨୫ ଛଇଲ ମନ୍ତ୍ରକମଣି ଆଢ଼'ରେ ମୋ ସଖୀ ।
ଛୁଡ଼ଦେଲ ଘାଟଶୋଭବା ସମ୍ପତ୍ତିକ ଭୁଞ୍ଜି ।
ଛବ ସିନ୍ଦୁରେ, ଛନ୍ଦେ ଗୁନ୍ଥ ମୁଖ ।
ଛପାଇ ଦେଲ୍ମ ମୋ ସବୁ ଭାଗ୍ୟ ସବୁ ସୁଖ । ୭ ।

ଜଗତେ ମୁରୁଖ ନାହିଁ ମୋ ତୁଲ୍ୟ ସୁବାରେ ।
୩୦ ଜାଣି ଜାଣି ଜହର ଆହାର କରିବାରେ ।
ଜବାଧଗ ରେ, ଜୀବନ ଜପାୟୁ ।
ଯେ ଜାଣଇ ନାହିଁ ସେହୁ ଏକା ପଶୁ ପ୍ରାୟୁ । ୮ ।

ଝାଡ଼ରୁ ବଳୁଚ ଅଟ୍ଟାଳିକା ମଧ୍ୟ ମତେ ।
ଝମଣ୍ଟେକ ଯୁଗପରି ହୋଉଚ ପରତେ ।
୩୫ ଝଳ ଘୋର ରେ, ଝସଧ୍ୱଜ ହଟି ।
ଝାଞ୍ଜି ଦେଉଚ ମୋ ମଜ୍ଜା ବଳ ପରିପାଟୀ । ୯ ।

ନବ ମୃଦୁ ଭାରତୀ ସୁଧାରୁ ଏକ ବିନ୍ଦୁ ।
ନଜଡ଼ ନାହୁଁ ମୋ ଶ୍ରୁତିନାଳେ ପ୍ରାଣବନ୍ଧୁ ।
ନତମ୍ବିନୀ ରେ, ନଧୁବନ ରସ ।
୪୦ ନର୍ଜରମାନଙ୍କ ମାର୍ଗ କୁସୁମ ସଦୃଶ । ୧୦ ।

ଟେକ ଧର ମୁଖଚନ୍ଦ୍ର, ଶୋଭା ଲୁହିଁ ଲୁହିଁ ।
ଟୋପିଏ ଅମୃତ ରଦବାଯୁଁ ପିଇ ନାହିଁ ।
ଟେକସ୍ତନାରେ, ଟୋପେ ମତେ ଭରି ।
ଟାଣି ଦେନଗଲ୍ଲ କେ ମୋ କନ୍ଥୁଁ ଇନ୍ଦ୍ରଶିଖ । ୧୧ ।

୪୫ ଠଣା ଠୁକ ଛଡ଼ାଇ ମନୁଅ ମଥା ଶିଖା ।
ଠାରି ନାହିଁ ତୋ ପାଦେ ଅଳତା ଚନ୍ଦ୍ରରେଖା ।
ଠିକ ହାସିରେ, ଠୁଳ କରି ଚନ୍ଦ୍ରେ ।
ଠକୁଥାଇ ନାହିଁ ତୋ ବିଭ୍ରମ ଏମ ଯେତେ । ୧୨ ।

ଡେଉର ନାହିଁ ଗୁଡି ଅଭିମାନେ ତଟେତ ପାଇ ।
୫୦ ଡାକ ନାହିଁ ତୋ ଜଟିଳ ପ୍ରେମ ପଲ୍ଲିବାଇ ।
ଡାକ କଟିରେ, ଡକ୍ଷଡର ଗ୍ଳଳ,
ଡୋଳାହୀନ ଚକ୍ଷୁ ଦଶା ଅନୁଭବ କଲି ॥ ୧୩ ॥

ଢାଳେ ଉଣା ନୋହୁ ରହୁଥିଲା ରସ କୁମ୍ଭ ।
ଢୋକେ ଢୋକ ନାହିଁ ହେଲା ଏ ଦଣ୍ଡ ଆରମ୍ଭ ।
୫୫ ଢଳାଗଡିରେ, ଢଳ ନାହିଁ ଲେଶେ
ଢାଙ୍କି ମୋ ନେହ କେ ଲୁଟି ନେଲା ଦୂର ଦେଶେ ॥ ୧୪

ଣତ ସୁକୁମାର ଅଙ୍ଗେ କର ବସିବାକୁ ।
ଅମ୍ଳାନ ପଙ୍କଜ ପର ବାସି ଆସିବାକୁ ।
ଅମଳାଙ୍ଗିରେ, ଅନଳ ପ୍ରଭାବୁ,
୬୦ ଅମ୍ବୁଜମାଦଳ ଜଳ ପରି ହେଲା ସବୁ ॥ ୧୫ ॥

ତନୁକୁ ପୁଲକ ଶିଖ ପୁର ଚୁମ୍ବି ନାହିଁ ।
ତରୁଣୀରତନ ମତେ ଛାଡ଼ି ଗଲୁ କାହିଁ ।
ତାପହାରି ରେ, ତର୍କି ନ ପାରିଲି,
ତପ ଲବ୍ଧ ଧନ ସିନା ବୋଲି ବସୁରିଲି ॥ ୧୬ ॥

୬୫ ଥାଉ ଦୂରେ ତୋ ସଙ୍ଗ ସୁରତ ଭାଗ୍ୟୋଦୟ ।
ଥରେ କର ଯୋଡ଼ି ହୋଇ ନାହିଁ ସବିନୟ ।
ଥିର ଗତିରେ, ଥୁଆ ଧନ ଗଡ଼ି,
ଥକାଇ ଅବଟେ କରପୁଆ ସୀମା ଛାଡ଼ି ॥ ୧୭ ॥

ଦେଖି ନାହିଁ ଶ୍ରୀଅଙ୍ଗ ଲାବଣ୍ୟ ଭଲ କରି ।
୭୦ ଦଶୁଥିଲା ଥରେ ଥରେ କ କ ଝୁଲକରି ।
ଦୁଃଖୀଧନରେ; ହେଇ ବିଧ୍ୟ ଗ୍ରାସ,
ଦରପୁର କରିବାକୁ କଲି ମୁ କ ଦୋଷ ॥ ୧୮ ॥

ଧଗ ମଣ୍ଡନାରେ ଧକ ଧକ ମୋ ଲଲାଟ,
ଧଇଲ ବଶୁଦ୍ଧ ହେମ ହେଲା ଆଉକୂଟ ।
୭୫ ଧୀସ୍ୱବର ରେ, ଧଇର୍ଯ୍ୟଙ୍କୁ କେଷ୍ଟ,
ଧର ରକ୍ଷବଟି ଏଡ଼େ ବଡ଼ ଦା ୍ର ସନ୍ଧ ॥ ୧୯ ॥

ନମସ୍କାର କରୁଥାଇ ଭୂଦେବମାନଙ୍କୁ ।
ନୃତନା ଭୁ ଅନ୍ତର ନୋହିବୁ ବୋଲି ଅଙ୍କୁ ।
ନାସ୍ତ୍ରମଣିରେ, ନୋହିଲା ତା ଫଳ;
୮୦ ନଷ୍ଟସ୍ୱ ମୁ କଲି ସବୁ କଥା କର୍ମମୂଳ ॥ ୨୦ ॥

ପରିଣତ ଫଳ ବାଡ଼ି ନ ପଡ଼ୁ ପଡ଼ୁଖା ।
ପହିଲୁ ପସରା ଲୁଟି କାହିଁ ନାହିଁ ଦେଖା ।
ପ୍ରିୟମ୍ବଦାରେ, ପଛେ ପଛେ ଚୋର
ପଳାଇ ନ ଗଲା କପାଂ ପରାଣ ମୋହର ॥ ୨୧ ॥

୮୫ ଫୁଟିବାର ଥା ଉଁ ନାନାବନ୍ଧ ନଧିବନେ ।
ଫରମାସ ପଦ୍ମପାଳ ନାହିଁ ତୋର ବନେ ।
ଫନ୍ଦାଧନରେ, ଫଳୁଆରୁ ଆଣି,
ଫିଙ୍ଗିଦେଲା ଯତ୍ନେ ସମ୍ପାଦିବା ଚନ୍ତାମଣି ॥ ୨୨ ॥

ବଜେ କଲବେଳେ ହେଲେ ବାଣାକଣା ବାଣୀ ।
୯୦ ବଚନେ କହି ମୋଠାରୁ ହୃଷ୍ଟରୁ ମେଲାଣି ।
ବଦ୍ୟାନଧି ରେ, ବନ୍ଧୁ ଅବା କରି,
ବୋଲନ୍ତୁ କାହିଁକି ଯିବୁ ମୋ ଜୀବନେଶ୍ୱରୀ ॥ ୨୩ ॥

ଭାଙ୍ଗି ଏବେ ଚିରକାଳକୃତ ମନୋରଥ ।
ଭାସିଲାଇଂ ଦୁହେଁ ଯହିଁ ବପୁ ମନମଥ ।
୯୫ ଭବବଶ ରେ ଭ୍ରଷ୍ଟ ହେଲେ ମତି,
ଭ୍ରୂଭଙ୍ଗ ନକରି କାଳେ ଲଭି ଏ ବପଭି ॥ ୨୪ ॥

---

୯୬. ଭ୍ରୂ ଭଙ୍ଗ—ଭ୍ରୂଭଙ୍ଗ ।

ମନ୍ତ୍ର ବଳେ ଯେବେ ନ ପାରନ୍ତ ମନା କରି ।
ମୁଁ ଅବା ଗହଣେ ଆସି ଥାନ୍ତ ଅନୁସରି ।
ମହାଳସି ରେ, ମିଶି ଯତନେ
୧୦୦ ମଣ୍ଡାଇ ରଖନ୍ତ ଉର ସ୍ଥଳେ ଅବା ଦମ୍ଭେ ॥ ୨୫ ॥

ଯୁବା ଯୁବତୀଙ୍କି ଦଣ୍ଡ ବିଚ୍ଛେଦରୁଂ ସରେ ।
ଯୁଗ ହୋଏ ଦଣ୍ଡ ଏହୁ ପାପ ବସୁଧରେ ।
ଯୋଷାମଣିରେ, ଯଥାର୍ଥ କହୁଛି,
ଯଶଶୂନ୍ୟ ହେବାକୁ ମୋ ଜୀବନ ରହୁଛି ॥ ୨୬ ॥

୧୦୫ ରମ୍ଭୋରୁରେ ନରଯୁବା ଗୁରୁ ଅବା କେତେ
ରଘୁକୁଳଚନ୍ଦ୍ର ଲଭିଛନ୍ତ ଦୁଃଖ ଯେତେ
ରସବତୀରେ, ରମା ବରତରେ,
ରହଇ ନାହିଂ ଯେ ଲବେ ବିବେକ ଦେହରେ ॥ ୨୭ ॥

ଲତାବଧୂ ଆଲିଙ୍ଗନୁ ଦ୍ରୁମ କମନୀୟ,
୧୧୦ ଲଳନା ସଙ୍ଗରୁଂ ପୁରୁଷଙ୍କ ସୁଖୋଦୟ ।
ଲୀଳାବତୀରେ, ଲମ୍ପଟସାରପଣେ
ଲେଖିଲେ ଥିବ କି ଆଉ ମୋହପରି ଜଣେ ॥ ୨୮ ॥

ବିଦେଶ ମୁଁ କରି ଦୂରି ହେଲେହେ ତୋ ପାଶୁଂ
ବିସ୍ମରନ୍ତ ହୋଇଥାଏ ବିଷୟ ସକାଶୁଂ ।
୧୧୫ ବାଳାମଣି ରେ, ବ୍ୟର୍ଥେ ଫଣୀଧରି,
ବଞ୍ଚିଲ ହୋଇଛି ଏବେ ବିରହ ସୁମରି ॥ ୨୯ ॥

ଶରଦ ରଜନୀନାଥ ମୁଖ ପାଶେ ବଦନେ,
ଶୃଙ୍ଗାର ଛଡ଼ଆ ଖଟିନାହିଁ ସାବଧାନେ,
ଶ୍ରଦ୍ଧାବତୀରେ, ଶମ୍ଭୁବପୁ ରଣେ
୧୨୦ ଶ୍ରୀଅଙ୍ଗେ ତୋ ସ୍ୱେଦ ଦେଖି ନାହିଂଟି କ୍ଷଣେ ॥ ୩୦ ॥

୧୦୯. ଦ୍ରୁମ—ଦ୍ରୁମ ।

ସ୍ୱତ ପକାଇ ଚୁମ୍ବ ଦେଲ୍ଲ ବେଳେ ଲଜେ ।
ସୁରତ ପଣ୍ଡିତା ନାହିଁ ବୋଲିବାର ବ୍ୟାଜେ ।
ସୁଲକ୍ଷଣାରେ, ଶୁଣି ନାହିଁ କାନେ,
ସୁଖ ଦୁଃଖଙ୍କର ଏହି ପରି ସେ ବିଧାନେ ॥ ୩୧ ॥

୧୨୫ ସତ୍ୟପ୍ରାୟ ଭଳି ହୋଇଥାନ୍ତା ଯେବେ କେବେ ।
ସମାଧାନ ମାନସେ କରନ୍ତି ଅବା ଏବେ ।
ସୁଖଦାନ୍ତିରେ, ସେହି ହୋଇ ନାହିଁ,
ସ୍ମରଣୀୟ ହୋଇବାର କଥା ଏଥି ନାହିଁ ॥ ୩୨ ॥

ହର ପରସାଦ ସତେ ମୋତେ ଅଛି ହେବ ।
୧୩୦ ହଜବାର ହରିଷ୍ୟ ବିଭୂତି ମିଳିବ ।
ହୃଦ ହାସରେ, ହସି ନାନା ରସେ,
ହରିଷ ସମସ୍ତ ବୋଲି ନାହିଁ ମୋ ମାନସେ ॥ ୩୩ ॥

କ୍ଷପାକର ଗତି ଜଗତ୍ତରେ କରି ସ୍ଥାନ ।
କ୍ଷତ କରିବକ ମାର ବୀର ଅଭିମାନ ।
୧୩୫ କ୍ଷମାନିଧିରେ, କ୍ଷଣେହେ ତୋ ସ୍ନେହେ,
କ୍ଷିତିପତି ରାମଚନ୍ଦ୍ର ଶ୍ଳୋକରସ୍ତୁ କହେ ॥ ୩୪ ॥



୧୨୭. ସୁଖଦାନ୍ତି—ଷୁଖଦାନ୍ତି ।

**ଟୀକା :—**

୧. ବରତନୁ—ବର୍ଣ୍ଣୀ; ଫନ୍ଦା—ଅସ୍ତ୍ର ।
୨. ଖୁରୁ—ସମସ୍ତମାପର ଏକକ ବିଶେଷ, ଅଳ୍ପକାଳ; ନପୁଆ—ନ ମିଳିବା ।
୩. ଗମାର—ଓଲ୍ଲୁ; ସାରସାସନ—ବିଧାତା; ଗହନ—ବନ; ଇଷ୍ଟବ—ଅନନ୍ତ ।
୪. ବନବାହ—ମେଘ; ପଲ୍ୟଙ୍କ—ପଲଙ୍କ ।
୫. କୁଅ—କଅଁଳ; ଅନୁଯାନ—ଅନୁସରଣ ।
୬. ଚରମ—ପଛଲୁଗ; ଚୀର—କୌପୀନ ।
୭. ଛଇଲା—ସୁନ୍ଦରୀ, ଛବିଲ ଶବ୍ଦଜ; ଛନ୍ଦ—କପଟ; ଗୃହମୁଖ—ବ୍ୟାଢା ।
୮. ଟମଣ୍ଣ—କ୍ଷଣକାଳ; ଝସଧ୍ୱଜହତି—ମଦନ ହତ କର ।
୧୦. ନିର୍ଜର—ଦେବତା; ନିର୍ଜର·····ସଦୃଶ—ଅକାଶକୁସୁମ ଭଳି ।
୧୧. ରଦବାସ— ଓଠ; ଚୌପ—ବନ୍ଦୀଗୃହ; Cell
୧୨. ଠୁକ—ଆଘାତ କର । ୧୩. ଢାକ୍କା—ଡମରୁ ।
୧୬. ପୂବ—ସୁଗ୍ରଇ; ତର୍କି—ତରଙ୍କ, ପୂର୍ବରୁ ସାବଧାନ ହୋଇ ।
୧୭. ଅବଟ—କୂପ, ଗାତ । ୧୮. କ କ—କପଣ୍ଡ ବା ।
୧୯. ଅରକୂଟ—ପିତ୍ତଳ; ଧଇର୍ଯ—ଧୈର୍ଯ୍ୟ; କେହୁ—କମ୍ପିଛ ।
୨୧. ପରିଣତ ଫଳ—ପାଚିଲା ଫଳ, ସଦ୍ୟ ଖାଦ୍ୟ ଫଳ; ପଉଣ୍ଡା—ବିକ୍ରେତାର ପ୍ରଥମ ବିକ୍ରୟ; ଆଦ୍ୟ ବିକ୍ରୟରୁ ପ୍ରାପ୍ତ ଧନ ।
୨୨. ଫୁଟିବା—ହାଲିଆ ହେବା; ନିଧୁବନ—ରତିକ୍ରୀଡ଼ା ।
୨୬. ବଳେ କରିବା—ଗମନ କରିବା, ବ୍ରଜ୍ୟ ଶବ୍ଦଜ ।
୨୮. ଲଟ—ବିବର୍ଦ୍ଧ ବୃତ୍ତ ।
୨୯. ଦ୍ରବସ୍ତୁ—ଧନ ସମ୍ପତ୍ତି; ବରଜ—ଗାଉଁଆଙ୍କ ଦେବତା ?
୩୧. ସ୍ୱବତ—ବ୍ରଣ ।
୩୨. ସନ୍ତୁପାସ୍ତ—ସୁବିଧା, ଶବ୍ଦଟି ଅଧୁନା ଦକ୍ଷିଣ ଓଡ଼ିଶାରେ ସକୁପ୍ରାୟ ଭାବେ ବ୍ୟବହୃତ ।
୩୩. ହରିହୟ—ଇନ୍ଦ୍ର ।
୩୪. କ୍ଷପାକର—ଚନ୍ଦ୍ର; ଶେଟରାୟ—ଜଳନ୍ତର ରାଜାଙ୍କ ପୁରୁଷାନୁକ୍ରମିକ ଉପାଧି ।

ସଂ : ୨୦

# ଶ୍ରୀ ବ୍ରଜରାଜଙ୍କ ଜଣାଣ

ପଦ୍ମନାଭ ଦେବ

[ ଏହି ରାଜକବିଙ୍କର ପରିଚୟ ଅଜ୍ଞାତ । ଓଡ଼ିଶାର ବହୁ ରାଜ-ବଂଶରେ ବହୁ ପଦ୍ମନାଭ ଥିଲେ । 'ଶଶିରେଖା' ନାମକ କାଳ୍ପନିକ କାବ୍ୟର ରଚୟିତା ପଦ୍ମନାଭ ଶ୍ରୀଚନ୍ଦନ ଖ୍ରୀ. ୧୭୩୫ ଠାରୁ ୧୭୫୭ ଯାଏଁ ବାଙ୍କିର ରାଜା ଥିଲେ । ପଦ୍ମନାଭ ଦେବ ଭଣିତ ଥାଇ 'ପ୍ରଭାବତୀ' ନାମକ ଏକ କାଳ୍ପନିକ କାବ୍ୟ, ରାଧାକୃଷ୍ଣ ବିଷୟକ ଅନେକ ସଙ୍ଗୀତ ଏବଂ 'ପୁରୁଷୋତ୍ତମ ଭାଗବତ ମାହାତ୍ମ୍ୟ' ନାମକ ଭକ୍ତି ଗ୍ରନ୍ଥ ମିଳୁଛି । ଊନବିଂଶ ଶତାବ୍ଦୀର ପ୍ରଥମ ପାଦରେ ପାରଳାଖେମୁଣ୍ଡିର ଶାସକ ଥିବା ଟିକିଲି ରାଜବଂଶଜ ପଦ୍ମନାଭ ଦେବ ମଧ୍ୟ କେତେକ କବିତା ରଚନା କରିଥିବା ଜଣାଯାଏ । ]

(ରାଗ ପଞ୍ଚମ ବରାଡ଼ି)—ରୂପସିଂହ ବାଣୀ

କେବଳ ଅତି ଆର୍ତ୍ତ   ବିପତ୍ତିପନ୍ନ ବିପତ୍ତି-
ନାଶନ ଚରଣେ ମତି ରଖି,
ଭବେ ବିନୟ ଘନରେ   ନରେ ନାଗରେ ଅମରେ
ମୋ ସମରେ ନାହିଁ କେହି ଦୁଃଖୀ ହେ,

ଧ୍ରୁ   ବ୍ରଜରାଜ, ଖଣ୍ଡ ନାହିଁ ତାପ ହେଲେ ଷଣେ,
ଫଳ ବ୍ରହ୍ମାଣ୍ଡ ଭିତରେ   ତୁମ୍ଭ ପରି ପ୍ରଭୁଙ୍କରେ
ଆଉ କେ ନାହିଁ ନୋହିବ ଜଣେ ହେ ॥ ୧ ॥

ଗର୍ବ ସର୍ବ କରି ଖର୍ବ    ସର୍ବ ଲୋକେ ପର୍ବ ଶର୍ବ-
ଷାଶ ମୁଖ ରଖି ଅଛ କାଟି,
୧୦ ଗାଢ଼େ ନିରକ୍ଷକୁ ରକ୍ଷ    ଜହ୍ନିବାରେ ଲକ୍ଷ ଲକ୍ଷ
ବକ୍ଷ ହୋଇଅଛ ଉମାପତି ହେ,
ବ୍ରଜରାଜ, ଘୋର ହେଲା ତହୁଁ ମୋ ଦୁର୍ଗତି,
ଘନବରନ ବାରଣ-    ତାରଣ ତହୁଁ କାରଣ
କରି ପାରୁନାହଁ ଲଭି ଯାଉ ହେ ॥ ୨ ॥

୧୫ ନଷ୍ଟେ ମାତାଗର୍ଭେ ପ୍ରାଣ    ପ୍ରବେଶ ଦିନରୁ ଜାଣ
ଶରଣ କରିଛି ଯୋ ଚରଣ,
ନ ବଶିଲ ପ୍ରଭୁ ପଣ    ହୋଇଲା କି ଆନ ଗୀର୍ବାଣ
ଆଜ ମୁ  ଭଜବ ନାରାୟଣ ହେ,
ବ୍ରଜରାଜ, ନାଶ ପଛେ ସିନ୍ଧୁ ମୁଁ ଅବଧି,
୨୦ ନନ୍ଦା ତୁମ୍ଭ କୃପାନିଧି    ସିଦ୍ଧି କି ଷମା ବାରିଧି
ଶୁଣାଇବ ଏ ମୋ କଣ୍ଠଂ ବଧି ହେ ॥ ୩ ॥

ସ୍ବଭୂର୍ମୀଶ ଘନାଘନ    ପର୍ଯ୍ୟେ ଦିନକୁ ଦିନ
ଘ୍ରାବତମ ଘୋଟେ ଘନଘନ,
ଚପଳେ ହେମନ୍ତ ପରି    ହିମନ୍ତ ହନ୍ତି ଶ୍ରୀହରି
୨୫ ତେମନ୍ତ ତା କର ବିନାଶନ ହେ,
ବ୍ରଜରାଜ, ସ୍ତୁରି ମଣି ସ୍ତୁଡ଼ଲେ ଏ କାଳେ
ଛିଦ୍ର ହେବ ଏ ସଂସାରେ    ନଷ୍ଟେ ଏତୁ ପ୍ରଶଂସାରେ
କି ଆଶାରେ ଭଜିବେ ସକଳେ ହେ ॥ ୪ ॥

ଜାଳ ଜାଳ ପରି କାଳ    ବେଢ଼ିଲା ବେଳକୁ ବେଳ
୩୦ ଜଳଜାକ୍ଷ ହେ ଦାସବତ୍ସଳ,

---

୮. ପର୍ବ—ଗର୍ବ । ୧୦. ଲକ୍ଷଲକ୍ଷ—ଲକ୍ଷରକ୍ଷ ।
୨୩. ଘୋଟେ—ଘେଟେ । ୨୪. ହେମନ୍ତ—ହିମନ୍ତ; ହିମନ୍ତ—ହେମନ୍ତ ।
୨୯. ବେଳକୁ ବେଳ—ବେଳକୁ ବେଳକୁ ବେଳ ।

ଖାବନକୁ ଉଙ୍ଗ ମଙ୍ଗ ହେବାରୁ ନ ଖାଇଁ ରଙ୍ଗ
ତରଙ୍ଗ ଉଜଳାନ୍ତ ଉଚ୍ଛାଳ ହେ,

ବ୍ରଜରାଜ, ଝଂଝାନଳ କରୁଣା ପ୍ରକଟି,
ଝାଙ୍କି ଦେଇ ତା ଉତ୍ପାତି ମୃଦ୍ଧ କପଟ ଲଂପଟି
୩୫ ତ୍ରୁଟିକ ହେଲାନ୍ତ ଯୁଗ କୋଟି ହେ ॥ ୫ ॥

ଅସ୍ତ ଶିଖଣ୍ଡ ଶିଖର ଉବାକର ପରକାର
ଜର [ମ] ମୋ କଲାନ୍ତ ନକର !
ଅବଶ୍ୟ ହେବ ନନ୍ଦନ ଲୋକେ ଜଗତ ବନ୍ଦନ
ଉଦାସିତ ହେଲେ ନାରିଖାର ହେ ।
୪୦ ବ୍ରଜରାଜ, ଅକର୍ମ କର୍ମଦାୟକ ନାମ,
ଆଜ ତୁମ୍ଭ ହେବ ସିଦ୍ଧ ଶ୍ରୀବତ୍ସ ଲାଞ୍ଛନ ସ୍ୱଚ୍ଛ
ମସ୍ତ ଭୃଗୁପଦ ହେଲେ ବାମ ହେ । ୬ ।

ଟେକଣ ଦକ୍ଷିଣ ହସ୍ତ ବରଦତ୍ତ ଅଙ୍ଗୀକୃତ
ଜଳଅଛ ହେ ପୀତଅମ୍ବର,
୪୫ ଟେକ ତପୁ ଟାଣପଣ ନାଶି ଶରଣ ରକ୍ଷଣ
କରିବାରେ ଶଙ୍ଖ ଚକ୍ରଧର ହେ,

ବ୍ରଜରାଜ, ଠଣ ସବୁ ଅବୟବ ଯାର,
ଟିକେ ଉନ୍ନତକୁ ନତ କରିବାରେ ଲମ୍ବୀକୃତ
ଶୋଭିତ ହୋଇଛୁ ବାମ କର ହେ । ୭ ।

୫୦ ଡମ୍ବରୁଧର ଯାହାର ପଦ୍ମୁରୁ ସ୍ରବତ ନୀର
ଶିର ଉପରେ ଧରେ ହେଲେ ଶିବ
ଢେଉ ଉର୍ଦ୍ଧ୍ୱକୁ ନଯନ ସନକାଦ ମୁନିଜନ
ଧ୍ୟାନରେ ଯା ନକରନ୍ତ ଠାବ ହେ,

---

୪୪. ହେ—ହେ ହେ ।

ବ୍ରଜରାଜ, ତମ ସ୍ଥାନ ଅଟଇ ମୁ ଶୁର,
୬୫ ତାଙ୍କେ ମୋ କଉଁ ଭଗତ କରି ଜାଣେ କଉଁ ସୁତ
ଲଭିବାକୁ କଉଁ ଅଙ୍ଗୀକାର ହେ । ୮ ।

ଅଛୁ ଏତେକ ମାତର ସୁରସା ସ୍ୱାନସୋଦର
ଦର ବନାଶନ ଆର୍ତ୍ତିହାଣ,
ଅରକ୍ଷ ଜନ ବଚନ ପଦେ ଶୁଣିବାକୁ କର୍ଣ୍ଣ
୭୦ ତେବେ ରଖିଥାଅ ଅନୁକ୍ଷଣ ହେ,
ବ୍ରଜବାଳ, ଅଳ୍ପକୁ ବଶେଷ କରି ଦେଖ,
ଅପୂର୍ବ କଳପତରୁ ସ୍ୱଭକେ ଭକ୍ତମାନେ ତୁ
ମୋକ୍ଷ ଅର୍ଥଆଦ କର ଦାନ ହେ । ୯ ।

ତରଙ୍ଗଭର ସଚିତ ଦ୍ୱିପଦ ତରିବ ସତ
୭୫ ତରଣି କରି ତବ ଶ୍ରୀପୁରୁ,
ତାରଣ ବଷୟେ ମତେ କର୍ଣ୍ଣଧାର ପରି ତତେ
ପ୍ରତେ ହୁଅ ହି ପୁର ଠାକୁର ହେ,
ବ୍ରଜବଜ, ଥସ୍ଥ ସ୍ଥାନ ହେଲା ମଧ୍ୟେ ପଡ଼,
ଥରେ ହେଜା କଲେ ହରି ଟଳେ ମୋ ସଂସାର ସରି
୮୦ ଗିରିଧାରୀ ଯାଉଅଛି ବୁଡ଼ି ହେ । ୧୦ ।

ଧ୍ରୁବ ଦାରୁ ପରି କରି- ବାକୁ ଜଣେ ତୁମ୍ଭ ପରି
ଗରିଷ୍ଠରେ ନ ଦଶଇ ଆନେ,
ଦରିଦ୍ର ଜନ ଉଦ୍ଧାର ଜନିବାରେ ଧରାଧର
ଧରାଇଛ ନାନା ଏ ଭୁବନେ ହେ,
୮୫ ବ୍ରଜଦେଜ, ଧ୍ରୁବ ହୁଦାମାନ୍ଙ୍କ ଅଛି ଜଣା;
ଧରଣୀଯାକ ଖୋଜିଲି ପାଦସାରସେ ମଜ୍ଜିଲି
କାହିଁ ନ ପାଇଲି ମୁ ଠିକଣା ହେ । ୧୧ ।

---

୭୨. କଳପତରୁ—କଳ୍ପତରୁ । ୭୬. ତରଙ୍ଗଭର—ତରଙ୍ଗତର; ଦ୍ୱିପଦ ତରିବ ସତ—[illegible] । ୮୫. ଧ୍ରୁବ—ଧ୍ରୁବ ।

ନାଗ କୋଟି ପରିବେଷ୍ଟି-      ତ ହୋଇଣ ଅଛି ଯୋଟି
ରହିଣ ଅଛନ୍ତି ଅବରତେ,
୮୦ ନକଟସ୍ଥ ଦର ଦୁର      ହୋଇଅଛୁ ହରି ମୋର
ଦର ଦୂର ହୋଇ ଅବରତେ ହେ,
ବ୍ରଜରାଜ, ନ କରିବ କୃପା ବୋଲି ଭତେ
ନଦାନ ଜନ୍ମିବ ଯେବେ      ନଘଣ ହୋଇ ମୁଁ ତେବେ
ଜୀବନ ମୋ ତେଜ ଦେବି ସତେ ହେ । ୧୨ ।

୮୫ ପରମ ଦୟାଳୁ ସେବି      ସରମ ଯେବେ ଲଭିବ
ଧରମ ଏ କଥା ନକ ହେଲା,
ପଞ୍ଚବାଣ କ କାହାକୁ      କରି ନାହ ମୋ ବେଳକୁ
ପରଂପରା ଧାଡ଼ି ନ ରହିଲା ହେ,
ବ୍ରଜରାଜ, ଫୁଟୁଣାପଣ ମୋ ସରିଗଲା,
୯୦ ପଦ୍ମାସ୍ଥାନ ହୋଇଁ ଯେତେ      ଧନ୍ଦା ହୋଏ ଯେନ ଚିତ୍ତେ
ଏ ମନ୍ଦାକ୍ଷ କାହାକୁ ହିଶିଲା ହେ ॥ ୧୩ ॥

ବାଂଜରାଜ ଅଙ୍ଗେ ବାଜ      ସଜତ ହେବାର ବାଜ
ପଡ଼ି ପଡ଼ିଅଛି ଏ ସଂକଟେ,
ବାରେ ହେଲେ ପରକାଶ      ତୁମ୍ଭେ ଯଶ ଔଷଧୀଶ
୯୫ ହୃଷୀକେଶ ଅଛ ନିଷ୍କପଟେ ହେ
ବ୍ରଜରାଜ, ଭେଦ ଗଲାନ ତ ମରମକୁ,
ଭଲେ ଏଥି ଉପସ୍ଥିର      ଏଥୁ ଅଧିକ ବିଗୁର
ନୋହୁଛି ପ୍ରସ୍ଥିର ମୋ ମନକୁ ହେ ॥ ୧୪ ॥

ମରୁସ୍ଥଳ ସ୍ଥିତ ତରୁ      ପରାୟେ ମୋ ହୃଦ ସରୁ
୧୦୦ ନାହିଁ ନିରନ୍ତରେ ଉଠୁ ଉଠୁ,
ମୂଳରୁ ରସ ବିହୀନ      ଅପର୍ଣ୍ଣ ହୋଇଣ ଶୀର୍ଣ୍ଣ
ତ୍ୱକ ଶୁଷ୍କ ଭଜ ଆସିବାରୁ ହେ,

---

୧୦୧. ଅପର୍ଣ୍ଣ—ଅଳ୍ପପର୍ଣ୍ଣ ।

ବ୍ରଜରାଜ, ମୁଁ କପଟନ୍ତ ହେଲନ ତ ଘତ,"
ମନେ ଥିଲେ ବେଗେ ଈଶ କଣ୍ଠା କ୍ଷାମୃତ ବରଷ
୧୦୫ ପଟନ୍ତ ଦେଲେ ଆଜ୍ଞ କେ ବେନଭ ହେ ॥ ୧୫ ॥

ଜ୍ୱର ଜନମଧୀକରଣବରଦନ୍ତଶିଶିର
ଭୂଦାର ହେଲେଏ ଷଡ଼ଦୋଷ,
ଜନମଦନ୍ତବଚନପ୍ରାକର୍ମିଗଞ୍ଜନଧନ
ପକ୍ଷିଗୁରଭ୍ଗନାଜରତ୍ନଶହେ, ବ୍ରଜରାଜ
୧୧୦ ରୂପରଜବ ବୃଧି ଶାଲ୍ୱକ,
ଚିତସବଦ୍ଧେଲେ ଭନ୍ନପ୍ରବରଜାପନବର୍ଣ୍ଣ
କରପୃଷ୍ଠମୁକେଜସଉଶୁଷ୍କ ହେ ॥ ୭ ॥
ଲୀଳାଦେବକେଭୂବେବମୂଭୂଦେବ
ବୋଲ ହୋଇଛନ୍ତଆଜ୍ଞାଦର୍ଶୀ,

୧୧୫ ଲକ୍ଷ୍ମୀଦେବୀ ଅଙ୍କ ସ୍ଥିତ ଲକ୍ଷ୍ମୀ ଦେବ ଅଂଶଙ୍କେତ
ଭାବୁଛନ୍ତ ଋଷିକେ ଭାରଣ ହେ,
ବ୍ରଜରାଜ, ବଡ଼ ପ୍ରଭୁ ବୋଲ କଲ ଅଂଶ,
ବଚନ ରଚନ ପଦେ ନୋହିଲା ତ ସେ ସଂପଦେ
ମୁ ବିପଦେ ଯାଉଅଛୁ ନାଶ ହେ ॥ ୧୭ ॥

୧୨୦ ଶଶ ଶିଶୁ ଶାଙ୍କ ଭଳ ସମୁଖେ ଥିଲ ପ୍ରକାର
ସାହାସହିନ ମୁ ହୋଇଅଛୁ,
ଶଙ୍ଖସୁଦର୍ଶନଧାରୀ କର ଏ ସଂକଟ ପାର
ସାବଧାନ ହୋଇ ଜଣାଉଂଛୁ ହେ,
ବ୍ରଜରାଜ, ଯାଉଙ୍ଗ ସାରଙ୍ଗଠାରୁ ବଳ,
୧୨୫ ଶୁଭଦ ପ୍ରଶଂସାସାର ସଂସାର ମଧ୍ୟେ ନକର
ସାଧ ବିଷୟ ନ ହସେ ବଳ ହେ ॥ ୧୮ ॥

---

୧୦୪. ଈଶ—ଇଡା ।
୧୦୭ ଠାରୁ ୧୧୪.—ଅବିକଳ ଶୋଧୁପାଠ ।

ଖଞ୍ଜନ-ସ୍ୱର ମେଘର — କର୍କା ପତନ ଘୋର
ନିଭୃତେ କି ତାକୁ ନ ଭଜଇ ।
ଷଟ୍‌ପଦ ଯେ କଣ୍ଟକ — ଶାଖାରେ ବେଷ୍ଟିତ ଠିକ
୧୩୦ ସୁମନସ ହେଲେ କି ତେଜଇ ହେ

ବ୍ରଜରାଜ, ହଠ କରି କଟଲହେ ନିରାଶ,
ହେମ୍ଭୂତର୍ କଦାଚିତ — ନୋହିବ ତଥା ଉଚିତ
ମୋର ଆନେ ନାହିଁ ପ୍ରତିଆଶ ହେ ॥ ୧୯ ॥

କ୍ଷୀରସାଗର ଶଯ୍ୟନ — ଯେନ ତୁମ୍ଭର ସଦନ
୧୩୫ ହୋଇଅଛି ସତ୍ୟଂ ମୋର ହୃଦ,
ଷମେ ତଥ୍ୟଂ ଚିନ୍ତା ସ୍ଥିତ — ହେଲା ଏବେ କି ଉଚିତ
ସିଂହ ଗୃହେ ଶ୍ୱାନର ବପଦ ହେ,

ବ୍ରଜବନ୍ଧୁ, ଛିଣ୍ଡି ମଧ୍ୟେ ଅରଜିବ ନନ୍ଦା
ଷମେ ପଦ୍ମନାଭ ହୋଇ — ଭାବେ ବାରେ କୃପା ହୋଇ
କରିଛି ତୁମ୍ଭଙ୍କୁ ସବୁ ଫନ୍ଦା ହେ ॥ ୨୦ ॥

---

୧୩୨. କଦାଷିତ—କଦାଚିତ୍ ।
୧୩୭, ଶ୍ୱାନର ବ.ପଦ—ବହିସ୍ଥାନପଦ ।

ଟୀକା :—

୧. ଆରତ—ଆର୍ତ୍ତି (ଆରତ); ଅଶରଣପତି—ଅନାଥର ନାଥ; ଦୀନ—ଦୈନ୍ୟ; ଖିଲ—ଦୁସ୍ତର ।

୨. ଶରଦ ଶର୍ବରୀଶ—ପୂର୍ଣ୍ଣିମାର ଚନ୍ଦ୍ର; ରଦ—ରେଖା; ବାରଣ—ହସ୍ତୀ, ମନା ।

୩. ଯୋ—ଯେଉଁ; ଗୀର୍ବାଣ—ଦେବତା ।

୪. ହୁମନ୍ତ—ହୁମ୍ଭନ୍ତ୍, ହୁମତ ।

୭. ଜାଳ ଜାଳ—ଜ୍ୱାଳାଜାଳ ଶବ୍ଦକ, ଗୁଣ୍ଡ୍ ଏ କଥା ; ରଙ୍ଗ—ନୃତ୍ୟାଦ, ଅନନ୍ଦ ।

୧୧. ଧରାଧର—କୂର୍ମରୂପୀ ବିଷ୍ଣୁ ।

୧୩. ଫନ୍ଦା—ଅଶ୍ୱସ୍ଥ; ଧନ୍ଦା—ବ୍ୟସ୍ତତା; ମନ୍ଦାକ୍ଷ—ଲଜ୍ଜା ।

୧୮. ଯଶ ଔଷଧୀଶ—କୀର୍ତ୍ତି ଚନ୍ଦ୍ରମା; ସାରଙ୍ଗ—ବାଦ୍ୟବିଶେଷ, ଶଙ୍ଖ ।



# ଚିଠାଉ

## ( ପୋଥିରେ ନାମକରଣ ହୋଇନାହିଁ )

ବ୍ରଜସୁନ୍ଦର ପଟ୍ଟନାୟକ

[ ନିମ୍ନ ରଚନାଟିର କବି ବ୍ରଜସୁନ୍ଦର ଗଞ୍ଜାମର ସୁପ୍ରସିଦ୍ଧ ଅଶୁକବି କବିବର ଚକ୍ରପାଣି ପଟ୍ଟନାୟକଙ୍କ ପିତା ବ୍ରଜସୁନ୍ଦର ପଟ୍ଟନାୟକ ହେବା ଅନୁମାନ ମାତ୍ର । ବ୍ରଜସୁନ୍ଦର ପଟ୍ଟନାୟକଙ୍କ ପିତା ବଳଭଦ୍ର ମଧ୍ୟ ଜଣେ କବି ଥିବା ଜଣାଯାଏ । ବ୍ରଜସୁନ୍ଦର ଗଞ୍ଜାମର ବିଜୟନଗର (ବଡ଼ଖେମୁଣ୍ଡି ଓ ସାନଖେମୁଣ୍ଡି ଏକତ୍ର) ରାଜା ପୁରୁଷୋତ୍ତମ ଅନଙ୍ଗଭୀମ ଦେବ (୧୭୬୮—୧୭୭୬)ଙ୍କ ସଭା ମଣ୍ଡନ କରୁଥିଲେ । ସେ 'ମାଧବୀୟ ଚରିତ' ନାମକ ଏକ ସୁଲଳିତ ସଂସ୍କୃତ କାବ୍ୟ ଏବଂ 'ରସକଲ୍ପଲତା' ନାମକ ଏକ ଉଚ୍ଚାଙ୍ଗ ଓଡ଼ିଆ ଗୀତକାବ୍ୟ ରଚନା କରିଛନ୍ତି । ]

( ରାଗ—ଆଷାଢ଼ ଶୁକ୍ଳ )

କ୍ଷୀଣ ହୋଇ କାନ୍ତ ପ୍ରବାସ ଦୁଃଖେ । ହରିଣନେତ୍ରୀ ଚିଠାଉ ଲେଖେ ।
ସୁନ୍ଦରୀ ଚତୋଳ ଚିତ ପଥରେ । ଶ୍ରୀହସ୍ତରେ ଲେଖ ନଦେଲୁ ଥରେ ॥
[ ] । ବରଞ୍ଚ କଲି କଲୁ ଅଙ୍ଗୀକାର ॥୧॥

ଲେଖିଲି ମୁଁ ତିନ ଥର ଚିଠାଉ । ରମଣୀରତନ ନ ଲେଉଟାଉ ॥
୫ ଯତନେ ଅବା କେ କ ଶିଖାଇଲା । ମନ୍ତ୍ରିଣୀ ମନେ ମାନ ରଖାଇଲା ॥
ଭସାଇଲୁ ମତେ । ବିଶେଷ କସ ଜଣାଇବ ଚିତେ ॥୨॥

ଫଳାଇ ଗଛ ମୂଳେ ଦେଇ ପାଣି । ପୁଣି ତାହାକୁ କେ ପକାଇ ହାଣି ॥
ଜନନୀ ତୋଳି ନ ଦେଇ ଜଳାଇ । ଧନକୁ କ କହିବ ବଳଆଇ ॥
ଦାଇବ ବଶରେ । ସ୍ଥିତ ହୋଇଛୁ ପିନା ବିଦେଶରେ ॥୩॥

୧୦ ତିନ ଥର ଧରି ଚରଣ ପାଣି । ଅନାୟତ ହୋଇ ରମଣୀମଣି ॥
ତାଙ୍କେ ଚିତରେ ବିସ୍ମର ନ କରି । ଓମ୍ବରୁମଧ୍ୟା କଲୁ ଏତେ ସରି ॥
ଠୁଳ ପ୍ରେମରସ । ଝଳାଇ ଦେବାର ବଡ଼ ଅଯଶ ॥୪॥

୨. ବିଶେଷ—ବିଶସ ।

ନର୍ମଳ ବେଜ ପ୍ରେମ ହେମ ଜାଣି । ଝୁଲଥିଲ ମୋର ଭାଗ୍ୟ ବନ୍ଧାଣି ॥
ଜାଣେ ମୁହିଂ ତାହା ପିଟିବ ନାହିଁ । ଛିନ୍ନ କଲ୍ଦେଲୁ ଚନ୍ଦ୍ରମା ମୁହିଂ ॥
୧୫ ଚଉଦକେ ପଥର । ନ ଦେଲୁ ମୁଁ ହେଲି ଏଡ଼େ କାତର ॥୫॥

ଘନଜଘନା ତୁ ନବମୁକୁତା । ଗୁନ୍ଥୁ ଯେ ମତେ କରି ଘାଟସୂତା ॥
ଖେଳାରେ ଯେଣୁ କରୁ ପଞ୍ଚଭମ୍ଭ । ଜଲୁ ପୁଣି ଏବେ ଏହା ଆରମ୍ଭ ॥
କୁନ୍ଦ ଦରହାସୀ । ହାନ ଯାଜ କି ହେବ ପରବାସୀ ॥୬॥

କଳାବତୀ କେଳପୁରକୁ ଆସୁ । ଖଣ୍ଡିଦୁଷ୍ଟ ହାସ ସୁଧା ବରଷୁ ॥
୨୦ ବୋଲଇ ସ୍ଥଳରେ କମ୍ପଇ କୁଚ । ଘୋଡ଼ାଉଥିଲେ ହାସ ଢଶେ ଭ୍ରୂଛ ॥
ନୟନ ଯୁଗଳ । ଚନ୍ତ ପେତ୍ତରାବ ହୋଇଛି ବେଳ ॥୭॥

ସ୍ତନରେ ଦେଲ ଦନେ ନଖ ଗାର । ଜାଣି ନ ପାରିଲୁ ରମଣୀବର ॥
ଝୁଲୁଥିଲୁ କାମକଳା ବେଶରେ । ନୟନେ ବୁଜି କାମ ଆବେଶରେ ॥
ଛାଙ୍କୋଳିତ ରୋମ । ଠିକେ ହେବାଲେ ତନୁ ହୋଏ ଝାମ ॥୮॥

୨୫ ତୋଳା ବେଳବୁଜ ଦନେ କପଟେ । ତୋଳାଇଲୁ ମୋର ହୃଦୟ ତଟେ ॥
ଅଙ୍ଗେ କଲ ମଣ୍ଡନ କଜ୍ଜଳ ଘାତ । ନଖଘାତେ ହୋଇଲୁ ପୁଲକ ଜାତ ॥
ସ୍ଥୂଳ ସ୍ତନ ଧରି । ହେଲ ଶ୍ରୀମୁଖକୁ ଚମ୍ବନ ଭରି ॥୯॥

ଧୀରେ ନୟନ ବୁଜି ଫେ[ଲି]ତେଜ । ନ ଜାଣି ମାଂପରି ପୁଣି ଅନାଇଂ ॥
ପ୍ରେମ ପ୍ରବାହ ଜାଣି ତେତେବେଳେ । ଫେଡ଼ିଲ ନିବୀ ମାତ୍ର ବଳେ ॥
୩୦ ବୋଇଲୁ ତୁ ଯାହା । ଭାବମି ଆଜ ଭାବୁଅଛି ତାହା ॥୧୦॥

ମତ୍ତ ହୋଇ ରତେ କମ୍ପାଇ ଉରୁ । ଜାକିଦେଇ କେତେବେଳେ ରମ୍ଭୋରୁ
ରସରେ ପୁଣି ହୃଦୟରେ ଜଡ଼ୁ । ଲୀଳାବନ୍ଧେ ତଳ ତଳପେ ତଡ଼ୁ ॥
ବୋଲୁ ସଖି ସଖି । ସଚିସିବନ୍ତି ନଖାନ କଶୋଘ ॥୧୧॥

ସେହୁ [ଭାବ] ହେବ ରଖିଛି ପ୍ରାଣ । ସୁମୁଖୀ ନିକଟେ ଆସିବ ଜାଣ ॥
୩୫ ହୋଇବୁ ନାହିଁ ମୋଠାରେ ବାମ[ନ] । ହେମଗଉର ଜଳ ତୁ ମୁଁ ମୀନ ॥
ଷଟମ ଏହା ଲେଖି । ଷଟମ କହ ବ୍ରଜସୁନ୍ଦର ସୁଖୀ ॥୧୨॥

---

୧୪. ଛନ୍ଦ—ଛନ୍ଦ ।

ସଂ : ୨୨

# [illegible]

( ପୋଥିରେ ନାମକରଣ ହୋଇ ନାହିଁ )

ବିଶ୍ୱମ୍ଭର ରାଜେନ୍ଦ୍ର

[ ଗଞ୍ଜାମର ଟିକଟିର ରାଜପରିବାରରେ ବହୁ କବି ତଥା କବି-ମାନଙ୍କ ପୃଷ୍ଠପୋଷକ ଜନ୍ମଗ୍ରହଣ କରିଥିଲେ । ଅଷ୍ଟାଦଶ ଶତାବ୍ଦୀର ମଧ୍ୟଭାଗର କୁଳମଣି ରାଜେନ୍ଦ୍ର ଜଣେ ସୁକବି ଥିବା ଜଣାପାଏ । ତାଙ୍କ ପୁତ୍ର କୃଷ୍ଣଚନ୍ଦ୍ର ରାଜେନ୍ଦ୍ର 'ରାମଲୀଳା' ଆଦି ବହୁ ସରସ ସାହିତ୍ୟର ସ୍ରଷ୍ଟା ଭାବେ ସୁପରିଚିତ । କୃଷ୍ଣଚନ୍ଦ୍ରଙ୍କ ପୁତ୍ର ପୀତାମ୍ବର ରାଜେନ୍ଦ୍ର ଓ ବଳଭଦ୍ର ଭ୍ରମରବର ଉଭୟେ ସିଦ୍ଧହସ୍ତ କବି । ପୀତାମ୍ବର ରାଜେନ୍ଦ୍ରଙ୍କ ପୁତ୍ର ଗୋବିନ୍ଦଚନ୍ଦ୍ର ମଧ୍ୟ ଜଣେ କବି ଥିଲେ ବୋଲି ଶୁଣାଯାଏ । ବିଶ୍ୱମ୍ଭର ରାଜେନ୍ଦ୍ର ପୀତାମ୍ବର ରାଜେନ୍ଦ୍ରଙ୍କର ପୌତ୍ର । ସେ ଖ୍ରୀ: ୧୮୫୭ ରୁ ୧୮୮୫ ଯାଏଁ ରାଜତ୍ୱ କରୁଥିଲେ । ବିଶ୍ୱମ୍ଭରଙ୍କ ପୁତ୍ର କିଶୋରଚନ୍ଦ୍ର ରାଜେନ୍ଦ୍ର ଏବଂ କିଶୋରଚନ୍ଦ୍ରଙ୍କ ପୁତ୍ର ରାଧାମୋହନ ରାଜେନ୍ଦ୍ର ମଧ୍ୟ କବିଭାବେ ଖ୍ୟାତି ଅର୍ଜନ କରିଛନ୍ତି । ବିଶ୍ୱମ୍ଭର ରାଜେନ୍ଦ୍ରଙ୍କ ରାଜସଭାରେ ରଘୁନାଥ ରଥ ରାସ୍ତୁଗୁରୁ, ନରେନ୍ଦ୍ର ରାଜ୍ଗୁରୁ ଆଦି ବହୁ କବି ସ୍ଥାନ ପାଇଥିଲେ । ବିଶ୍ୱମ୍ଭରଙ୍କ ନାମରେ ଭଣିତ ବହୁରଚନା ରହିଛି । ତନ୍ମଧ୍ୟରୁ ବ୍ରଜଲୀଳା, ମଥୁରାବିଜେ, ରଘୁନାଥ ବିଳାସ, ଉଷାବିଳାସ ଷଡ଼ଋତୁ, ଶରଦ ରାସ ପ୍ରସଙ୍ଗ ରତ୍ନାକର, ଓ ବୀର ରାମଚନ୍ଦ୍ର ବିଳାସ ଉଲ୍ଲେଖ ଯୋଗ୍ୟ । ନିମ୍ନ ରଚନାଟି ଯଥାର୍ଥରେ ଚଉତିଶା ନହେଲେ ହେଁ କେବଳ ବ୍ୟଞ୍ଜନମାଳାକୁ ଅନୁସରଣ ନକରି ସମଗ୍ର ବର୍ଣ୍ଣମାଳାକୁ ନେଇ-ଚଉତିଶା ଢଙ୍ଗର ରଚନା ରହିଥିବାରୁ ଉଦାହରଣ ରୂପେ ଏହା ଦିଆଗଲା । ଲକ୍ଷ୍ୟ କରାଯାଇପାରେ ଯେ ଏହାର ଆଦ୍ୟ ବର୍ଣ୍ଣ ଅବନା ।.]

( ରାଗ—ବଙ୍ଗଳାଶ୍ରୀ )

ଅବଳା ମୋ ଗଲା ଯନ୍ତ୍ର ଭନ୍ତ୍ରମାଳା ପ୍ରେମଶୀଳା ରସକଳ୍ପଲତା ।
ଆରେ ସୁକୁନ୍ତଳା ପୀଉଷ ବଶ୍ରକା ଆଜଦ୍ୱେଷ କେଉଣେ ଢାଳା ॥ ୧

ଇନ୍ଦୁ ଆଦରଶ ପଦ୍ମଜଣୀ ଆସ୍ୟ ଝଟକ ମସ୍ତକ ନ ସ୍ତମ୍ଭଂ ।
ଛନ୍ଦ୍ରୟ କଶୋଷ, ସୁରସ ନାଗଶ ନାଗର ଘରଣ ହସ୍ତୀ ॥ ୨

୫ ଜଗ ମୋହନା ମୋ- ହ ନାଶେ ନ ରସି କଞ୍ଚନରେ ଅନା ଥରେ ।
ଉଷାକୃତ ବନା ଦୂଷାକୃତ ହେଲେ ଭାସିଲାନ୍ତି ଅନାଥରେ ॥ ୩

ରୁଷାରୁ ଭୁ ସାରୁ କାନ୍ତଂକ ଧୃତକ ନାନ୍ତଂ ଗତ ଜଗତରେ ।
ରୂପବନ୍ତ ରେବ- ଖଣମୁଖୀ ନବ- ଯୁବନ୍ତ ଗୁଣବନ୍ତ ରେ ॥ ୪

ଲୁପ୍ତ ନକର ଘ- ଶନରୁ କନ୍ଧଣା ତରୁଣୀ ଅରୁଣାଧର ।
୧୦ ଲୁକାଉ ମଧ୍ୟମା ରମାଙ୍କୁ ତୋ ଜମା ରମା ନୋହେ [ସତ] ରୋଷ ॥ ୫

ଏଣୀ ଈକ୍ଷଣୀ ର- ମଣୀ ଶିରୋମଣି କୋଳକୁ ନେଉନରେ ଆସ ।
ଐକ୍ୟ ରୂପେ ମନ ମିଶାଇ ପ୍ରେମକୁ ବଢାଇ ସୁରସେ ରସ ॥ ୬

ଉଜକୁ ମୋହରି ନ ହର ନ ହର କନ୍ଧ ମନୋହର ଭିଷ ।
ଔଷଧୀଶ କୁନ୍ଦ- ଜାଶ-ଜତ ମନ୍ଦ- ହାସ କର ପରକାଶ ॥ ୭

୧୫ ଅଂଗକୁ ଅଙ୍ଗରେ ମିଶାଇ ରଙ୍ଗରେ ଅନ୍ତରୁ ଆନ୍ତରୁ ମୁଞ୍ଚ ।
ଅହର୍ପତି ରୁଚ ସୁରୁଚିର ରଚ ସ୍ମରଣ କମ୍ପନ ପ୍ରାଚୀ ॥ ୮

କଳନା କରନ୍ତୁ ଲଳନା ଚଉରେ କେଉଁ ସମ୍ଭବଟି ଆଜ ।
ଖଳ ମୀନଧ୍ୱଜ ଜଳନ୍ତ ସମାଜ ଢ଼ବାନଶୀ ଦେବା ଦାନ୍ତ ॥ ୯

ଗଳାମାଳା ଯାହା ଜାଳ ବକ୍ତୁଛନ୍ତି ସୁଖଜାତକୁ ନକ୍ତୁନ୍ତି ।
୨୦ ଘଷ୍ଟ ଘଟକ ବ- ଢିବା ଯେନ ଦୁଃଖ କନଧାନ୍ତକୁ ଜକ୍ତୁଛି ॥ ୧୦

---

୧୨. ଐକ୍ୟ—ଐକ୍ୟ । ୧୩. ମୁଞ୍ଚ—ମୁଞ୍ଚ । ୧୬. ଅହର୍ପତି—ଅହପାଡ଼ ।
୧୬. ସ୍ମରଣ—ସ୍ମରଣ ।

ନଳିନ ନୟନା ଆନନ୍ଦ ଦାୟନା ଘନ ଜଘନ ଅନଳପ ।
ଚଳ ମୋହିଁ ଦେଲେ ଆଗୋ ମୋ ଛୁଇଲେ ପଦେ ବାଣୀକି ଜଳପ ॥୧୧

ଛନ୍ଦ ନକଉସି ଛନ ଜ ଦମ୍ପସୀ ଧନରେ କେଳ ଲଳସି ।
ଜନମୁ କରୁଣା ଆଜନମୁ କଣା ଜନ ରେ ମଦ ଆଳସି ॥୧୨

୨୫ ଝଟକ ସୁହାସୀ ରେ କସ୍ତୁରୀ ବାସି ଛଟକାଛି ଶାକସଙ୍ଗି ।
ନତ ନ ପ୍ରବୃଦ୍ଧ ଯତନରେ ସ୍ପୃଷ୍ଟ ତୋର ସରୁ ଭ୍ରୁରୁ ଭଙ୍ଗି ॥୧୩

ଠମ୍ବ ଫାଳ ଖୋଷା ଖୋଷି ଦେବ ଯୋଷା ଗ୍ରୀବାକ୍ଷି ସ୍ୱଜ କର ।
ଠଣ ଲାବଣ୍ୟ ଗଣ୍ଡ- ଖଣ୍ଡ ଚୁମ୍ବାଇ ହର ମନୋଜର ଜର ॥ ୧୪

ଡଙ୍କା ନ ଶୁଣୁ ଯା ଚକା ସ୍ୱଉରଜା ଅକାରଣେ ଏକ ଗ୍ରନ୍ଥ ।
ଢକ୍କା ବାଜବ ର- ସିକ [ସଂସାରରେ] ରସାରେ ଆପକାରନ୍ତ ॥ ୧୫

୩୦ ଅଗ୍ରବଧୀ ଜନେ ଗଣିଲୁ ଯା ଘନେ ତୋ ଯଶ ଧୀମନ୍ତ ମତେ ।
ତମ ରଖି ଭଲ ଆରେ ଖଳଅଳା ଏ ଦୂଷଣ କେଣେ ସତେ ॥ ୧୬

ଥରଥର କରେ ବର୍‌ବରଙ୍ଗ ରେ ଆବୁର ସାରୁ ଯା ମୋର ।
ଦରଜ ଦେଇବ ତୋ ବନ କେ ଭାବ ନବୀନା ବରଜୀବର ॥ ୧୭

୩୫ ଧରଣୀତଳାରେ ତୁ ନରବରଜା ମନ ଭରସା ମୋହର ।
ନ ଉଚ ନପଟ ମୋଠାରେ କପଟ ଅଜନମ ସୁକୁମାର ॥ ୧୮

ପରୁଆ ନ କରନ୍ତି ମୋହର ଜୀବଧନ ମାନସ ଦରୁଆ ହୁଅ ।
ଫରୁଆ ସ୍ତନକୁ ସରୁଆ କଟିରେ ମୋ ଉର ଉପରେ ଥୁଅ ॥୧୯

ବରଷରେ ବନ୍ଧୁ କୃଷ୍ଣାରସ ସିନ୍ଧୁ ସରସ ଅରଷ ଲୋକେ ।
୪୦ ଭସ୍ମନା ନଜର ଶିବ ପଞ୍ଚାକ୍ଷର ଜପି ପାଇଛୁ ଏ ଲୋକେ ॥୨୦

ମଦନ ସାଗରୁ ଉଧର ଉତ୍ତମାରୁ ଭାସୁଅଛୁ ଭାସୁଅଛୁ ।
ଯାଦ ପଞ୍ଚବାଣ ନ କରିବୁ ପ୍ରାଣ ତତେ ନଦା ଥୁଆ ଅଛୁ ॥୨୧

---

୨୭. ସ୍ୱଜୀବାକ୍ଷି—ବାଙ୍କବାଙ୍କି । ୩୨. ତମ—ନପ ।
୩୩. ଥରକରେ—ଥରନରେ । ୩୪. ଦରଜ—ବରଜ ।

ରସିକ ମଣ୍ଡଳ    ମଧ୍ୟେ ଆଖଣ୍ଡଳ    ଛନ୍ଦ ଚେକାରେ ନାୟିକା ।
ଲକ୍ଷି ବେଗ ଯାଉ    ଘାଉଥିବା ବାଞ୍ଛ    ହସିବେ ସୁଖଦାୟିକା ॥ ୨୨

୪୫ ବଳା ମାନସ[କୁ]    କୁଚ ସଟିସକୁ    ଚଳା ସବୁ ଫରମାସ ।
ଶଳାକା ସନ୍ଧରେ    ପବନ ଦ୍ୱୋଇବ    କଳାବନ୍ତି ବଉ ଆଶ ॥ ୨୩

ସରସ ଲଡ଼ାଇ    ମଦନେ ବଢ଼ାଇ    ସଢ଼ାଇ ଦଅ ବଢ଼ାଇ ।
ଷଡ଼ାନନ ତାତ    ମୋହ୍ନ ତୋଷ କନ୍ଧ    ଅଙ୍ଗେ ଅଙ୍ଗକୁ ଜଡ଼ାଇ ॥୨୪

ହରିଣନୟନା    ଧରଣ ଚରଣ    ଶରଣ ପଶିଛୁ ମୁହିଂ ।
୫୦ କ୍ଷମାକର ଦୋଷ    ମନୁ ତେଜ ରୋଷ    ବ୍ରଜଇନ୍ଦ୍ର, ଦେବ କନ୍ୟ ॥ ୨

---

**ଟୀକା :—**

୧. ବେଶେ—ବାହୁଂକ । ୩. ଉର—କ୍ଷୀବ; ଉସୀକୃତ—ଆଲିଂଗନ ।
୫. ଲୁକାର ମଧମା—କ୍ଷୀଣକଟି; ରମା—ଶୋଭା, ଲକ୍ଷ୍ମୀ ।
୮. ଅବ୍ଧର୍ପିତ—ସୂର୍ଯ୍ୟ; ... ଦୀପ୍ତି । ୯. ବେଦ୍ୱ—କପଟ; କଳମ୍ବ—ଶର ।
୧୧. ଚଳିବା—ସଗିବା; ଛଇଳୀ—ରୂପବତୀ । ୧୨. ଛନଦ—ପଦର ।
୧୩. ନତ—ବକ୍ରତା । ୧୬. ଅକୁର—ମଦନ୍ତ୍ର । ୧୭. ଦରଜ—ବ୍ୟଥା ।
୧୮. ନରବରଙ୍ଗା—ରାଜଜେମା । ୧୯. ପରୁଆ—ସର୍ବୀବାନ୍ଧୁ ।
୨୦. ସରସ—ଅଧିକ । ୨୨. ଲସିବା—ନଷ୍ଟହେବା ।
୨୪. ବଢ଼ାଇ—ବାଢ଼ି, ବଢ଼ ।

## ପରିଶିଷ୍ଟ

# ନାୟିକା ଅନୁଚିନ୍ତା

ବନମାଳୀ ଦାସ

[ ଅଷ୍ଟାଦଶ ଶତାବ୍ଦୀର ମଧ୍ୟ ଭାଗର ସୁବିଦିତ ଗୀତିକାର ବନମାଳୀଙ୍କର ଜନ୍ମ ଚଉପଦୀପାଠରେ ଚଇତଣାର ପ୍ରଭାବ ସ୍ପଷ୍ଟ । କବି ବନମାଳୀଙ୍କର ପଦ୍ୟାବଳୀରେ ଯେଉଁ ଲାଳିତ୍ୟ ସୁଲଭ ତାହା ଏଥିରେ ନାହିଁ—ଏହାର ଏକମାତ୍ର କାରଣ ଧରାବନ୍ଧା ଅକ୍ଷର ନିୟମ ହେଲାପରି ଲାଗୁଛି । କବି ବନମାଳୀ ଦାସ (ତାଙ୍କ ପ୍ରକୃତ ସାଙ୍ଗ ପଟ୍ଟନାୟକ) ଖୋରଧାର ପ୍ରଥମ ବୀରକେଶରୀ ଦେବଙ୍କ ପୃଷ୍ଠପୋଷକତା ଲାଭ କରିଥିଲେ ଏବଂ ବୀରକେଶରୀଙ୍କ ଭଣିତା ଦେଇ ଅନେକ ଚଉପଦୀ ଲେଖି ଯାଇଛନ୍ତି । ତାଙ୍କ ପିତା ହରିଦାସଙ୍କ ଭଣିତା ଦେଇ ମଧ୍ୟ ସେ 'ସୁଚିନ୍ତ ରାମାୟଣ' ନାମକ ୩୬୦ ଟି ଚଉପଦୀ ବିଶିଷ୍ଟ ରାମାୟଣ ଖ୍ରୀ: ୧୭୫୪ ରେ ରଚନା କରିଛନ୍ତି । ଏହା ସଂସ୍କୃତ ଚମ୍ପୂରାମାୟଣର ଅନୁବାଦ ]

(ରାଗ—ଜୟନ୍ତ । ତାଳ ଝୁଲ୍)

କଳାବତୀ ଖଞ୍ଜନାକ୍ଷୀ ଗୁରୁ-ନିତମ୍ବିନୀ,
ଘନକେଶୀ ଉତ୍ତୁଙ୍ଗସ୍ତନୀ ଚମ୍ପକବରଣୀ, ଛାନ୍ଦ-ପଠିମା ରେ ॥୧॥

ଜଳଜବାସିନୀ ସ୍ଥିରା-ବସନା ନବୀନା,
ଷ୍ଟେକସ୍ତନା ଠଣମୁଖୀ ଡାଳିମ୍ବ-ଦଶନା, ଭିଙ୍ଗ-ବଚନା ରେ ॥୨॥

ଅରୁଣାଧରା ତରୁଣୀମଣି ଥିର-ଗତି,
ଦରହାସୀ ଧୀର-ସ୍ୱର ନବ-ରସବତୀ, ପ୍ରୀତି-ମୂରତି ରେ ॥୩॥

ଫୁଲ୍ଲ-କୋମଳା ସ୍ୱଚ୍ଛ-ବିଳାସ-ମଣ୍ଡନା,
ଭାବମୟୀ ମୋତିଦନ୍ତୀ ଯତିଧୈର୍ଯ୍ୟ-ହେନା, ରସ-ବର୍ଦ୍ଧନା ରେ ॥୪॥

ଲାବଣ୍ୟନିଧି ସ୍ୱଚ୍ଛ-ବେଶ-ମନୋହର,
ଶଚୀପତି-ଶିଷ୍ଟ-ଦାୟୀ ସ୍ମରଦର୍ପ-ହର, ସିଦ୍ଧି-ପ୍ରସର ରେ ॥୫॥

ହ୍ଲାସ ମଞ୍ଜୁଳା ହୃଦୟ-ତାପ ଧ୍ୱଂସକର,
କ୍ଷଣଦାକାନ୍ତ ତୁ ବୃନମାଳୀ ଢନ-ସର, କ୍ଷମାସାଗର ରେ ॥୬॥

—***—

*ସମାପ୍ତ*

ମୁଦ୍ରଣ—ନବ ସ୍ୱୋର୍ସ ପ୍ରେସ୍—ବ୍ରହ୍ମପୁର—୨